# ଗୃଷୀ ମୂଲ୍ୟ-ଗାନ୍ଧି

( ପ୍ରଥମ ଭାଗ )



ଶ୍ରୀ .ଗୋପବନ୍ଧୁ ଚୌଧୁରୀ

# ଚାଷୀ ମୂଲିଆ-ଗାନ୍ଧି

( ପ୍ରଥମ ଭାଗ )

ଲେଖକ

ଶ୍ରୀ ଗୋପବନ୍ଧୁ ଚୌଧୁରୀ

ପ୍ରଥମ ସଂସ୍କରଣ

ପ୍ରକାଶକ

ଶ୍ରୀ ଉମାଚରଣ ମହାନ୍ତି

ପ୍ରୋପ୍ରାଇଟର, କଟକ ପବ୍ଲିଶିଙ୍ଗ୍ ହାଉସ୍

ନୟାସଡ଼କ, ପୋ: ଅ: ଚାନ୍ଦନୀଚୌକ, କଟକ

୧୯୪୯

ମୂଲ୍ୟ ଏକଟଙ୍କା ଚାରିଅଣା ମାତ୍ର

# ନିଜ କଥା ପଦେ



୧୯୪୨ ଅଗଷ୍ଟରେ ଧରା ହୋଇ ମୁଁ ବ୍ରହ୍ମପୁର ଜେଲରେ ପ୍ରାୟ ଦୁଇବର୍ଷ ରହିଥିଲି । ଭାଗ୍ୟକୁ ଏଥର ବହୁତ ସହକର୍ମୀଙ୍କ ସଙ୍ଗେ ଏକାଠି ରହିବାର ଅପୂର୍ବ ସୁଯୋଗ ମିଳିଥିଲା । ନେତୃସ୍ଥାନୀୟ କର୍ମୀ ଥିଲେ, ସାଧାରଣ ଗାଁ କର୍ମୀ ମଧ୍ୟ ଥିଲେ; ନୂଆ ଯୁବ କର୍ମୀ ଓ ଯେ ଜେଲରେ କେତେକ ବି ଥିଲେ । ମୁଁ ଗୋଟିଏ 'ଜୀଅନ୍ତା' ପାଠାଗାର ପାଇ ଯାଇଥିଲି । ଏମାନଙ୍କର ଜୀବନର ଆଲୋଚନା କରି ମୋ ଦିନ କଟି ଯାଉଥିଲା । ସେମାନଙ୍କ ମନୋଭାବ ଅଧ୍ୟୟନ କରିବାକୁ ବେଳ ଅଣ୍ଟୁ ନ ଥିଲା । ବହି ପଢ଼ାପଢ଼ି ବା ଲେଖାଲେଖି ଏକପ୍ରକାର ବନ୍ଦ କରି ଦେଇଥିଲି । ଏମାନଙ୍କ ସମ୍ପର୍କରେ ରହି ମୋର ଅମୂଲ୍ୟ ଲାଭ ହୋଇଛି । ୧୯୪୨ର ରକ୍ତବିନ୍ଦୁର କାହାଣୀ ଶୁଣୁଥିଲି; ପୂର୍ବର ଆନ୍ଦୋଳନମାନଙ୍କରେ କିଏ କେମିତି ଖସି ପଡ଼ି ଯାଇଥିଲେ ତାହା ମଧ୍ୟ ଶୁଣୁଥିଲି । ଗୋଟିଏ କଥା ସବୁଥିରେ ଫୁଟି ଉଠୁଥିଲା । ତାହା ହେଉଛି ସାଧାରଣ ଗାଁ କର୍ମୀଙ୍କ ଭିତରେ ଏକ ଦୈନ୍ୟଭାବ । ଯାହାକୁ ଇଂରାଜୀରେ କହନ୍ତି 'ଇନ୍‌ଫେରିଅରିଟି କମ୍ପ୍ଲେକ୍ସ' । "ଆମେ ତ କିଛି ବହି ପଢ଼ିନାହୁଁ କ'ଣ କରିବୁ ? ଆମର ତ ଧନବଳ ନାହିଁ, ବିଦ୍ୟାବଳ ନାହିଁ ଆମ କଥା ଶୁଣିବ କିଏ ?" ଗୃହୀପୁଅ ଯୁବକ ନୂଆ ଆସିଥାଏ, ତାହା ଭିତରେ ସେହି ଭାବ—ଜେଲରୁ ଗଲେ ସେ କ'ଣ କରିବ ତା' ପଚାରିବାରୁ ଯା ବ ଜବାବ ପାଉଛି "କବିରାଜି ଶିଖିବ, ପଇସା କମେଇବ, ଦେଶ କାମ କରିବ ।" ସେଇଁ ଯୁଗରେ

ଋଷୀ ମୂଳିଅଙ୍କୁ ମୁଣ୍ଡରେ ଠେକିବାକୁ ଦୁନିଆ ବସିଛନ୍ତି, ସେତେବେଳେ ଋଷିପୁଅ କୁଳବୃତ୍ତ ଘଣ୍ଡ କୁହୁଡ଼ି ପହଁରିବାକୁ ବସିଛନ୍ତି ! ! ଦେଖି ଆଚମ୍ବିତ ହୋଇଥିଲି । ମନ ବି ଦବି ଯାଇଥିଲା । ନୂଆ ଯେ ଆସିଥିଲେ ତାଙ୍କର ମନର ଦାରିଦ୍ର୍ୟ ସିନା କ୍ଷମଣୀୟ, କିନ୍ତୁ ଯେଉଁ ଗାଁ କର୍ମୀ ଅନେକ ଦିନୁ କାମ କଲେଣି ତାଙ୍କର ମଧ୍ୟ ଅନ୍ୟ ପ୍ରକାର ସେହ୍ୟା ଅଛି । ସେମାନେ ଉପରକୁ ଅନେଇ ବସିଛନ୍ତି, ନିର୍ଦ୍ଦେଶ ପାଇଲେ ହୁକୁମ ପାଇଲେ କିଛି କରିଥାନ୍ତି । ନିଜର ବଳ, ନିଜର ବୁଦ୍ଧି, ନିଜର ବିଦ୍ୟା ଯେତିକି ଅଛି ସେତିକିରେ କିଛି କରିପିବା, ସେ ବିଶ୍ବାସ ନାହିଁ । ଆମେ ଥୋଡ଼େ ପାଠୁଆ ହାମବଡ଼ା ସହକର୍ମୀ ତାଙ୍କର ଏ କମଜୋରିକୁ ଅଜାଣତରେ ବଢ଼ାଉ ନାହିଁ ତ ? ନୂଆ କଥା ଶିଖିବା ପାଇଁ ଆଗ୍ରହ ଓ ନ ଶିଖିଲେ ଆମ ଦ୍ୱାରା ଆଦୌ କିଛି ହେବ ନାହିଁ, ଏ ଦୁଇଟି ସ୍ୱତନ୍ତ୍ର କଥା । ପ୍ରଥମଟି ଜୀବନର ଚିହ୍ନ; ଦ୍ୱିତୀୟଟି ଜଡ଼ତାର ଚିହ୍ନ, ଆତ୍ମବଳରେ ବିଶ୍ୱାସର ଅଭାବର ଚିହ୍ନ । ପଚିଶ ବର୍ଷର ଗାନ୍ଧି ଆନ୍ଦୋଳନ ତଳକୁ ଯେତେ ନିସ୍ତେଜ ହୋଇ ଭେଦିବାର କଥା ତାହା ଭେଦ ନାହିଁ ପରା ? ପାଣିର ମଇଳା ସିନା ବାଲିମାଟି ଭିତରେ ଛାଣି ହୋଇ ରହିଯାଏ, ନିର୍ମଳ ପାଣି ତଳକୁ ଝରି ଯାଏ; ଏଠି ଗାନ୍ଧୀ କଥା ତଳକୁ ତଳକୁ ଗଲା ବେଳକୁ ଏକ ସ୍ତରର ରଙ୍ଗ ଗନ୍ଧ ନେଇ ତଳକୁ ଝରୁଛନ୍ତି । ଦେଶରେ ଗାନ୍ଧୀ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ଯେ ନୈରାଶ୍ୟ ଥିଲା, ତାହା ପୂରାପୂରି ଯାଇ ନାହିଁ । ବିଦ୍ୟାବଳ, ଧନବଳ, ଶସ୍ତ୍ରବଳ ନ ହେଲେ ସ୍ୱରାଜ୍ୟ ହେବା ଅସମ୍ଭବ ଏ ଭାବ ରହିଛି । ଷାଠିଏ ମହଣ ଘିଅର ବ୍ୟବସ୍ଥା ଶୁଣି ମନକୁ ଅନ୍ଧାର ନିରାଶ ଘୋଟିଯାଏ । କିନ୍ତୁ ଗାନ୍ଧୀ ଆନ୍ଦୋଳନ ତ ଏହି ଭୁଲ ଧାରଣା, ଏହି ନିରାଶାକୁ ଦୂର କରିବାକୁ ସୃଷ୍ଟି ହୋଇଥିଲା, ସେତିକି ଆମେ ପାଶୋରି ପକାଉଛୁ ।

ହିଂସା ଯୁଦ୍ଧ ବା ହିଂସା ବାଟେ ସ୍ୱରାଜ୍ୟ ପାଇଁ ଧନ, ବିଦ୍ୟା ଓ ଶସ୍ତ୍ର ଏ ତିନି ବଳ ଯାକ ଲୋଡ଼ା । ଅହିଂସା ଯୁଦ୍ଧରେ ଧନବଳ, ଶସ୍ତ୍ର ବଳ ଲୋଡ଼ା ତ ନୁହନ୍ତି ବରଂ ବାଧା ଜନ୍ମାନ୍ତି । ବିଦ୍ୟାବଳ ବାଧା ନ ଦେଲେ ମଧ୍ୟ, ନ ହେଲେ ନ ଚଳେ ଏମିତି ନୁହେ । ଠିକ ବିଦ୍ୟା ସାହାଯ୍ୟ କରେ ସତ କିନ୍ତୁ ସେ ବିଦ୍ୟା କାହିଁ ?

ଜେଲ ଭିତରେ ମୁଁ କେତେବେଳେ କେମିତି ଗାନ୍ଧୀଙ୍କ ପୁରୁଣା ଲେଖା ଘାଣ୍ଟୁଥିଲି । ଗାନ୍ଧୀଙ୍କ ଲେଖା କେବଳ ଏହି ଉଦ୍ଦେଶ୍ୟରେ ଓଲଟେଇବାକୁ ଲାଗିଥିଲି । ମୋର ଆଖି ଫିଟି ଯାଇଥିଲା । ଗାନ୍ଧୀ ଜୀବନରେ ପଦେ ପଦେ ସେହି କଥା ଫୁଟି ଉଠିଛି । ଗାନ୍ଧୀଙ୍କ ଜୀବନର ଆରମ୍ଭରେ ଯେଉଁଥା, ଜୀବନର ବିକାଶ ବି ସେଇଥିପାଇଁ । ଅହିଂସା ଯୁଦ୍ଧରେ ଆତ୍ମବଳ ସାର; ଗୁଣ୍ଡୁଚି ମୂଷା ବାଲି ଝାଡ଼ି ଦେବାରେ ମଧ୍ୟ ମହାଫଳ । ଏଭଳି ଅନେକ ଲେଖା ଓ ଘଟଣା ଟିପି ପକେଇଥିଲି ।

ବ୍ରହ୍ମପୁର ଜେଲରୁ ବାହାରି ବର୍ଷେ ଯାଏ ଅଳ୍ପ ଦିନ କେତେଟା ଯାହା ବାହାରେ ରହିଥିଲି, ସେତେବେଳେ କେତେକ ସାଥି ଦୁଃଖୁଇଥିଲେ ଯେ ଓଡ଼ିଆରେ ଗାନ୍ଧୀଙ୍କର ସବୁ ସତ୍ୟାଗ୍ରହର କାହାଣୀ ଛପା ହୋଇ ନାହିଁ । ଆତ୍ମକଥା ଖଣ୍ଡିକର 'ର,ଠ' ତର୍ଜମା ଛଡ଼ା ଗାନ୍ଧୀଙ୍କ ଜୀବନୀ ଓଡ଼ିଆରେ ଆଉ ସେମିତି ନାହିଁ । ୧୯୨୦ ସାଲ ପରର ଜୀବନୀ ତ ଖାସ ଲେଖା ହୋଇ ନାହିଁ । ଇୟଂ ଇଣ୍ଡିଆ, ନବଜୀବନ ପ୍ରଭୃତି ଖବର କାଗଜରେ ତାଙ୍କ ଲେଖାରେ ସେ ଜୀବନୀ ରହିଛି । ଆମର ସବୁ ଗାନ୍ଧୀସାହିତ୍ୟ ସେବାଧର ସଙ୍ଗେ ସଙ୍ଗେ ଉଇଙ୍କ ପେଟକୁ ଯାଇଥିବାରୁ ସେ ସବୁ କେଉଁଠୁ ପାଇବି ସେହି ଚିନ୍ତାରେ ପଡ଼ିଥିଲି । ଭାଗ୍ୟକୁ ବନ୍ଧୁମାନଙ୍କ ସାହାଯ୍ୟରେ କେତେକ ଯୋଗାଡ଼ କରିଥିଲି । ବ୍ରହ୍ମପୁର ଜେଲ ଛାଡ଼ିବା ପରେ ପ୍ରାୟ ଏକ ବର୍ଷ

ଏ ଜେଲ ସେ ଜେଲ ହୋଇଛନ୍ତି । ସେହି ସମୟ ଭିତରେ ଏ ସବୁ ଚିଠିକୁ ଦୋରସ୍ତ କରିଥିଲି । ପଟ୍ଟାଭିଙ୍କ କଂଗ୍ରେସ ଇତିହାସ, ଜହରଲାଲଙ୍କ ଜୀବନୀ ଓ ଅନ୍ୟାନ୍ୟ ଲେଖା, ମହାଦେବଭାଇଙ୍କର 'ବାରଡ଼ୋଲୀ ସତ୍ୟାଗ୍ରହ' 'ଏକ ଧର୍ମ ଯୁଦ୍ଧ' 'ବେଣ୍ଟୁଦାଇଖିଜ୍‌ମଭଗାର' ରାଜେନ୍ଦ୍ରବାବୁଙ୍କର 'ଚମ୍ପାରନ ସତ୍ୟାଗ୍ରହ', ୧୯୧୫ ରୁ ୧୯୧୯ ଯାଏ ଗୁଜରାଟୀରେ ପ୍ରକାଶିତ ଗାନ୍ଧୀଙ୍କ ଲେଖା ସଂଗ୍ରହ ମିଳି ଯାଇଥିଲା ।

ଏବେ ଯାହା ପ୍ରକାଶିତ ହେଲା ସେଥିରେ ସେହି ଚିଠି ଗୁଡ଼ିକ ସମୟ କ୍ରମରେ ଯୋଡ଼ି ଦିଆ ହୋଇଛନ୍ତି ମାତ୍ର । ଏହାର ନାମ କ'ଣ ହେବ—ଅନେକ ଚିନ୍ତା ଓ ଆଲୋଚନା କରିଥିଲି । ଗାନ୍ଧିଙ୍କ ବିରାଟ ଜୀବନର ଏକ ଅଂଶ ମାତ୍ର ଏଥିରୁ ଜଣାପଡ଼ିବ—ତେଣୁ ସେହି ଅଂଶର ଚିହ୍ନ ସ୍ୱରୂପ 'ଦୃଷ୍ଟିମୂଳ୍ୟଙ୍କ-ଗାନ୍ଧୀ' ନାଁ ରଖିଲି ।

ଥରେ ମନ ହୋଇଥିଲା 'ଶୁଚୀନାଂ ଶ୍ରୀମତାଂ ଗେହେ ଯୋଗଭ୍ରଷ୍ଟୋଽଭିଜାୟତେ'' ଇତ୍ୟାଦି ଅନୁସାରେ ଗାନ୍ଧୀଙ୍କର କ୍ରମ ବିକାଶର ସୂଚନା ବି ସଙ୍ଗେ ସଙ୍ଗେ ଦେଇଦିଏ । ଏହାପାଇଁ ମସଲା ବହୁତ ରହିଛି । କିନ୍ତୁ ଦେଖିଲି ମୋ ପାଇଁ ସେ ପାଣି ଅଥଳ, କୂଳ କିନାରା ବି ନାହିଁ । ବୁଡ଼ିବା, ଭାସିବା, ପହଁରିବା ସବୁ ଜାଣି ନ ଥିଲେ ସେଥିରେ ଗୋଡ଼ ଦେବା ଉଚିତ ନୁହେଁ । ସେ ଆକାଶ କୁସୁମ ଝଡ଼ିଲା ଯାଉଛନ୍ତି; କିନ୍ତୁ ସେଥିରେ ପଶିବାର ସ୍ୱପ୍ନ ଦେଖୁଛନ୍ତି ।

ଗାନ୍ଧୀଙ୍କର ଏକ 'ଜୀବନୀ' ବା 'ସତ୍ୟାଗ୍ରହର ଇତିହାସ' ପରି ମୁଁ ଏହାକୁ ଯେତେ ସଗ୍ରହ କରି ନାହିଁ, ବେଶୀ କରିଛି, ଏହି ଆଶାରେ ଯେ ସାଧାରଣ ଟାଁ କର୍ମୀଙ୍କ ମନର ଦାରିଦ୍ର୍ୟ ଘୁଞ୍ଚାଇବାରେ କିଛି ସାହାଯ୍ୟ ହେବ, ତାଙ୍କ ମନରୁ ଡର ଯିବ, ଆତ୍ମବିଶ୍ୱାସର ଅଙ୍କୁର ଯିବ ।

ବହୁତ ବଡ଼ ହୋଇ ଯାଇଛି, ତେଣୁ ତନି ଭାଗ ହେଲା— ମୂଳରୁ ୧୯୧୪ରେ ଦକ୍ଷିଣ ଆଫ୍ରିକାରୁ ଗାନ୍ଧୀ ଫେରିବା ଯାଏ, ୧୯୧୮ରୁ ୧୯୩୨ ଲବଣ ସତ୍ୟାଗ୍ରହର ଶେଷଯାଏ, ଏବଂ ସେଠୁ ୧୯୪୨ର ଭାରତ ଛାଡ଼ ଧରପଗଡ଼ ଯାଏ ।

ଯେଉଁ ସହକର୍ମୀମାନେ ଏହାକୁ ପଢ଼ି ଭୁଲ ସଂଶୋଧନ କରି ଦେଇଛନ୍ତି ବା ବଦଳାବଦଳି କରୁଇଛନ୍ତି, ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି ।

ବରୀ-କଟକ } ଗୋପବନ୍ଧୁ ଚୌଧୁରୀ
ତା ୧।୧୧।୪୫

# ଚାଷୀମୂଲିଆ-ଗାନ୍ଧୀ

## ପ୍ରଥମ ଭାଗ

### ( ୧ )

ଜଣେ ପାଦ୍ରୀବନ୍ଧୁ ଥରେ ଗାନ୍ଧୀଙ୍କୁ ପଚାରିଥିଲେ, "ଗରିବଙ୍କ ପ୍ରତି ଆପଣଙ୍କର ତ ଅସୀମ ପ୍ରେମ, ତାହା ଆପଣ ପହିଲେ କେବେ ଅନୁଭବ କଲେ ?" ଗାନ୍ଧୀ ଜବାବ ଦେଇଥିଲେ, "ମୋ ଜୀବନ ଯାକ ସବୁବେଳେ ମୁଁ ଗରିବଙ୍କ ପ୍ରତି ପ୍ରେମ ଅନୁଭବ କରି ଆସିଛି ଏବଂ ତା'ମଧ୍ୟ ଅତି ପ୍ରଚୁର ପରିମାଣରେ ଅନୁଭବ କରୁଛି । ଏ ଜିନିଷଟା ମୋ ଭିତରେ ଏକ ପ୍ରକାର ସ୍ୱଭାବରୁ ରହିଛି । ଏହାର ପ୍ରମାଣ ପାଇଁ ମୁଁ ମୋର ଅତୀତ ଜୀବନରୁ ବହୁତ ଉଦାହରଣ ଦେଇପାରେ । ଗରିବଙ୍କ ସଙ୍ଗେ ମୋର କିଛି ପ୍ରଭେଦ ଅଛି ବୋଲି ମୁଁ କେବେହେଲେ ଜାଣି ପାରି ନାହିଁ । ମୁଁ ସେମାନଙ୍କୁ ଆପଣାର କୁଟୁମ୍ବ ଭଳି ବିଚାରି ଥାଏ ।"

ଗାନ୍ଧୀଙ୍କର ସେବାଭାବର ପୂର୍ଣ୍ଣ ବିକାଶ ଦକ୍ଷିଣ ଆଫ୍ରିକାରେ ହୋଇଥିଲା । ସେହିଠାରୁ ସେ ପୂର୍ଣ୍ଣରୂପେ ଲୋକ ସେବାରେ ଲାଗି ଯାଇଥିଲେ । ୧୮୯୩ ସାଲରେ ତାଙ୍କର ଚବିଶ ବର୍ଷ ବୟସ ବେଳେ ସେ ଦକ୍ଷିଣ ଆଫ୍ରିକା ଯାନ୍ତି । ସେ ପର୍ଯ୍ୟନ୍ତ ଲୋକଙ୍କ ସଙ୍ଗେ ମିଶିବାର ବିଶେଷ ସୁବିଧା ତାଙ୍କୁ ମିଳି ନ ଥିଲେ ସୁଦ୍ଧା, ଗରିବଙ୍କ ପ୍ରତି ତାଙ୍କର ଏହି ଭାବ ପିଲାଦିନୁ ଦେଖାଯାଉଥିଲା ।

ଅତି ପିଲାଦିନର କଥା । ତାଙ୍କ ଘରେ ଉକା ନାଁରେ ଗୋଟିଏ ହରିଜନ ଟୋକା ଗୃହକର୍ମ କରୁଥାଏ । ତାକୁ ଛୁଇଁବା ଯୋଗୁ ଯେ କାଣ୍ଡ ଘଟିଥିଲା ତାହା ଗାନ୍ଧୀ ନିଜେ ଏପରେ ବର୍ଣ୍ଣିଛନ୍ତି "ମୋର ବୟସ ଯେତେବେଳେ ବାର ବର୍ଷ ମୋ ମନରେ ଏହି ଧାରଣା ଜନ୍ମିଥିଲା । ଆମ ଘରେ ପାଇଖାନା ସଫା କରିବାକୁ ଉକା ନାଁରେ ଜଣେ ମେହେନ୍ତର ଆସୁଥାଏ । ମୁଁ ମାକୁ ପଚାରେ, "ତାକୁ ଛୁଇଁଲେ ଦୋଷ କ'ଣ ? ତାକୁ ଛୁଇଁବାକୁ କାହିଁକି ମନା ?" ଯଦି ହଠାତ୍ ତାକୁ ଛୁଇଁ ପକାଏ, ମତେ ଗାଧୋଇବାକୁ କହନ୍ତି । ମୋର ସ୍ୱଭାବ ଯୋଗୁ ମୁଁ ସେ ହୁକୁମ ମାନି ଯାଏ ସତ, କିନ୍ତୁ ମୋର ମତ ମୁଁ ହସି ହସି ଜଣାଇ ଦେଇଥାଏ ଯେ ଅସ୍ପୃଶ୍ୟତା ମାନିବା କେବେହେଁ ଧର୍ମସଙ୍ଗତ ନୁହେଁ; ସେମିତି ହେବା ଅସମ୍ଭବ । ବାପ ମା ଙ୍କର ସମ୍ମାନ ରକ୍ଷା ପାଇଁ ଯେତେଦୂର ସମ୍ଭବ ନମ୍ରଭାବରେ ମୁଁ ତାଙ୍କର ସେତିକି ବିରୋଧ କରୁଥିଲି ।"

୧୯୩୮ରେ ଜଣେ ବନ୍ଧୁ ଗାନ୍ଧୀଙ୍କୁ ପଚାରିଥିଲେ, "ଲୋକଙ୍କ ଉପରେ ଆପଣଙ୍କର ଯେଉଁଭଳି ପ୍ରଭାବ, ତାହା ଦେଖି ଗୋଟିଏ କଥା ପଚାରିବାକୁ ମନ ହେଉଛି । ଲୋକଙ୍କ ପ୍ରତି ପ୍ରେମ ଓ ଗୋଟିଏ ଉଦ୍ଦେଶ୍ୟ ବା ଲକ୍ଷ୍ୟ ପ୍ରତି ନିଷ୍ଠା ଏ ଦୁଇଟିରୁ କେଉଁଟି ଦ୍ୱାରା ଆପଣ ପରିଚାଳିତ ହୋଇଥାନ୍ତି ?" ଗାନ୍ଧୀ ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲେ "ଲୋକଙ୍କ ପ୍ରତି ପ୍ରେମ । ଲୋକଙ୍କୁ ଛାଡ଼ିଲେ ଲକ୍ଷ୍ୟ ବା ଉଦ୍ଦେଶ୍ୟ ତ ଏକ ଶୁଖିଲା ମଲା ଜିନିଷ । ମୋ ଜୀବନର ଆରମ୍ଭରେ ଲୋକଙ୍କ ପ୍ରତି ପ୍ରେମହିଁ ମୋ ଜୀବନରେ ଅସ୍ପୃଶ୍ୟତା ଉଠାଇବା କଥା ପୁରାଇ-ଦେଇଛି । ମୋର ମା କହୁଥିଲେ 'ଏ ପିଲାକୁ ତୁ ଛୁଇଁବୁ ନାହିଁ, ସେ ଅଛୁଆଁ ।' ମୁଁ ଓଲଟା ପଚାରେ 'କାହିଁକି ଛୁଇଁବି ନାହିଁ ?' ଏବଂ ସେହିଦିନୁ ମୋର ବିଦ୍ରୋହ ଆରମ୍ଭ ହୋଇଗଲା ।" ଏହି

ସମ୍ପର୍କରେ ଗାନ୍ଧୀ ପୁଣି ଅନ୍ୟତ୍ର କହିଛନ୍ତି "ସେତେବେଳେ ଅତି ପିଲା ଥିଲି । ମୋର ହୃଦୟ, ମୋର ବୁଦ୍ଧି ଅସ୍ପୃଶ୍ୟତା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରୁଥିଲେହେଁ ମୁଁ ଆମ ପରିବାରରେ ନଗଣ୍ୟ ଥିଲି । ହରିଜନଙ୍କ ପ୍ରତି ସେମାନଙ୍କ ବ୍ୟବହାରରେ ମୁଁ ଚୁପ୍ ରହୁଥିଲି । କିନ୍ତୁ ଏବେ ମୁଁ ତାହା କରି ପାରିବି ନାହିଁ । ସେତେବେଳେ ମୁଁ ଆପଣା ସପକ୍ଷରେ ଯୁକ୍ତି ବି କରି ପାରି ନ ଥାନ୍ତି । ସେତେବେଳେ ପରିବାର ସଙ୍ଗେ ରହିବାରେ ମୋର ବ୍ୟକ୍ତିଗତ ବିଶ୍ୱାସର କିଛି ବିରୋଧ ହେଉଥିଲା ବୋଲି ମତେ ଜଣା ପଡୁ ନ ଥିଲା ।"

ଦକ୍ଷିଣ ଆଫ୍ରିକା ଯିବା ପର ଠାରୁ ଗାନ୍ଧୀ କେବେହେଲେ ଚାକର ରଖିନାହାନ୍ତି । ପିଲାଦିନେ ତାଙ୍କ ଘରେ ଯେ ଚାକର ଥିଲେ ବା ସେ ଯଦି କେବେ କାହାକୁ ଚାକର କହିବାକୁ ଲାଗୁଥିଲେ ସେମାନଙ୍କଠାରୁ ଯାହା ଯେତେବେଳେ ଶିଖିଛନ୍ତି ତାହା କେବେ ଭୁଲି ନାହାନ୍ତି ଏବଂ ସେ କଥା ସେ ନିଜ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଜଣେ ପୁରୁଣା ଧାଈ ତାଙ୍କ ଘରେ ତାଙ୍କ ପିଲାଦିନେ ଥିଲା । ତାହା ସମ୍ବନ୍ଧରେ ସେ ଲେଖିଛନ୍ତି "ତାହାର ସ୍ନେହ ମୁଁ ଭୁଲିବି ନାହିଁ । ମୁଁ ଦେବ ମନ୍ଦିରକୁ ଅନେକ ଥର ଯାଇ ଯାହା ପାଇ ନ ଥିଲି, ତାହା ମୁଁ ମୋର ଏ ବୁଢ଼ୀ ଧାଈ ଠାରୁ ପାଇଛି । ଆଗରୁ କହିଛି ମୋର ଭାରି ଭୂତ ପ୍ରେତ ଡର ଥିଲା । ବୁଢ଼ୀ ଧାଈ ରମ୍ଭା ମୋତେ ଏଥିପାଇଁ ରାମନାମ ଜପିବାକୁ ଶିଖାଇଥିଲା । ତା'ର ଏ ଔଷଧ ଠାରୁ ତାହାଠାରେ ମୋର ଅଧିକ ବିଶ୍ୱାସ ଥିଲା । ତେଣୁ ଏତେ ଅଳ୍ପ ବୟସରେ ମୋର ଏ ଡର ଛଡ଼େଇବାକୁ ମୁଁ ରାମନାମ ଜପିବା ଆରମ୍ଭ କରିଥିଲି । ଅଳ୍ପଦିନେ ଜପିବା ଛାଡ଼ି ଦେଇଥିଲି ସତ, ମାତ୍ର ପିଲାଦିନେ ତାହା ମଂଜିଟି ପୋତା ହୋଇଥିଲା ତାହା ବୃଥା ଯାଇ ନ ଥିଲା । ମୋର ମନେ ହୁଏ, ସେହି ସରଳହୃଦୟା ରମଣୀ ରମ୍ଭା ଯେ ମଂଜି ପୋତି

ଯାଉଛି, ତାର ଫଳରେ ଏକ ସମନାମ ମୋର ଅକ୍ଷୟ କବଚ ହୋଇ ରହିଛି ।”

ବିଲାତର କଥା, ଗାନ୍ଧୀ ବାରିଷ୍ଟର ପଢ଼ିବାକୁ ଯାଇଥାନ୍ତି । ବୟସ ତ ବେଶୀ ହୋଇ ନ ଥାଏ । ସେଠି ସଭ୍ୟ ମାର୍ଜିତ ହେବାର ଏକ ଝୁଙ୍କ ଉଠିଥିଲା । ସାହେବୀ ଗୃହ ଚଳନ, ଆଦବ କାୟଦା ଦୋରସ୍ତ କରିବାର ଉଦ୍ୟମ କରିଥିଲେ । ମାଛ ମାଂସ ନ ଖାଇଲେ ସୁଦ୍ଧା, ମଦ ବା ଧୂଆଁ ପାଖ ମାଡ଼ି ନ ଥିଲେ ମଧ୍ୟ, ଖାସ ବିଲାତରେ ତିଆରି ସାହେବୀ ପୋଷାକ ପିନ୍ଧୁଥିଲେ, ସାହେବୀ ସମାଜର ନାଚ ଓ ବାଇଣା ମାଷ୍ଟର ରଖି ଶିଖୁଥିଲେ । କିନ୍ତୁ ତାଙ୍କ ଆଖି ଶୀଘ୍ର ଫିଟି ଯାଇଥିଲା । ସେ ସବୁ ବନ୍ଦ କରିଦେଇଥିଲେ । ଅଳ୍ପ ଖର୍ଚ୍ଚରେ କେମିତି ଚଳିବେ ସେହି ବିଚାର ତାଙ୍କ ମନକୁ ଘେରି ଯାଇଥିଲା । ଆପଣା ପରିବାରର ମର୍ଯ୍ୟାଦା ବାହାରକୁ ଯିବାର ଆକାଂକ୍ଷା ଛାଡ଼ି ଦେଇଥିଲେ । ସେତେବେଳେ ସେ କେତେ ଜଣ ଗରିବ ଛାତ୍ରଙ୍କ ଗୃହ ଚଳନ ଦେଖି ସେ ବିଶେଷ ଉତ୍ସାହିତ ହୋଇଥିଲେ । ସେମାନଙ୍କର ଅଳ୍ପଖର୍ଚ୍ଚରେ ଚଳିବାର ଦେଖି ସେ ଆପଣାର ସବୁ ଖର୍ଚ୍ଚ କମେଇ ଦେଇ ହାତରେ ଓଳିଏ ଓଳିଏ ରୋଷେଇ କରି ଚଳିବାକୁ ଲାଗିଥିଲେ । ସେ ଲେଖିଛନ୍ତି, “ଏଇଲି ଗୃହଚଳନ ବଦଳେଇବା ଫଳରେ ମୋର ଭିତର ଜୀବନ ଓ ବାହାର ଜୀବନର ସାମଞ୍ଜସ୍ୟ ଘଟିତ ହୋଇଥିଲା—ଭିତର ଜୀବନ ସଙ୍ଗେ ବାହାର ଜୀବନ ଖାପ ଖାଇଥିଲା । ମୋର ପରିବାରର ଅବସ୍ଥାକୁ ଦେଖି ଚଳିବାଟା ଠିକ୍ ହୋଇଥିଲା । ମୋର ଜୀବନ ଅଧିକ ସତ୍ୟମୟ ହୋଇଥିଲା । ମୋର ଆନନ୍ଦର ସୀମା ନ ଥିଲା ।

( ୨ )

ଗାନ୍ଧୀ ବିଲାତରୁ ବାରିଷ୍ଟର ହୋଇ ଫେରିଥାନ୍ତି । ଫେରିଲେ ରାଜକୋଟଠାରେ ଓକିଲାତି ଆରମ୍ଭ କରିଥାନ୍ତି । ବିଲାତରେ ସାଦାସିଧା ଜୀବନ କଟେଇଥିଲେ ମଧ୍ୟ, ପସାର ଜମେଇବା ପାଇଁ ରାଜକୋଟ-ଠାରେ କେତେକ ସାହେବୀ ଢଙ୍ଗ ଢାଙ୍ଗ ଓ ଠାଟ ଦେଖେଇବାକୁ ପଡ଼ିଥିଲା । କିନ୍ତୁ ରୋଜଗାର ସେମିତି ନ ଥିବାରୁ ଧଳାହାତି ପୋଷିବା ବେଶୀ ଦିନ ଚଳି ନ ଥିଲା । ସେ ବମ୍ବେ ପଳେଇଥିଲେ । ସେଠାରେ ସେ ଅଳ୍ପ ଖର୍ଚ୍ଚରେ ଚଳିବା ଆରମ୍ଭ କରିଥିଲେ । ନିଜ ଭାଷାରେ ସେ ବର୍ଣ୍ଣନା କରିଛନ୍ତି "ବମ୍ବେଠାରେ ଏକ ରୋଷେୟାକୁ ନେଇ ଘରକରଣା ଆରମ୍ଭ କଲି । ସେ ବି ମୋରି ଭଳି ଅନାଡ଼ି ଓ ଅଯୋଗ୍ୟ ଥିଲା । ସେ ଥିଲା ବ୍ରାହ୍ମଣ । ମୁଁ ତା' ପ୍ରତି ନୌକର ଭଳି ବ୍ୟବହାର କରୁ ନ ଥିଲି । ତାକୁ ଆପଣା ଘରର ଜଣେ ପରି ବିଚାରୁଥିଲି । ସେ ଆପଣା ଉପରେ ପାଣି ଢାଳି ହେବ କିନ୍ତୁ ଘଷି ହୋଇ ଗାଧୋଇବ ନାହିଁ । ତା ଧୋତି ଯେମିତି ମଇଳା ପଇତା ବି ସେମିତି ମଇଳା । ଧର୍ମ ଶାସ୍ତ୍ରର ଜ୍ଞାନ ତା'ର ଆଦୌ ନ ଥିଲା । ତା'ଠାରୁ ଭଲ ରୋଷେୟା ବା ମତେ ମିଳନ୍ତେ କାହୁଁ ? ମୁଁ ତାଙ୍କୁ ପଚାରେ, 'ରବିଶଙ୍କର, ତମେ ସିନା ରୋଷେଇ ଜାଣି ନାହଁ, ତେମେ ସନ୍ଧ୍ୟା ଗାୟତ୍ରୀ ତ ନିଶ୍ଚୟ ଜାଣିଥିବ ?' ସେ କହେ, 'ଆଜ୍ଞା ସନ୍ଧ୍ୟା ! ନଙ୍ଗଳ ଆମର ସନ୍ଧ୍ୟା, କୋଡ଼ି ଆମର କର୍ମ କର୍ମାଣି । ମୁଁ ସେହି ଜାତିଆ ବ୍ରାହ୍ମଣ । ମୁଁ ତମ ଦୟା ଉପରେ ବଞ୍ଚି ରହିବି । ତା' ନ ହେଲେ ପୁଣି ଯାଇ ଗୃହବାସ କରିବି ।' ଏଭଳି ଅବସ୍ଥାରେ ମତେ ରବିଶଙ୍କରର ଶିକ୍ଷକ ହେବାକୁ ପଡ଼ିଥିଲା । ମୋର ସମୟ ବି ବହୁତ ଥାଏ । ଅତଏ ରୋଷେଇ ମୁଁ ନିଜେ କରୁଥାଏ । ବିଲାତ ନିରାମିଷ ରନ୍ଧାର ପ୍ରୟୋଗ ପୁଣି ଆରମ୍ଭ କରି ଦେଇଥିଲି । ଗୋଟିଏ କିରାସିନି ଚୁଲୀ କିଣିଥିଲି

ଏବ ରବଶଙ୍କରଙ୍କ ସାହାଯ୍ୟରେ ଲୁଚାବନ୍ଧା କାମ ଚଳେଇଥିଲି । ଏଭଳି ଖାଇବାରେ ମୋ ମନରେ ଭଲେ ହେଲେ ଆପତ୍ତି ନ ଥିଲା । ରବଶଙ୍କର ମନରୁ ବ ତାହା ଛାଡ଼ି ଯାଇଥିଲା । ଫଳରେ ଆମେ ଦୁହେଁ ବେଶ୍ ଆନନ୍ଦରେ ଦନ କଟେଇଲୁ । ଗୋଟିଏ ବାଧା କେବଳ ଥାଏ । ମଲ ଛଡ ପ୍ରୀତ ରବଶଙ୍କର ଛାଡ଼ି ନ ଥିଲା । ସେସେଇ ସଫା ସୁତରା ରଖିବ ନାହିଁ ବୋଲି ସେ ସତେ ଯେମିତ ବ୍ରତ କର ବସିଥିଲା !!”

ପହଲ ମକଦମା ଚଳେଇବାକୁ ଯାଇ ଗାନ୍ଧୀଙ୍କ ମୁଣ୍ଡ କେମିତ ବୁଲେଇଲା, ଗୋଡ଼ ଥରିଲା ଏବ ମହକିଲକୁ ଟଙ୍କା ଫେରାଇ ଦେଇ ସେ କେମିତ ବସି ପଡ଼ିଥିଲେ, ସେ କଥା ଜଣା ଶୁଣା । ସେହି ଘଟଣା ପରେ ସେ କ'ଣ କରିବେ ବୋଲି ବହୁତ ବହୁତ ଶେଷରେ ଦରଖାସ୍ତ ଅର୍ଜି ଲେଖା କରିଦେବେ ବୋଲି ସ୍ଥିର କରିଥିଲେ । ତାଙ୍କ ଭାଗ୍ୟକୁ ଜଣେ ଗରିବ ମୁସଲମାନ ଗୃଷୀର ଅର୍ଜି ପ୍ରଥମେ ଆସି ଜୁଟିଥିଲା । ସେ ଗୃଷୀର କିଛି ଜମି ପୋରବନ୍ଦର ରାଜା ଖାସ କର ନେଇଥିଲେ । ଗାନ୍ଧୀଙ୍କ ବାପା ଦିନେ ସେହି ପୋରବନ୍ଦର ରାଜ୍ୟର ଦେଓ୍ୱାନ ଥିଲେ । ଯୋଗ୍ୟ ପିତାଙ୍କର ଯୋଗ୍ୟ ପୁଅ ହୋଇଥିବେ ଏଥି ବହୁତ ସେ ଗୃଷୀଟି ଗାନ୍ଧିଙ୍କୁ ଧରିଥିଲା । ଗାନ୍ଧୀ ଏକ ଅର୍ଜି ଲେଖା କର ଦେଇଥିଲେ । ଲେଖାଟିକୁ ସେ ଆପଣା ଓକିଲ ବନ୍ଧୁମାନଙ୍କୁ ଦେଖାଇଥିଲେ । ସେମାନେ ପସନ୍ଦ କରିଥିଲେ । ଗାନ୍ଧୀଙ୍କ ମନରେ ଆତ୍ମବିଶ୍ୱାସ ଆସିଥିଲା ଯେ ସେ ଅନ୍ତତଃ ଅର୍ଜି ଖଣ୍ଡେ ଲେଖା କର ପାରିବେ । ପ୍ରକୃତରେ ମଧ୍ୟ ଏଭଳି ଲେଖା କରିବାରେ ତାଙ୍କର ଅଦ୍ଭୁତ ଶକ୍ତି ଥିଲା । ଏହି ଭଳି ବନା ପଇସାରେ ଲେଖା କରିଥିଲେ ତାଙ୍କ ବ୍ୟବସାୟ ଜମିଥାନ୍ତା । କିନ୍ତୁ ସେଥିରେ ପେଟକୁ ଦାନା ମିଳି ନ ଥାନ୍ତା ।

ଖର୍ଚ୍ଚ କମିବ ବୋଲି ପୁଣି ଆପଣା ଘର ରାଜକୋଟକୁ ଫେରି ଆସିଥିଲେ । ବିଗୁରିଥିଲେ ଅର୍ଜି ଲେଖା କରି ଯାହା ମିଳିବ ସେଥିକରେ ଯଥେଷ୍ଟ ହେବ । କିନ୍ତୁ ସେଠିବି ଘରେ ପଣ୍ଡା ପଣ୍ଡା ମୁଣ୍ଡରେ ଗୃଲ ବାଜିଥିଲା । ତାଙ୍କ ଭାଇ ରଜାଙ୍କ କଚେରିରେ ଗୋଟିଏ ଗୃକିରିରୁ ବରଖାସ୍ତ ହେଲି ଭଳି ଏକ ଅଡୁଆରେ ପଡ଼ିଥାନ୍ତି । ସେଠା ପଲିଟିକାଲ ଏଜେଣ୍ଟ ଜଣେ ସାହେବ; ତାଙ୍କ ସଙ୍ଗେ ଗାନ୍ଧୀଙ୍କର ବିଲାତରେ ଚିହ୍ନା ଥିଲା । ଭାଇଙ୍କ କଥାରେ ପଡ଼ି ଭାଇଙ୍କୁ ସୁପାରିଶ କରିବାକୁ ଯାଇ କେମିତି ସେ ସାହେବଙ୍କ ଠାରୁ ନାକଚେକା, ଗାଳିରୁ ଆରମ୍ଭ କରି ଶେଷରେ ଚପରାସୀଙ୍କ ହାତରେ ତଣ୍ଟିଆ ଖାଇ ଆସିଥିଲେ, ତାହା ଆତ୍ମକଥାରେ ଲେଖିଛନ୍ତି । ଏହି ଘଟଣା ତାଙ୍କ ଜୀବନର ଗତି ବଦଳେଇ ଦେଇଥିଲା । ଏତକି ବେଳେ ସେହି ରାଜକୋଟ ଗଡ଼ଜାତର ଗୃଷୀ ପ୍ରଜାଙ୍କ ପାଇଁ କିଛି ଖଜଣା ଊଣା କରେଇବା ଉଦ୍ୟମ କରିଥିଲେ । ସେଠା ଗୃଷୀଙ୍କ ଉପରେ ଖଜଣା ହାର ଭାରି ଚଢ଼ା ଥାଏ । ସେତେବେଳେ ରଜାଙ୍କର ମଧ୍ୟ ପୁରା କ୍ଷମତା ମିଳି ନ ଥାଏ, କୋର୍ଟ ଅଫ୍ ଓ୍ୱାର୍ଡ଼ସ ଥାଏ । ଗାନ୍ଧୀ ଗୃଷୀଙ୍କ ପାଇଁ ମେନେଜରଙ୍କ ପାଖକୁ ଦଉଡ଼ା ଦଉଡ଼ି କରିଥିଲେ । କିନ୍ତୁ ଫଳ କିଛି ହୋଇ ନ ଥିଲା । ସେ ହାକିମ କଳା ହେଲେ ବି ଗୋରାସାହେବଙ୍କ ଠାରୁ ବଳି ହାମବଡ଼ା ଥିଲେ ।

ରଜାଙ୍କ କ୍ଷମତା ବଢ଼େଇବା ଉଦ୍ୟମରେ ଠିକଏ ସଫଳ ହୋଇଥିଲେ ସତ କିନ୍ତୁ ଗୃଷୀଙ୍କ ଗୁହାରି ତଦନ୍ତ ସୁଦ୍ଧା କରି ହୋଇ ନ ଥିଲା । ଗାନ୍ଧୀ ଲେଖିଛନ୍ତି, "ଏ ଉଦ୍ୟମରେ ମଧ୍ୟ ମୁଁ ହତାଶ ହେଲି । ମୋର ଗୃଷୀ ମକ୍‌କିଲଙ୍କ ପ୍ରତି ନ୍ୟାୟ ବିଗୁର ହେଲା ନାହିଁ ବୋଲି ବୁଝିଥିଲି କିନ୍ତୁ ନ୍ୟାୟ ଅଦାୟ କରିବାର ବାଟ ମତେ ସେତେବେଳେ ଜଣା ନ ଥିଲା । ...... ଏ ଗଡ଼ଜାତରେ ଥାଇନ କ

ନ ଥିବ, ସାହେବଙ୍କ ଇଚ୍ଛା ବେଦବାକ୍ୟ ଥିଲା । ଫଳରେ ମୋ ମନ ମୋକଦ୍ଦମାରୁ ଏକଦମ ଉଠିଯାଇଥିଲା ।”

( ୩ )

ଏହାର ପରେ ଥରେ ଜଣେ ମକ୍କେଲର ମକଦ୍ଦମା ତଦ୍ୱିର କରିବା ପାଇଁ ଗାନ୍ଧୀ ଦକ୍ଷିଣ ଆଫ୍ରିକା ଯାଇଥିଲେ । ଦକ୍ଷିଣ ଆଫ୍ରିକାରେ ପହଞ୍ଚିଲା ବେଳକୁ ସେଠାର ଭାରତବାସୀଙ୍କ ଅବସ୍ଥା ବଡ଼ ଖରାପ ହୋଇଥାଏ । କଳା ଗୋରା ଭେଦଭାବର ଜୁଲମ ସେଠା କଳା ଭାରତବାସୀଙ୍କ ଉପରେ ଶାସକମାନେ ଚଳାଇଥାନ୍ତି । ଭାରତବାସୀଙ୍କୁ ସେଠାରେ କୌଣସି ପ୍ରକାର ଅଧିକାର ମିଳୁ ନ ଥାଏ । ଗାନ୍ଧୀଙ୍କୁ ଏ ସବୁ ହାଲ କିଛି ଜଣା ନ ଥିଲା । ସେଠା ମାଟିରେ ଗୋଡ଼ ଦେଇ ଦେଇ ଦିନ କେତେଟା ଉପରେ ଯେତିକି ଅପମାନ, ଦୁଃଖକଷ୍ଟ ଗାନ୍ଧୀ ଅଙ୍ଗେ ନିଭେଇଥିଲେ, ସେଥିରୁ ସେ ସେଠା ହାଲ ଅତି ସହଜରେ ବୁଝି ଯାଇଥିଲେ ।

ପହିଲି ଦିନ ଗାନ୍ଧୀ କଚେରୀକୁ ପଗଡ଼ୀ ଲଗେଇ ଯାଇଥାନ୍ତି । ମିଶଲରେ ହାକିମ ତାଙ୍କୁ କଟମଟ କରି ଅନେଇ ଅନେଇ ଶେଷରେ ପଗଡ଼ୀ କାଢ଼ିବାକୁ କହିଥିଲେ । ସେଠି କଳା ଲୋକଙ୍କୁ ଦେଶୀ ପଗଡ଼ୀ ବାନ୍ଧି ମିଶଲକୁ ଯିବା ମନା ଥିଲା । ଗାନ୍ଧୀ ସେ ମିଶଲରୁ ଉଠି ଚାଲି ତ ଆସିଥିଲେ କିନ୍ତୁ ତାଙ୍କ କପାଳରେ ସେଠି କେତେ କ'ଣ ଲେଖା ଥିଲା ତାହା ସେହି ସାତ ଦିନ ଭିତରେ ସେ ଜାଣି ପାରିଥିଲେ । ସେ ପ୍ରିଟୋରିଆ ରେଲରେ ଯିବାକୁ ପ୍ରଥମ ଶ୍ରେଣୀ ଟିକଟ କରି ବସିଥିଲେ । କଳା ଲୋକଙ୍କୁ ଏ ଟିକଟ ତ ମିଳେ ନାହିଁ, ମିଳିଗଲେ ବି ରେଲ ହାକିମମାନେ ଆପଣା ଇଚ୍ଛା ମୁତାବକ ପ୍ରଥମ ଶ୍ରେଣୀ କାମରାରୁ କଳା ଲୋକଙ୍କୁ ବାହାର କରି ଦେଉଥିଲେ । ସତକୁ ସତ ସତ

ଅଧରେ ଗୋଟିଏ ବାଟ ଷ୍ଟେସନରେ ପୁଲିସ ସାହାଯ୍ୟରେ ଗାନ୍ଧୀଙ୍କୁ ଗାଡ଼ୀରୁ ଓହ୍ଲାଇ ଦିଆ ଯାଇଥିଲା । ଶୀତଦିନ ଅନ୍ଧାରରେ ମୁସାଫିର ଖାନାରେ, ଏକ ଅପରିଚିତ ଦେଶରେ ସାରାରାତି ବସି ବସି ଗାନ୍ଧୀ ଏ ଅପମାନକୁ ହଜମ କରିଥିଲେ ଏବଂ ସେହି ଦିନ ପ୍ରତିଜ୍ଞା କରିଥିଲେ —ସବୁ କଷ୍ଟ ସହିବେ କିନ୍ତୁ ନିଜ କାମ କରିଯିବେ, ପଛଘୁଞ୍ଚା ଦେଇ ଫେରିଯିବେ ନାହିଁ, ଅପଣାର ଦୁଃଖ ପାଇଁ କାହାର ବିରୁଦ୍ଧରେ ମାଲି ମକଦମା କରିବେ ନାହିଁ କିନ୍ତୁ କଳା ଗୋରା ଭେଦକୁ ଉଠାଇବା ପାଇଁ ଦରକାର ପଡ଼ିଲେ ମକଦମା କରିବେ; ନିଜ ପାଇଁ ଭଗବାନଙ୍କ ଉପରେ ନିର୍ଭର କରି ଚାଲିବେ ।

ଏତିକରେ ସରି ନ ଥିଲା । ଭଗବାନ ଗାନ୍ଧୀଙ୍କ ସଙ୍କଳ୍ପ ପରୀକ୍ଷା କରି ନେଇଥିଲେ । ସେହି ଯାତ୍ରାରେ ଥୋଡ଼ା ବାଟ ଘୋଡ଼ା ଗାଡ଼ିରେ ଯିବାକୁ ପଡ଼େ । 'ଗାନ୍ଧୀ ସେ ଘୋଡ଼ା ଗାଡ଼ି ବାଲାଠାରୁ ମାଡ଼ ଗୁଡ଼ାଏ ଖାଇଥିଲେ' କିନ୍ତୁ ନିଜର ଜାଗା ଛାଡ଼ି ନ ଥିଲେ । ସହଯାତ୍ରୀମାନେ ନିନ୍ଦା କରିବାରୁ ଗାଡ଼ିବାଲା ମାଡ଼ ବନ୍ଦ କରିଥିଲା ଓ କ୍ଷମା ଚାହିଁଥିଲା । ଗାନ୍ଧୀ ସହିଗଲେ : ତା' ନାମରେ ମକଦମା କରିବାକୁ ନାରାଜ ହୋଇଥିଲେ ।

ପ୍ରିଟୋରିଆରେ ପହଞ୍ଚି କଳାଲୋକ ବୋଲି ହୋଟେଲରେ ସେ ଜାଗା ପାଇ ନ ଥିଲେ । ଗୋରାଙ୍କ ଆଖିରେ ସେଠା କଳା ଲୋକେ ସମସ୍ତେ କୁଲୀ । ଗାନ୍ଧୀ ବି କୁଲୀ ବାରିଷ୍ଟର ପଦ ପାଇଥିଲେ । ସେଠି ରାତି ନ'ଟା ପରେ କଳା ଲୋକେ ବିନା ଛାଡ଼ରେ ସଡ଼କରେ ଯାଆସ କରି ପାରୁ ନ ଥିଲେ । ଗାନ୍ଧୀ ରାତିରେ ବୁଲନ୍ତି । ଛାଡ଼ ଖଣ୍ଡେ ରଖିଥାନ୍ତି । କିନ୍ତୁ ଛାଡ଼ ମାଗୁଛି କିଏ ? କଳା ଲୋକ ତ, ସେଠା ବଡ଼ହାକିମଙ୍କ ଘର ଆଗରେ ପୁଲିସବାଲା ପହରା ସ୍ୟାଙ୍କୁ ଦେଖିଲାମାତ୍ରେ ବିନାନୋଟିସ୍ ଧକା ଗୋଟାଏ ଦେଇ ସଡ଼କର ତଳକୁ ଗଡ଼େଇ

ପଡ଼ିଥିଲା । ପରେ ପୁଲିସ ଗାଳି ଖାଇଲା, କ୍ଷମା ମାଗିଲା । ଗାନ୍ଧୀଜି ତାଙ୍କୁ ଆଗରୁ କ୍ଷମା କରି ସାରିଥିଲେ । ତା'ର ବା ଦୋଷ କ'ଣ ? କଲାଗୋରା ଭେଦର ଏହା ଏକ ପରିଣାମ ମାତ୍ର ଥିଲା । ଏ ସବୁ ଅପମାନ ଗାନ୍ଧୀ ସହି ଯାଇ ସେଠା ଭାରତୀୟଙ୍କର ହାଲ ନଚେ ଭଲ ରକମ ତଦନ୍ତ କରି ବୁଝିଥିଲେ ।

ସେଠାରେ ତିନି ପ୍ରକାର ଭାରତବାସୀ ବାସ କରୁଥାନ୍ତି । ସବୁଠୁ ବେଶୀ ସଂଖ୍ୟାରେ ଥିଲେ ଗିରମିଟିଆ କୁଲି । ସେମାନେ ଏତେ ବର୍ଷ କୁଲି କାମ କରିବେ ବୋଲି ଚୁକ୍ତି ଲେଖିଦେଇ ବଡ଼ ବଡ଼ ଫାର୍ମ କାରଖାନାରେ କାମ କରୁଥିଲେ । ତାଙ୍କ ପାଇଁ ଏ ଆଇନ ଥିଲା—ଚୁକ୍ତି ବା ଏଗ୍ରିମେଣ୍ଟର କାଳ ନ ପୁରୁଣୁ ସେ କାମ ଛାଡ଼ି ଯାଇ ପାରନ୍ତେ ନାହିଁ । ଆଉ ଦଳେ ଥିଲେ 'ମୁକ୍ତ ଗିରମିଟିଆ' ଅର୍ଥାତ୍ ଯେଉଁମାନେ ଚୁକ୍ତି କାଳ ପୂରିଯିବା ପରେ ସେଠି ସ୍ୱାଧୀନ ହୋଇ କାମରେ ରହୁଥା'ନ୍ତି କିଂବା ଗିରମିଟିଆଙ୍କ ଯେଉଁ ପିଲାମାନେ ସେଠି ଅନ୍ୟ ସ୍ୱାଧୀନ ଧନ୍ଦା କରି ଚଳନ୍ତି । ତୃତୀୟ ଦଳ, ଯେଉଁମାନେ ସେଠାରେ ବେପାର ବା କିରାଣୀ କାମ କରିବାକୁ ଯାଉଥିଲେ । ସେଠାକାର ଭାରତୀୟଙ୍କ ଭିତରେ ଅଧିକାଂଶ ଥିଲେ ଭାରତର ଗରିବ ଶ୍ରମଜୀବୀ ଶ୍ରେଣୀର ଲୋକେ । ଯେଉଁମାନେ ଭାରତରେ ପେଟ ପୋଷି ନ ପାରି, ନିଜର ଭାଗ୍ୟ ପରୀକ୍ଷା ପାଇଁ ବିଦେଶକୁ ପଳାଉଥିଲେ ।

ଗାନ୍ଧୀ ଯେଉଁ ମକଦମାରେ ସେଠାକୁ ଯାଇଥିଲେ ତାକୁ ବିଶେଷ ଚେଷ୍ଟା କରି ରଫା କରାଇ ଦେଇଥିଲେ । ତେଣୁ ଭାରତକୁ ଫେରିବାକୁ ବସିଥିଲେ । ସେହି ସମୟରେ ଖବର କାଗଜ ପଢୁ ପଢୁ ଏକ ଖବର ତାଙ୍କ ଆଖିରେ ପଡ଼ିଲା । ଭାରତୀୟଙ୍କର ଆହୁରି କେତେକ ଅଧିକାର ଛଡ଼ାଇ ନେବା ପାଇଁ ଏକ ନୂଆ ଆଇନ ହେଉଥିବାର ଖବର ବାହାରିଥିଲା । ଜାତିର ଆତ୍ମସମ୍ମାନ ରକ୍ଷା

ପାଇଁ ଏକ ଲଢ଼େଇ ଆରମ୍ଭ କରିଦେବା ପାଇଁ ବସ୍ତୁରିଥିଲେ । ସେଠାକାର ମୁଖିଆ ମୁଖିଆ ଲୋକଙ୍କ ସଙ୍ଗେ ପରାମର୍ଶ ମଧ୍ୟ କରିଥିଲେ । ଘରକୁ ଲେଉଟିବା ବନ୍ଦ ହୋଇଗଲା । ଗାନ୍ଧୀ ନେଟାଲରେ ରହିଗଲେ । ସେଠି ଓକିଲାତି କରିବାକୁ ବହୁ କଷ୍ଟରେ ମଂଜୁରି ପାଇଥିଲେ । ଗୋରା ଓକିଲମାନେ ପ୍ରଥମେ ଆପତ୍ତି ଉଠାଇଥିଲେ ।

ଗାନ୍ଧୀ ଏକ ଜାଗାରେ ଲେଖିଛନ୍ତି, "ସେବକ ସେବାକ୍ଷେତ୍ରରେ ପଶିଲେ, ନାନା ସୁଯୋଗ ଜୁଟିଯିବ । ଅଳ୍ପ ଅର୍ଥିକ କ୍ଷେତ୍ରରେ ତ ଭାଲ୍ ସାମାଜିକ କ୍ଷେତ୍ର ବା ପରବର୍ତ୍ତୀ ରାଜନୈତିକ କ୍ଷେତ୍ରରେ ସୁଯୋଗ ମିଳିଯିବ । ସେତେବେଳେ ତମେ କହି ପାରିବ ନାହିଁ ଏହି ଗୋଟାକ କରିଦେବ, ଅନ୍ୟଥିରେ ହାତ ଦେବ ନାହିଁ । ମୁଁ ଦକ୍ଷିଣ ଆଫ୍ରିକା ପହଞ୍ଚିଲା ବେଳେ ସେଠାକାର ହାଲ ଜାଣି ନ ଥିଲି । ମୁଁ ତ ମୋ ମକ୍କେଲ ପାଇଁରେ ବନ୍ଧା ଥିଲି । ମାତ୍ର ସାତଦିନ ଭିତରେ ଏମିତି ଭୟଙ୍କର ଅବସ୍ଥା ହେଲା ତା' ବର୍ଣ୍ଣି ହେବ ନାହିଁ । ମୁଁ ସେ ଅବସ୍ଥାର ସମାଧାନ କରିବାକୁ ବାଧ୍ୟ ହେଲି ।"

( ୪ )

ସେଠା ସରକାର ଯେ ଆଇନ କରି କଳା ଲୋକଙ୍କ ଅଧିକାର ଛଡ଼େଇ ନେବାକୁ ବସିଥିଲେ ତାହା ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେଠା ଆଇନ ସଭାକୁ ଦରଖାସ୍ତ ଗଡ଼ାଗଡ଼ି ଲେଖି ବହୁ ଲୋକଙ୍କ ଦସ୍ତଖତରେ ପଠାଗଲା । ପରେ ପରେ ବିଲାତ ସରକାରଙ୍କୁ ଦଶହଜାର ଲୋକଙ୍କ ଦସ୍ତଖତରେ ଏକ ଦରଖାସ୍ତ ମଧ୍ୟ ଯାଇଥିଲା । ଲୋକଙ୍କୁ ଭଲ ରକମ ବୁଝାଇ ଦସ୍ତଖତ ନିଆ ହୋଇଥିଲା । ଗାନ୍ଧୀ ଏକ ସଂଗଠନ କରେଇ ଶୀଘ୍ର ଏ କାମ କରେଇ ନେଇଥିଲେ । କିନ୍ତୁ କଳା ଲୋକଙ୍କର ଅଧିକାର ଲଢ଼ିବା ପାଇଁ ଏକ ସ୍ଥାୟୀ ଅନୁଷ୍ଠାନର

ଆବଶ୍ୟକତା ଜଣା ପଡ଼ିଥିଲା । ଗାନ୍ଧୀ 'ନାଟାଲ ଭାରତୀୟ କଂଗ୍ରେସ' ନାମରେ ଏକ ସଭା କାୟମ କରିଥିଲେ । ତା'ର ନିୟମ ଶକ୍ତ ହୋଇଥିଲା; ସଭ୍ୟ ଚାନ୍ଦା ଧାର୍ଯ୍ୟ ହୋଇଥିଲା । ଏହା ୧୮୯୪ରେ କଥା ।

ଏହି ସମୟରେ ଏକ ଘଟଣା ଘଟିଲା ଯେଉଁଥିରେ ଏ କଂଗ୍ରେସ ସେଠା କୁଲି ମୂଲିଆଙ୍କର ସେବା କରି ସେମାନଙ୍କର ବିଶ୍ୱାସର ପାତ୍ର ହୋଇ ପାରିଥିଲା । ଘଟଣାଟି ଗାନ୍ଧୀଙ୍କ ଆତ୍ମକଥାରେ ବର୍ଣ୍ଣିତ ଅଛି । ଗାନ୍ଧୀ ଲେଖିଛନ୍ତି "ଯାହାର ଯେପରି ଭାବନା ତାକୁ ସେହିପରି ସିଦ୍ଧି ମିଳିଥାଏ; ମୋର ଅଭିଜ୍ଞତାରୁ ମୁଁ ଦେଖିଛି ଅଧିକାଂଶ ସମୟରେ ମୋଠାରେ ଏ ନିୟମ ଫଳିଛି । ଗରିବଙ୍କ ସେବା ପାଇଁ ମୋର ଅନ୍ତରର ବାସନା ଥାଏ ବୋଲି, ସେହି ବାସନା ମତେ କୁଆଡ଼ୁ କୁଆଡ଼ୁ ନେଇ ସେହି ଗରିବଙ୍କ ସଙ୍ଗେ ମତେ ପକେଇ ଦେଇଥାଏ ଏବଂ ଗରିବଙ୍କ ସୁଖଦୁଃଖରେ ଭାଗୀ ହେବା ପାଇଁ ମତେ ସୁବିଧା ସୁଯୋଗ ଜୁଟାଇ ଦେଇଥାଏ ।

"ଯେଉଁ ଭାରତୀୟମାନେ କିରାଣୀ ହୋଇ ଆସିଥିଲେ ବା ଯେଉଁମାନେ ସେହି ଦକ୍ଷିଣ ଆଫ୍ରିକାରେ ଜନ୍ମ ହୋଇଥିଲେ ସେମାନେ ତ ନାଟାଲ ଭାରତୀୟ କଂଗ୍ରେସରେ ସଭ୍ୟ ହେଉଥିଲେ ମାତ୍ର ସାଧାରଣ ମୂଲିଆମାନେ ବା 'ଗିରମିଟିଆ' କୁଲିମାନେ ସେଥିରେ ପଶି ପାରୁ ନ ଥିଲେ । କଂଗ୍ରେସ ସେତେବେଳ ଯାଏ ତାଙ୍କର ହୋଇ ନ ଥିଲା । କାରଣ, କଂଗ୍ରେସର ଚାନ୍ଦା ଦେଇ ସଭ୍ୟ ହେବା ପାଇଁ ତାଙ୍କର ଧନ ବଳ ନ ଥିଲା । ସେମାନଙ୍କ ସେବା କଲେ ଯାଇ କଂଗ୍ରେସ ସେମାନଙ୍କର ଅନୁରାଗ ଭାଜନ ହୋଇଥାନ୍ତା । ଏମିତ ଏକ ସୁଯୋଗ ହଠାତ୍ ଜୁଟିଯାଇଥିଲା । ସେଥିପାଇଁ ମୁଁ ବା କଂଗ୍ରେସ ପ୍ରସ୍ତୁତ ନ ଥିଲୁ । କଂଗ୍ରେସର ସେତେବେଳକୁ ଶିଶୁ ଅବସ୍ଥା, ମୁଁ ବି ମାତ୍ର ତିନି

ସୁବିଧା ହେବ ଉକଲତି କରୁଥାଏ କି ନାହିଁ, ହଠାତ୍ ଦିନେ ଏକ ମାନ୍ଦ୍ରାଜୀ ଲୋକ ଛିଣ୍ଡା ଲୁଗା ପିନ୍ଧି, ହାତରେ ପଗଡ଼ୀଟି ଧରି ଆସି ପହଞ୍ଚି ଗଲା । ତାର ସମ୍ମୁଖଦାନ୍ତ ଦୁଇଟି ଭାଙ୍ଗି ଯାଇଥାଏ, ରକ୍ତ ପାଟିରୁ ବୋହୁଥାଏ । ସେ କାନ୍ଦୁଥାଏ, ଥରୁଥାଏ । ମୋର କିରାଣି ଜଣେ ମାନ୍ଦ୍ରାଜୀ,—ତା'ଠାରୁ ସେ ଲୋକର କଥା ବୁଝିଲି । ସେ ଜଣେ ଗିରମିଟିଆ କୁଲି, ସେଠାକାର ଜଣେ ଖ୍ୟାତନାମା ଗୋରାଙ୍କ ପାଖରେ ଚାକିରି କରେ । ତା'ର ମାଲିକ ହଠାତ୍ ରାଗି ତାକୁ ମାରି ତାର ଦୁଇଟି ଦାନ୍ତ ଝଡ଼େଇ ଦେଇଥାନ୍ତି ।"

ଗାନ୍ଧୀ ତାକୁ ଡାକ୍ତରମାଇନା କରେଇଥିଲେ । ତା' ମାଲିକ ସଙ୍ଗେ ଦେଖା କରି କୌଣସି ମତେ ତାକୁ ହସ୍ତାନ୍ତର କରାଇ ଦେଇଥିଲେ । ଗିରମିଟିଆ କୁଲିଙ୍କ ଚୁକ୍ତି ସମୟ ନ ପୂରିବାପାଏ ତାଙ୍କର ନିସ୍ତାର ନ ଥିଲା । ଅତଏବ କେବଳ ଏ 'ହସ୍ତାନ୍ତର' ବାଟଟି ଥିଲା ଯହିଁରେ ସେ ମାଲିକଙ୍କଠାରୁ ରକ୍ଷା ପାଇ ପାରନ୍ତେ । ଏହି ଘଟଣାରୁ ଗାନ୍ଧୀ ଗିରମିଟିଆଙ୍କ ଭିତରେ ପଶି ପାରିଥିଲେ । ଗାନ୍ଧୀ ଲେଖିଛନ୍ତି "ଏ ଲୋକଟିର ମକଦମା କଥା ସବୁ ଗିରମିଟିଆଙ୍କ କାନରେ ବାଜି ଯାଇଥିଲା ଏବଂ ସେମାନେ ମତେ ତାଙ୍କର ବନ୍ଧୁ ବୋଲି ଭାବିଥିଲେ । ମୁଁ ଏ ସମ୍ପର୍କ ସ୍ଥାପନରେ ଭାରି ଖୁସୀ ହୋଇଥିଲି । ମୋ ଅଫିସକୁ ସେମାନଙ୍କର ସୁଅ ଛୁଟିଥିଲା ଏବଂ ତାଙ୍କର ସୁଖଦୁଃଖ ଜାଣିବାର ମତେ ସୁବର୍ଣ୍ଣ ସୁଯୋଗ ମିଳିଯାଇଥିଲା ।

"ସୁଦୂର ମାନ୍ଦ୍ରାଜ ପ୍ରଦେଶରେ ଏ ଖବର ଖେଳି ଯାଇଥିଲା । ଏଥିରେ ସେମିତି ନୂଆ କଥା କିଛି ନ ଥିଲା; କେବଳ ଏତିକି—ସେମାନେ ଯେତେବେଳେ ଜାଣିଲେ ନାଟାଲରେ ଜଣେ କିଏ ଅଛି ଯେ କି ତାଙ୍କ ପାଇଁ ଠିଆ ହୋଇଛି, ତାଙ୍କ ପାଇଁ ଖୋଲଖୋଲା

କାମ କରୁଛନ୍ତି, ସେତେବେଳେ ତାଙ୍କର ବନ୍ଧୁସ୍ୱ ସଙ୍ଗେ ଆନନ୍ଦ ହୋଇଥିଲା—ତାଙ୍କର ସାହସ ମଧ୍ୟ ବଢ଼ିଥିଲା ।”

କ୍ରମେ ଏ ସମ୍ପର୍କ ବଢ଼ିଥିଲା । ସେତିକି ବେଳକୁ ସେଠା ସରକାର ଏ କୁଲିଙ୍କ ଉପରେ ବର୍ଷକୁ ୩୭୫ ଟଙ୍କାର ଏକ ଟିକସ ବସାଇବା ପ୍ରସ୍ତାବ କଲେ । ପ୍ରଥମେ ଭଲ ଆଖୁ ଚାଷ ଓ ଶଣ ଉତ୍ପାଦ ପାଇଁ ଭାରତରୁ କୁଲି ସେଠାରେ ନେବା ପଡ଼ିଥିଲେ । ସେଠା ସରକାର ଭାରତ ସରକାରଙ୍କୁ ଧରି ପାଞ୍ଚବର୍ଷ ପାଇଁ କାମ କରିବେ ବୋଲି ଚୁକ୍ତି ଲେଖାଇ ନେଇ ଏ ଗିରମିଟିଆଙ୍କୁ ନେଇଥିଲେ । ପାଞ୍ଚବର୍ଷ ସରିଲେ ସେଠି ସେମାନେ ରହି ସ୍ୱାଧୀନ ଗୃହଧନ୍ଦା କରିବେ । କିନ୍ତୁ ଭାରତୀୟମାନେ ପରିଦୋପନ ଚାଷ କରିବାରେ ବାହାଦୁରୀ ଦେଖାଇଥିଲେ, ନାନାପ୍ରକାର ଭାରତୀୟ ପନିପରିବା କରି ଶସ୍ତାରେ ଯୋଗାଉଥିଲେ । ଆମ୍ବ ଚାଷ ଏହିମାନଙ୍କ ଦ୍ୱାରା ସେଠାରେ ଆରମ୍ଭ ହୋଇଥିଲା । ଏମାନେ ଏତିକିରେ ସନ୍ତୁଷ୍ଟ ରହି ନ ଥିଲେ । ଚାଷରୁ ବ୍ୟବସାୟ ବାଣିଜ୍ୟରେ ହାତ ପକାଉଥିଲେ । ଜମିବାଡ଼ୀ କିଣି ସେଠି ଘରଦ୍ୱାର କରି ବସ୍ତି ବାନ୍ଧିଥିଲେ । କଳାଙ୍କର ଏ ବ୍ୟବସାୟ ବୁଦ୍ଧି ଦେଖି ଗୋରା ବେପାରୀ ଚମକିଥିଲେ ଏବଂ ସେଠୁ ନାନା ଉପାୟରେ ଦକ୍ଷିଣ ଅଫ୍ରିକାରୁ ତାଙ୍କୁ ତଡ଼ିବାର ଫିକର ଆରମ୍ଭ କରିଥିଲେ ।

( ୫ )

ଏ ଟିକସ ବସାଇବା ଥିଲା ପହିଲ ଫିକର । ଯାହା ବିରୁଦ୍ଧରେ ସେଠା କଂଗ୍ରେସ ଜବରଦସ୍ତ ଆନ୍ଦୋଳନ ଚଳେଇଥିଲା । ସେତେବେଳେ ଭାରତସରକାରଙ୍କ ସୁପାରିଶ ମତେ ୩୭୫ ଟଙ୍କା ଟିକସକୁ ମୁଣ୍ଡ ପିଛା ୪୫ ଟଙ୍କା ରଖିଥିଲେ । କିନ୍ତୁ ସେଠା

ବାସିନ୍ଦାମାନେ ଏ ଆନ୍ଦୋଳନ ବନ୍ଦ ନ କରି ବରାବର ଲଢ଼ି-ପଡ଼ି ଲଢ଼ିଥିଲେ ଏବଂ କୋଡ଼ିଏ ବର୍ଷ ପରେ ୧୯୧୪ରେ ଏ ଟିକସ ଉଠିଯାଇଥିଲା । ଏହି ଲଢ଼େଇ ଗାନ୍ଧୀ ଚଳାଉଥିଲେ ଏବଂ ତାଙ୍କୁହିଁ ପହିଲେ 'ସତ୍ୟାଗ୍ରହ' ନାଁ ଦେଇଥିଲେ । ଶେଷରେ ଲୋକଙ୍କ ବିଶ୍ୱାସ, ଧୈର୍ଯ୍ୟ, ଉଦ୍ୟମ ଓ ଦୁଃଖକଷ୍ଟର ଜୟ ହୋଇଥିଲା । ଏ କୋଡ଼ିଏ ବର୍ଷର କାହାଣୀ ଏଠି ଠିକେ ଠିକେ ଦିଆଗଲା । ପୂରା ବିବରଣ 'ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ' ନାଁରେ ଏକ ବଡ଼ ବହିରେ ଗାନ୍ଧୀ ଲେଖିଛନ୍ତି । ଏ ଚୁକ୍ତି ମୂଲିଆଙ୍କ ପାଇଁ ଗାନ୍ଧୀ କ'ଣ କରିଥିଲେ ଏବଂ ସେମାନଙ୍କୁ କିପରି ମଣିଷ କରି ଠିଆ କରେଇ ଏ ଲଢ଼େଇ ଜିତେଇଥିଲେ ତାହାର ବର୍ଣ୍ଣନା କରାଯାଉଛି । ଚୁକ୍ତି ମୂଲିଆଙ୍କର ଦୁଃଖ କଷ୍ଟ ଦୂର କରିବା ପାଇଁ ଅହିଂସା ଓ ସତ୍ୟାଗ୍ରହ ଯେ ଏକମାତ୍ର ଅମୋଘ ଅସ୍ତ୍ର ତାହା ପ୍ରଥମେ ଏଠି ଜଣା ପଡ଼ିଥିଲା ।

୧୮୯୬ରେ ଗାନ୍ଧୀ ଛମାସ ପାଇଁ ଭାରତ ଆସିଥିଲେ । ତା' ଭିତରେ ବି ଗରିବ ହରିଜନଙ୍କ ପାଇଁ କିଛି କାମ କରି ଯାଇଥିଲେ । ସେତେବେଳେ ଭାରତରେ ପ୍ଲେଗ ରୋଗ ହେଉଥାଏ । ରାଜକୋଟରେ ଏ ମଡ଼କର ସମ୍ଭାବନା ଦେଖି ସେଠା ମ୍ୟୁନିସିପାଲିଟି ସଫାସୁତୁରାର ବ୍ୟବସ୍ଥା କରୁଥାଆନ୍ତି । ଗାନ୍ଧୀ ସେଠା ହରିଜନ ବସ୍ତିକୁ ଯାଇ ତାଙ୍କୁ ସଫାସୁତୁରା ରଖିବାର ଭାର ନେଇଥିଲେ । ହରିଜନ ବସ୍ତିକୁ ଯିବା ଓ ସେମାନଙ୍କର ସେବା କରିବା ତାଙ୍କର ଏହା ପ୍ରଥମ ଥିଲା ।

ଭାରତରୁ ଫେରିଲା ବେଳକୁ ପିଲାପିଲିଙ୍କୁ ସାଙ୍ଗରେ ନେଇ ଫେରିଲେ । ସେତିକିବେଳକୁ ଆଉ ସାତ ଆଠ ଶହ ଭାରତୀୟ ଦୁଇଟା ଜାହାଜରେ ଦକ୍ଷିଣ ଆଫ୍ରିକାକୁ ଆସୁଥିଲେ । ଏମାନେ ଅଧିକାଂଶ ଦକ୍ଷିଣ ଆଫ୍ରିକାର ପୁରୁଣା ଲୋକ, ଘରୁ ଫେରୁଥିଲେ । ଏଣେ ଗାନ୍ଧୀ ଭାରତରେ ଦକ୍ଷିଣ ଆଫ୍ରିକାରେ ଭାରତୀୟଙ୍କ ଦୁଃଖ

ସମ୍ବନ୍ଧରେ ଖୁବ୍ ପ୍ରଚୁର କରିଥାନ୍ତି । ସେଠା ଗୋରାମାନେ ଭାବିଲେ ଗାନ୍ଧୀ ଗୁଡ଼ାଏ ଭାରତୀୟ ପୁଣି ଆଣୁଛନ୍ତି, ଗୋରାଙ୍କୁ ହରକତ କରିବ । ଫଳରେ ଜାହାଜ ଦୁଇଟିକୁ ଘାଟରେ ଲଗିବା ପୂର୍ବରୁ ନାନା ରକମ ବାହାନାରେ କିଛି ଦିନ କୂଳରେ ଅଟକାଇ ଦେଇଥିଲେ ଓ ସେ ଲୋକଙ୍କୁ ଫେରିଯିବାକୁ ଧମକେଇଥିଲେ । ମାତ୍ର ଲୋକେ ଅଟଳ ରହିଥିଲେ, ଜାହାଜ ମାଲିକ ମଧ୍ୟ 'ଜଣେ ଭାରତବାସୀ—ନିଜର ବ୍ୟବସାୟର କ୍ଷତି କରି ଦମ୍ଭଧରି ବସିଥିଲେ । ବାଧ୍ୟ ହୋଇ ସରକାର ଜାହାଜ ଦୁଇଟିକୁ ଘାଟକୁ ଆସିବାକୁ ଦେଲେ ଏବଂ ସାଧାରଣ ଲୋକେ ବି ସୁରୁଖୁରୁରେ ଓହ୍ଲାଇ ଗଲେ । ମାତ୍ର ଗୋରାମାନେ ଜମାଏତ ବସ୍ତି ହୋଇ ଗାନ୍ଧୀଙ୍କୁ ମାରି ଦଣ୍ଡିଆ କରି ଦେଲେ । ପୁଲିସଙ୍କ ସାହାଯ୍ୟ ଯୋଗୁ ଗାନ୍ଧୀ ବଞ୍ଚି ଯାଇଥିଲେ । ବିଲାତ ସରକାର ଏଥିରେ ବିବ୍ରତ ହୋଇ ସେ ଗୋରାଙ୍କ ବିରୁଦ୍ଧରେ ମକଦ୍ଦମା କରିବାକୁ କହିଥିଲେ ମାତ୍ର ଗାନ୍ଧୀ ତାଙ୍କ ନୀତିକୁ ଧରି ମନା କରି ଦେଇଥିଲେ । ଫଳରେ ତାଙ୍କର ପ୍ରତିପତ୍ତି ବଢ଼ିଥିଲା ଏବଂ ଭାରତୀୟଙ୍କ ଇଜ୍ଜତ ଓ ସମ୍ଭ୍ରମ ପଣିଆ ମଧ୍ୟ ବଢ଼ିଥିଲା । ଏହା ୧୮୯୭ର କଥା, ଜାନୁଆରି ମାସ ତା ୧୩ ରିଖରେ ଗାନ୍ଧୀ ମାଡ଼ ଖାଇ ଜଖମ ହୋଇଥିଲେ ।

ଗାନ୍ଧୀ ଏଥର ସାଙ୍ଗରେ ନିଜର ଦୁଇ ପୁଅ ଓ ଗୋଟିଏ ଭଣଜାକୁ ଦକ୍ଷିଣ ଆଫ୍ରିକାକୁ ନେଇ ଆସିଥିଲେ । କିନ୍ତୁ ସେମାନଙ୍କୁ କେଉଁଠି ପଢ଼ାଇବେ ସେହି ଭାବନା ପଡ଼ିଯାଇଥିଲା । ଶେଷରେ ସେ ଠିକ୍ କରିଥିଲେ, ସାଧାରଣ ସ୍କୁଲ ପାଠଶାଳାରେ ନ ପଢ଼ାଇ ନିଜ ପାଖରେ ରଖି ଶିକ୍ଷା ଦେବେ । ସେ ଲେଖିଛନ୍ତି, "ଅନ୍ୟ ଭାରତୀୟ ଲୋକଙ୍କ ପିଲାମାନେ ଯେ ଶିକ୍ଷା ପାଇ ପାରୁ ନାହାନ୍ତି, ମୁଁ ଯଦି ନିଜର ଅସ୍ପୃଶ୍ୟ ଲାଭ କରେଇ ସେହି ଭଲ ଶିକ୍ଷା ମୋ ପିଲାଙ୍କୁ ଦେଇଥାନ୍ତି,

ମୁଁ ସେ ପିଲାଙ୍କୁ ସେଭଳି ଆତ୍ମସମ୍ମାନ ଓ ସ୍ୱାଧୀନତାର ପଦାର୍ଥପାଠ ଦେଇ ପାରି ନ ଥାନ୍ତି ।" ସେ ସେମାନଙ୍କୁ ଗୁଡ଼ାଏ ପୋଥି ପାଠ ନ ପଢ଼େଇଲେ କ'ଣ ହେବ—ତାହା ବଦଳରେ ବାପମା'ଙ୍କର ଅଗ୍ରହ ବ୍ୟବହାରରୁ ସ୍ୱାଧୀନତା ଓ ଆତ୍ମସମ୍ମାନର ଜ୍ଞାନ ଭଲ ରକମ ପାଉଥିଲେ । ଅନ୍ୟ ହଜାର ହଜାର ଗରିବ ଗୃହୀ ମୂଲିଆଙ୍କର ପିଲାଏ ଯେଉଁ ଶିକ୍ଷା ପାଇ ପାରୁ ନ ଥିଲେ ସେ ଶିକ୍ଷା ଆପଣା ପିଲାଙ୍କୁ ଦେବାକୁ ଗାନ୍ଧୀଙ୍କ ମନ ଯାଇ ନ ଥିଲା ।

( ୭ )

ଏହି ସମୟରେ ଗାନ୍ଧୀଙ୍କ ମନରେ ସେବା ଭାବ ଅଧିକ ପ୍ରବଳ ହୋଇଥିଲା । ଗୋଟିଏ ଘଟଣା ସେ ନିଜେ ବର୍ଣ୍ଣନା କରିଛନ୍ତି, "ଦିନେ ଜଣେ କୁଷ୍ଠରୋଗୀ ମୋ ଘରେ ଆସି ପହୁଞ୍ଚିଥିଲା । ଖାଲି ମୁଠିଏ ଖାଇବାକୁ ଦେଇ ବିଦାୟ କରି ଦେଇ ପାରି ନ ଥିଲି । ମୁଁ ତାକୁ ମୋ ଘରେ ଆଶ୍ରୟ ଦେଇଥିଲି, ତାହାର ଘା ସବୁ ଧୋଇ ସଫା କରିଥିଲି । କିନ୍ତୁ ଏମିତି କେତେ ଦିନ ଚଳି ପାରନ୍ତା ? ମୋର ସେ ସମ୍ବଳ ନ ଥିଲା । ସବୁଦିନେ ମୋ ସଙ୍ଗେ ତାକୁ ରଖିବା ଭଳି ମନ ବି ମୋର ନ ଥିଲା । ତାକୁ ମୁଁ ଗିରମିଟିଆ କୁଲିଙ୍କର ସରକାରି ଡାକ୍ତରଖାନାକୁ ପଠାଇ ଦେଇଥିଲି ।"

ଏତିକିବେଳେ ଗାନ୍ଧୀ ଗୋଟିଏ ଡାକ୍ତରଖାନାରେ ଔଷଧ ଦେବା କାମ ଶିଖିଥିଲେ । ପ୍ରତ୍ୟହ ସକାଳୁ ଦୁଇ ଘଣ୍ଟା ସେଠାରେ କଟେଉଥିଲେ । ସେଠାରେ ରୋଗୀଙ୍କୁ ପରୀକ୍ଷା କରି, ତାଙ୍କର ରୋଗର ହାଲ ଡାକ୍ତରଙ୍କୁ ଶୁଣାଇ, ଡାକ୍ତରଙ୍କ ବିଚାର ମତେ ଔଷଧ ତିଆରି କରି ଦେଉଥିଲେ । ଏହା ଫଳରେ ଅନେକ ଭାରତୀୟଙ୍କ ସଙ୍ଗେ ତାଙ୍କର ପରିଚୟ ବଢ଼ିଥିଲା ଏବଂ ବିଶେଷ କରି ତାମିଲ, ତେଲୁଗୁ ଓ

ଉତ୍ତର ଭାରତର ଗିରମିଟିଆମାନଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ସମ୍ପର୍କ ହୋଇଥିଲା ।

୧୮୯୯ରେ ବୁଅର ଯୁଦ୍ଧ ଲାଗିଥିଲା । ବୁଅରମାନେ ଇଂରେଜଙ୍କ ବିରୁଦ୍ଧରେ ଲଢୁଥିଲେ । ସେତେବେଳେ ବ୍ରିଟିଶ ସାମ୍ରାଜ୍ୟ ଉପରେ ଗାନ୍ଧୀଙ୍କର ବିଶ୍ୱାସ ଥିଲା—ବ୍ରିଟିଶ ସାମ୍ରାଜ୍ୟ ଭିତରେ ରହି ଭାରତବର୍ଷ ପୂର୍ଣ୍ଣ ମୁକ୍ତି ପାଇ ପାରିବ, ଏ ଧାରଣାରେ ଗାନ୍ଧୀ କାମ କରୁଥାନ୍ତି । ଏ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ସେ ଏକ ଦଳ ସ୍ୱେଚ୍ଛାସେବକ ସଂଗ୍ରହ କରିଥିଲେ । ସେମାନେ ଯୁଦ୍ଧରେ ଆହତ ଲୋକଙ୍କୁ ରଣଭୂଇଁରୁ ଉଠାଇ ଆଣି ଡାକ୍ତରଖାନାରେ ପକେଇବେ ଓ ଆଣିବା ପୂର୍ବରୁ ଦରକାରୀ ପ୍ରାଥମିକ ସାହାଯ୍ୟର ବ୍ୟବସ୍ଥା କରାଇବେ—ଏୟା ଥିଲା ସେମାନଙ୍କର କାମ । ପହିଲେ ପହିଲେ ଗୁଳିଗୋଳା ପଡ଼ିବା ସୀମା ବାହାରୁ ଆହତମାନଙ୍କୁ ଉଠାଇ ଆଣୁଥିଲେ । ପରେ ସରକାରଙ୍କ ଅନୁମତି ପାଇ ସେମାନେ ଏକଦମ ଯୁଦ୍ଧକ୍ଷେତ୍ରରୁ ଘାଇଲଙ୍କୁ ଉଠାଇ ଆଣୁଥିଲେ । ଏଥିରେ ଏଗାର ଶହ ଯାଏ ଭାରତୀୟ ଥିଲେ । ଯାଙ୍କ ଭିତରେ ତିନି ଶହ ଯାଏ ମୁକ୍ତଭାରତୀୟ ଥିଲେ ବାକି ଆଠଶହ ସବୁ 'ଗିରମିଟିଆ' । ଏହା ଫଳରେ ସେଠା ଭାରତୀୟ ସମାଜ ଅଧିକ ସଂଗଠିତ ଓ ସୁଦୃଢ଼ ହୋଇଥିଲା । ସବୁ ପ୍ରଦେଶର, ସବୁ ଜାତିର ଓ ସବୁ ଧର୍ମର ଲୋକେ ଏକାଠି ରହି କାମ କରୁଥିବାରୁ, ସମସ୍ତଙ୍କ ମନରେ 'ଏକ ଭାରତମାତାର ସନ୍ତାନ' ଏ ଭାବ ଜମି ଯାଇଥିଲା । ଦକ୍ଷିଣ ଆଫ୍ରିକା ଗୋରାଙ୍କ ସଙ୍ଗେ ମଧ୍ୟ ଅଧିକ ମଧୁର ସମ୍ବନ୍ଧ ହୋଇଥିଲା—ସେମାନେ ବି ଭାରତୀୟଙ୍କୁ ଅଧିକ ସମ୍ମାନର ସହିତ ଦେଖିବାକୁ ଲାଗିଥିଲେ ।

ଗାନ୍ଧୀ ଏହି ଯୁଦ୍ଧବେଳେ ନୂଆ ଚିନ୍ତା କରିବାର ସୁଯୋଗ ପାଇଥିଲେ । ସେ ନିଜ ଜୀବନରେ ଯେ ସବୁ ବଡ଼ ବଡ଼ ସଂକଳ୍ପ କରିଛନ୍ତି, ତହିଁରୁ ଅନେକର ସୂତ୍ରପାତ ଏତିକିବେଳେ ହୋଇଥିଲା ।

ଏ ସବୁର ସବିଶେଷ ହାଲ ତାଙ୍କର 'ଆତ୍ମକଥା' ଓ 'ଦକ୍ଷିଣ ଅଫ୍ରିକା ସତ୍ୟାଗ୍ରହ' ଏ ଦୁଇ ବହିରୁ ମିଳିବ । ଦେଶସେବକର ବ୍ରହ୍ମଚର୍ଯ୍ୟ ପାଳିବା ଆବଶ୍ୟକ, ଏକଥା ସେ ସେହିଠାରେ ଉପଲବ୍ଧି କରିବା ଆରମ୍ଭ କରିଥିଲେ । ଆଉ ଗୋଟିଏ ବଡ଼ ଶିକ୍ଷା ତାଙ୍କୁ ସେଠି ମିଳିଥିଲା । ସେ ବୁଝି ପାରିଥିଲେ ଯେ "କୌଣସି ମଣିଷକୁ ତୁଚ୍ଛ ମଣିବା ଉଚିତ ନୁହଁ ଏବଂ ସବୁଠାରୁ ତଳୁଆ ଲୋକ ବି ବଡ଼ ସାହସୀ ବୀର ପାଲଟି ଯାଇପାରେ ।" ଏହି ବିଶ୍ୱାସରେ ସେ ଗୃଷୀ ମୂଲିଆଙ୍କ ସବୁ ଲଢ଼େଇ ଚଳେଇ ଆସିଛନ୍ତି ।

'ଦକ୍ଷିଣ ଅଫ୍ରିକା ସତ୍ୟାଗ୍ରହ' ବହିରେ ସେ ଏହି ବୁଅର ଯୁଦ୍ଧର ଜଣେ ପ୍ରଭୁସିଂହଙ୍କ କଥା ବର୍ଣ୍ଣନା କରିଛନ୍ତି । ଲେଡ଼ିସ୍ମିଥ ନାମକ ସହରକୁ ବୁଅରମାନେ ଘେରି ଯାଇଥାନ୍ତି । ସହରର ବାହାରୁ ଏକ ଉଚ୍ଚା ଜାଗାରୁ ବୁଅରମାନଙ୍କର ଗୋଟାଏ ତୋପ୍‌କମାଣ ସହରର ଭିତରକୁ ଗୋଳା ପକେଇ ବହୁତ କ୍ଷତି କରୁଥାଏ । ପ୍ରଭୁସିଂହ ସେହି ସହରରେ ଜଣେ ଗିର୍ମିଟିଆ ଥିଲା । ତାକୁ କୁହା ହୋଇଥିଲା ଗୋଟିଏ ଗଛତଳେ ବସି କମାଣକୁ ଅନେଇଥିବ ଏବଂ କମାଣ ଦାଗିବା ଆଗରୁ ନିଆଁ ହୁଲା କମାଣ ମୁହଁରେ ଦେଖିଲେ ଘଣ୍ଟା ବାଡ଼େଇବ । ସେହି ଘଣ୍ଟା ଶୁଣି ସହରର ଲୋକେ ଲୁଚିଯିବେ । ପ୍ରଭୁସିଂହ ବି ସେତେବେଳେ ଗଛତଳେ ଯେତେଇ ତଳରହେ । ସେ ଆପଣା ଜୀବନ ତୁଚ୍ଛ ଏ କାମକୁ ଭଲ ହୁକୁମ କରିଥିଲା । ଫଳରେ ଦକ୍ଷିଣ ଅଫ୍ରିକାରେ ତାହାର ଜୟ ଜୟକାର ପଡ଼ିଥିଲା, ଭାରତର ବଡ଼ଲାଟ ଲର୍ଡ଼କର୍ଜନ ମଧ୍ୟ ତା ପାଇଁ ଗୋଟିଏ କାଶ୍ମୀରି ଶାଲ ପଠାଇ ଖୁବ୍ ସମାରୋହରେ ତାକୁ ଦେବାପାଇଁ ସେଠା ସରକାରଙ୍କୁ ଲେଖିଥିଲେ । ଏହି ଭଳି ଘଟଣାରୁ ଗାନ୍ଧୀଙ୍କର ବିଶ୍ୱାସ ବଢ଼ିଥିଲା ଯେ ମନର ବଳ ବଢ଼େଇବା ସମସ୍ତଙ୍କ ହାତରେ ସମ୍ଭବ ଅଟେ ।

( ୬ )

ଗାନ୍ଧୀ ତ ମାସେ ରହିବେ ବୋଲି ଛ ବରଷ ଦକ୍ଷିଣ ଆଫ୍ରିକାରେ ରହିଗଲେ । ବୁଅର ଯୁଦ୍ଧ ପରେ ଦକ୍ଷିଣ ଆଫ୍ରିକାରେ ତାଙ୍କ କାମ ସରିଗଲା ଓ ସେ ଭାରତକୁ ଫେରିଯିବେ ବୋଲି ବିଚାରିଥିଲେ । ସେତେବେଳକୁ ତାଙ୍କର ଜୀବନର ଲକ୍ଷ୍ୟ ବଦଳି ଯାଇଥିଲା । ସେ ଲେଖିଛନ୍ତି, "ସ୍ୱାର୍ଥ ବଦଳରେ ସେବାଧର୍ମର ଶିକ୍ଷା ଦକ୍ଷିଣ ଆଫ୍ରିକାରେ ପାଇ ସାରିଥିଲି । ସେତେବେଳେ ମୋର ସେହି କଥାରେ ମନଧ୍ୟାନ ଲାଗି ଯାଇଥିଲା ।" ଦକ୍ଷିଣ ଆଫ୍ରିକାରେ କାମ ଚଳାଇବା ପାଇଁ ଯୋଗ୍ୟ ଲୋକ ବି ମିଳି ଯାଇଥିଲେ । ସେଠା ଭାରତୀୟ ଭାଇମାନଙ୍କର ଅନୁମତି ନେଇ ଭାରତକୁ ଫେରିଯିବା ଠିକ କରିଥିଲେ । ତେବେ ସର୍ତ୍ତ ଏଯା ହୋଇଥିଲା ଦରକାର ପଡ଼ିଲେ ପୁଣି ସେ ସଙ୍ଗେ ସଙ୍ଗେ ଦକ୍ଷିଣ ଆଫ୍ରିକା ଆସିବେ ।

୧୯୦୧ ଶେଷକୁ ସେ ଭାରତକୁ ଲେଉଟିଥିଲେ । ୧୯୦୨ରେ ସେ ବମ୍ବେଠାରେ ବାରିଷ୍ଟରୀ ଆରମ୍ଭ କରିଥିଲେ । ଘର ଖଣ୍ଡେ ଭଡ଼ା ନେଇ ବସିଛନ୍ତି କି ନାହିଁ ପୁଣି ଦକ୍ଷିଣ ଆଫ୍ରିକାରୁ ତାର ଆସିଲା ଏବଂ ସେ ସଙ୍ଗେ ସଙ୍ଗେ ସେଠାକୁ ଯାଇଥିଲେ । ସେଠାରେ ପହଞ୍ଚି ଅବସ୍ଥା ଅଧିକ ଖରାପ ଦେଖିଥିଲେ । ଏଥର ଜୋହାନ୍ସବର୍ଗ ନୂଆ କରି ବୁଅରଙ୍କ ହାତରୁ ଇଂରେଜଙ୍କ ହାତକୁ ଆସିଥିବାରୁ କଳାଙ୍କ ବିରୁଦ୍ଧରେ ସବୁ ହିଂସ୍ୟାର ଯାକ ଧସା ମଙ୍ଗା ହୋଉଥାଏ ଏବଂ ନୂଆ ନୂଆ ଆଇନ କରି ନୂଆ ଅସ୍ତ୍ର ବି ଖଞ୍ଜା ହେଉଥାଏ । ଫଳରେ ଗାନ୍ଧୀ ସେହିଠାରେ ରହି ବାରିଷ୍ଟରୀ କରିବା ସ୍ଥିର କଲେ । ସେଠାରେ ଏକ ନୂଆ ସରକାରୀ ଘଡ଼ି ବିଭାଗ ଖୋଲି, ଘଡ଼ି ନ ପାଇଲେ ସେଠାକୁ ଯାଇ ପାରିବେ ନାହିଁ ଏହି ବାହାନାରେ ଭାରତୀୟଙ୍କ ଉପରେ ବଡ଼ ଜୁଲୁମ ଚାଲିଥାଏ । ସେ ହାକିମ ପଂଚାଳ ଟୁଟ୍ ଘୁସ

ନେଉଥାନ୍ତି । ତାଙ୍କର ଜୁଲୁମ ବନ୍ଦ କରିବାକୁ ଗାନ୍ଧୀ ଲଢ଼ିଉଥିଲେ । ଜଣେ ଦୁ'ଜଣ ହାକିମଙ୍କୁ ଧରେଇ ଦେଇଥିଲେ । ସେମାନେ ପଳେଇଥିଲେ ବା ଦଣ୍ଡ ପାଇଥିଲେ ।

ଦକ୍ଷିଣ ଆଫ୍ରିକାରେ ଭାରତବାସୀମାନେ 'କୁଲି' ନାଁ ପାଇଥାନ୍ତି । ତାଙ୍କୁ ସହର ବାହାରେ ଜାଗା ମିଳେ, ସେଇଠି ବସ୍ତି ବାନ୍ଧନ୍ତି । ଅତି ମଇଳା ଅପରିଷ୍କାର ଭାବରେ ଥାନ୍ତି । ବସ୍ତି ଜାଗାକୁ ଅନେଇଲେ ଲୋକ ବହୁତ ବେଶୀ—ଗୁନ୍ଦାଗୁନ୍ଦି ହୋଇ ରହୁଥାନ୍ତି । ମ୍ୟୁନିସିପାଲିଟୀ ବି ଯତ୍ନ ନିଏ ନାହିଁ । ଏତିକି ବେଳେ ଜୋହାନ୍ସବର୍ଗ ମ୍ୟୁନିସିପାଲିଟୀ ସେଠା କୁଲିବସ୍ତିକୁ ଉଠାଇ ଦେଇ ସେ ଜାଗାକୁ ନିଜ ଦଖଲକୁ ନେବା ଉଦ୍ୟମ କଲେ । ସେଥିପାଇଁ ଆଇନ ତିଆରି ହୋଇଥାଏ; କ୍ଷତିପୂରଣ ଦେଇ ଜମି ସ୍ୱତ୍ୱ କିଣି ନେଇ ପାରିବେ । ମକଦ୍ଦମା ଲଢ଼ିଲେ କ୍ଷତି ପୂରଣ ବଢ଼ିବାର ସମ୍ଭାବନା ଥାଏ । ବଢ଼ି ବି ଯାଉଥାଏ । ଗାନ୍ଧୀ ଏକପ୍ରକାର ବିନା ପଇସାରେ ମକଦ୍ଦମା ଲଢ଼ି ଶହ ଶହ ଭାରତୀୟଙ୍କୁ ସାହାଯ୍ୟ କରିଥିଲେ; ଡିଗ୍ରୀ ହେଲେ ଓକିଲ ଖର୍ଚ୍ଚା ଯେତିକି ମିଳେ ସେତିକି ନେଉଥାନ୍ତି । ଏମିତି ଯେତେକ ଟଙ୍କା ପାଇଲେ, ତାକୁ ବି ନିଜ ଖର୍ଚ୍ଚରେ ନ ଲଗେଇ, ସବୁ ଦେଶ କାମରେ ଦେଉଥାନ୍ତି । ସେତେବେଳକୁ ଖଣ୍ଡେ ଖବର କାଗଜ ଚଳାଉଥାନ୍ତି; ସେଥିରେ ବହୁତ ଖର୍ଚ୍ଚ ହେଉଥାଏ ।

ଗାନ୍ଧୀଙ୍କୁ ସେଠାରେ ସମସ୍ତେ 'ଭାଇ' ବୋଲି ଡାକୁଥିଲେ ଏବଂ ଦକ୍ଷିଣ ଆଫ୍ରିକାରେ ଶେଷ ଯାଏ ସେହି ଭାଇ ଡାକ ରହିଥିଲା । ମହାତ୍ମା ପଦ ପରେ ଭାରତରେ ମିଳିଥିଲା ।

ଦୁର୍ଭାଗ୍ୟକୁ ହଠାତ୍ କୁଲିବସ୍ତିରେ ପ୍ଲେଗ ମଡ଼କ ଆରମ୍ଭ ହେଲା । ଏ ରୋଗ ତ ଭୟଙ୍କର; ଯାହାକୁ ଧରେ ପ୍ରାୟ ମରନ୍ତି ପୁଣି ହୁ ହୁ କରି ମାଡ଼ି ବସ୍ତିକୁ ବସ୍ତି ସଫା କରିଦିଏ । ଏ ରୋଗୀଙ୍କ

ସେବା କରିବାକୁ ଡରରେ କେହି ବାହାରନ୍ତି ନାହିଁ । ଗାନ୍ଧୀ ନିଜ ଜୀବନକୁ ପାଣି ଛଡ଼େଇ ବାହାରି ପଡ଼ିଥିଲେ । କେତେକ ଯୁବକ ସହକର୍ମୀ ଜୁଟି ଯାଇଥିଲେ । ଖୁବ୍ ସେବା ଶୁଶ୍ରୂଷା କରି କେତେକ ପ୍ରାଣ ବଞ୍ଚେଇଥିଲେ; ମଡ଼କଟାକୁ ମାଡ଼ିଯିବାକୁ ମଧ୍ୟ ଦେଇ ନ ଥିଲେ । କାଳେ ମାଡ଼ିଯିବ ସେଥିପାଇଁ କୁଲି ବସ୍ତିରୁ ଲୋକଙ୍କୁ ନେଇ ଏକ ପଡ଼ିଆରେ ତମ୍ବୁ ପକେଇ ରଖିଥିଲେ ଏବଂ ପୁରୁଣା ବସ୍ତିକୁ ନିଆଁ ଲଗେଇ ଦେଇଥିଲେ । ଗରିବ ମୂଲିଆ ଲୋକେ ଆପଣା ଆପଣା ଜିନିଷପତ୍ର ସିନା ତମ୍ବୁକୁ ବୋହି ନେଇଗଲେ କିନ୍ତୁ ଟଙ୍କା ପଇସା ଯାହା ଜମା କରିଥିଲେ ସେ ସବୁ ସାଙ୍ଗରେ ନେଇ ପଦାରେ କେଉଁଠି ରଖିବେ ? ଗାନ୍ଧୀ ତାଙ୍କୁ ବ୍ୟାଙ୍କରେ ଟଙ୍କା ରଖିବାକୁ ବୁଝାଇ ରାଜି କରେଇଥିଲେ । ମାତ୍ର ସେ ଟଙ୍କା ପଇସା ନେବାକୁ ବ୍ୟାଙ୍କବାଲା ମନାକଲେ, କାରଣ ପ୍ଲେଗ ଲାଗିଥିବା ଅଂଚଳର ଟଙ୍କା ପଇସାରେ ପ୍ଲେଗ ବୀଜ ଥିବାର ସମ୍ଭାବନା ଥାଏ । ଟଙ୍କା ପଇସାକୁ ଗାନ୍ଧୀ ସଫା ସୁତୁରା କରାଇ ରଖାଇଥିଲେ ।

( ୮ )

ଥରେ ରେଲରେ ଗାନ୍ଧୀଙ୍କ ହାତରେ ଇଂରେଜ ପଣ୍ଡିତ ରସ୍କିନ୍‌ଙ୍କର ବହି ଖଣ୍ଡେ ପଡ଼ି ଯାଇଥିଲା । ବହି ଖଣ୍ଡି ଥିଲା 'ଅନ୍ ଟୁ ଦିସ୍ ଲାଷ୍ଟ' । ଗାନ୍ଧୀ ତାକୁ ରେଲ ଯାତ୍ରାରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ପଢ଼ି ପକେଇଥିଲେ । ବହିଟି ତାଙ୍କ ମନକୁ ପାଇଯାଇଥିଲା । ଗାନ୍ଧୀ ଯାହା ଭଲ କଥା ପଢ଼ନ୍ତି ତାକୁ ସାଙ୍ଗେ ସାଙ୍ଗେ କାମରେ ଲଗାନ୍ତି । ସେହି ବହିରେ ଯେତକ ସିଦ୍ଧାନ୍ତ ଥିଲା ତାକୁ ଆପଣା ଜୀବନରେ ଲଗେଇବାକୁ ଠିକ କରିଥିଲେ । ସେ ସମ୍ବନ୍ଧରେ ସେ ନିଜେ ଲେଖିଛନ୍ତି "ମୁଁ ଯେତେ ବହି ପଢ଼ିଛି ତା' ଭିତରୁ ଏହି ଖଣ୍ଡି

ମୋ ଜୀବନରେ ଏକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆଣି ଦେଇଥିଲା । ମୁଁ ପରେ ତା'ର ଗୁଜରାଟୀ ତରଜମା କରି 'ସର୍ବୋଦୟ' ନାଁ ଦେଇଥିଲି । ମୋର ମନେ ହୁଏ ମୁଁ ରସ୍କିନଙ୍କର ଏହି ଗ୍ରନ୍ଥରତ୍ନରେ ମୋର ଅନ୍ତ ଭିତରର କେତେକ ବିଷୟର ପ୍ରତିବିମ୍ବ ଦେଖି ପାରିଥିଲି ଏବଂ ସେଥିପାଇଁ ବହି ଖଣ୍ଡି ମୋ ମନକୁ ଦଖଲ କରି ବସିଥିଲା ଓ ମୋର ଜୀବନକୁ ବଦଳେଇ ଦେଇଥିଲା ।

ସେ ବହିରୁ ତିନୋଟି ଶିକ୍ଷା ପାଇଥିଲି— (୧) ସମସ୍ତଙ୍କ ମଙ୍ଗଳରେ ଆପଣାର ମଙ୍ଗଳ ରହିଛି, (୨) ଓକିଲ ବା ବାରିକ, ଉଭୟଙ୍କ କାମର ମୂଲ୍ୟ ସମାନ ହେବା ଉଚିତ କାରଣ ଜୀବନ ନିର୍ବାହ କରିବାର ଅଧିକାର ଉଭୟଙ୍କର ସମାନ ଅଛି । (୩) ସାଧାରଣ ମୂଲିଆର ଅର୍ଥାତ୍ ଚାଷୀର ଜୀବନ ଯଥାର୍ଥ ସଚ୍ଚା ଜୀବନ । ପ୍ରଥମଟି ମତେ ଜଣା ଥିଲା । ଦ୍ୱିତୀୟଟିର ଝିକିଏ ଝିକିଏ ଆଭାସ ମନକୁ ଆସି ସାରିଥିଲା । ତୃତୀୟଟିର ବିଷୟ ମୋ ମନକୁ ଆଗରୁ ଆସି ନ ଥିଲା । ·········ଭୋରରୁ ଏଗୁଡ଼ିକୁ କାର୍ଯ୍ୟରେ ଲଗାଇବାକୁ ପ୍ରସ୍ତୁତ ହୋଇ ବାହାରି ପଡ଼ିଥିଲି ।"

ଏ ଚିନ୍ତା ମୁଣ୍ଡରେ ପଶିବା ସଙ୍ଗେ ସଙ୍ଗେ, ଆପଣାର କେତେକ ସାଥୀଙ୍କୁ ବୁଝାଇ ଏ କାମରେ ସାଙ୍ଗରେ ନେଇଥିଲେ । କେତେକ ଜମିନେଇ ଏକ ଆଶ୍ରମ ବସେଇଥିଲେ । ତା' ନାଁ ଦେଇଥିଲେ 'ଫିନିକ୍ସ ବସ୍ତି' । ସେଠାରେ ସମସ୍ତେ ଚାଷ କରି ଚଳିବେ ଓ ଖବର କାଗଜଟି ମଧ୍ୟ ସେଠୁ ବାହାରିବ; ଏୟା ଠିକ କରିଥିଲେ । ଗାନ୍ଧୀ ଓକିଲାତି ଏକପ୍ରକାର ଛାଡ଼ି ଦେଇ, ନିଜ ବସା ଭାଙ୍ଗି ସେ ଆଶ୍ରମରେ ଯାଇଁ ରହିଥିଲେ ।

ଏହି ସମୟରେ ଜୁଲୁ ବିଦ୍ରୋହ ହୋଇଥିଲା । ଗାନ୍ଧୀ ପୁଣି ଦଳେ ଲୋକ ନେଇ ଆହତଙ୍କ ଶୁଶ୍ରୂଷା କରିବା ପାଇଁ ବାହାରି

ପଡ଼ିଥିଲେ । ଏହି ଯୁଦ୍ଧରୁ ଫେରିଆସି ୧୯୦୬ ସାଲରେ ଗାନ୍ଧୀ ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କରିଥିଲେ ।

୯

୧୯୦୮ରେ ପ୍ରଥମେ "ସତ୍ୟାଗ୍ରହ" ଶବ୍ଦଟି ବାହାରିଥିଲା । ଭାରତବାସୀମାନେ ଆପଣାର ଅଧିକାର ରକ୍ଷା କରିବାକୁ ଦକ୍ଷିଣ ଆଫ୍ରିକାରେ ଯେ ଶାନ୍ତିପୂର୍ଣ୍ଣ ଲଢ଼େଇ ଆରମ୍ଭ କରିଥିଲେ ଦେଶୀ ଭାଷାରେ ତାର କୌଣସି ନାମ ନ ଥିଲା । ସେଥିପାଇଁ ଯେଉଁ ଇଂରାଜୀ ନାଆଁ ବ୍ୟବହାର ହେଉଥାଏ ସେଥିରୁ ଏହି ସତ୍ୟ ଅହିଂସା ଲଢ଼େଇର ଠିକ ଠିକ୍ ଅର୍ଥ ବାହାରୁ ନ ଥିଲା ତେଣୁ ମହାତ୍ମା ଗାନ୍ଧୀ ଏ ସତ୍ୟାଗ୍ରହ ଶବ୍ଦଟି ଗଢ଼ିଥିଲେ ।

ସେତକି ବେଳକୁ ଦକ୍ଷିଣ ଆଫ୍ରିକା ସରକାର କଳା ଲୋକଙ୍କ ପାଇଁ ପୁଣି ଏକ ନୂଆ ଆଇନ ଜାରି କଲେ । ସେଥିରେ ପ୍ରତ୍ୟେକ ଭାରତବାସୀଙ୍କୁ ଖଣ୍ଡେ ଲେଖା ଛାଡ଼ ନେଇ ତାକୁ ସବୁବେଳେ ପାଖରେ ରଖିବାକୁ ପଡ଼ିଲା । ବାଟରେ ଘାଟରେ, କଚେରୀରେ, ବଜାରରେ ଯେଉଁଠି ଯେତେବେଳେ କୌଣସି ସରକାରୀ କର୍ମଚାରୀ ମାଗିଲେ ଛାଡ଼ ଦେଖାଇବାକୁ ପଡ଼ୁଥିଲା ।

ମାତ୍ର ଉପରକୁ ଅପମାନ ଭଳି ପରୱାନାରେ ପାଞ୍ଚଆଙ୍ଗୁଳିର ଟିପଚିହ୍ନ ଦେବାକୁ ପଡ଼ୁଥିଲା । ଏ ଟିପଚିହ୍ନ ଦେବା କଥାଟାକୁ ଗାନ୍ଧୀ ଭାରି ନାପସନ୍ଦ କରୁଥିଲେ । କଥାଟା ପୁଲିସ ଥାନାରେ ଚୋରଙ୍କ ଟିପଚିହ୍ନ ରଖିଲାଭଳି ଖରାପ ଲାଗିଥିଲା । ଏଥିରେ ଆନ୍ଦୋଳନ ତେଜି ଉଠିଥିଲା । ଗୋଟିଏ ବଡ଼ ସଭାରେ ଲୋକେ ପ୍ରତିଜ୍ଞାକଲେ ଯେ ସେ ଆଇନକୁ ମାନିବେ ନାହିଁ । ସେହି ସଭାରେ ଗାନ୍ଧୀ ପ୍ରତିଜ୍ଞାର ମର୍ମ ବୁଝାଇ ବୁଝାଇ ସତ୍ୟାଗ୍ରହର ଅର୍ଥ ମଧ୍ୟ ବୁଝାଇଥିଲେ । "ଏକୁଟିଆ

ପଡ଼ିଗଲାବେଳେ ଯଦି ପ୍ରତିଜ୍ଞାରେ ଅଟଳ ରହିବାର ସାହସ ଓ ଶକ୍ତି ନ ଥାଏ ତେବେ ପ୍ରତିଜ୍ଞା ନିଅନ୍ତୁ ନାହିଁ ।" ଗାନ୍ଧୀ କହିଲେ ଯେ ସତ୍ୟାଗ୍ରହରେ ଶତ୍ରୁଭାବର ସ୍ଥାନ ନାହିଁ ଏବଂ ମନରେ ଶତ୍ରୁଭାବ ରଖିବା ଅଧର୍ମ ଅଟେ; ସୁବିଧା ମିଳିଲେ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବା କିମ୍ବା ଶେଷରେ ଅସ୍ତ୍ରଶସ୍ତ୍ରର ଆଶ୍ରୟ ନେବା ଏ ଦୁଇଟି ଯାକ କଥା ସତ୍ୟାଗ୍ରହର ବିରୁଦ୍ଧ ।

"ସତ୍ୟାଗ୍ରହ ଅସ୍ତ୍ରଶସ୍ତ୍ରର ଦୃଢ଼ ବିରୋଧୀ; ସତ୍ୟାଗ୍ରହ ସଙ୍ଗେ ସେ ସବୁ ମିଳିମିଶି ଚାଲିପାରିବେ ନାହିଁ ।"

ସତ୍ୟାଗ୍ରହ ଚଳାଇବା ପାଇଁ ଏକ ସ୍ୱତନ୍ତ୍ର ସତ୍ୟାଗ୍ରହ ମଣ୍ଡଳ ଗଢ଼ା ହୋଇଥିଲା । ପ୍ରଥମେ ବିଲାତ ଯାଇ ବିଲାତ ସରକାରଙ୍କ ଆଗରେ ସବୁକଥା ପେଶ୍ କରାହୋଇଥିଲା । ବିଲାତ ସରକାର ମଧ୍ୟ ସେ ଭଳି ଆଇନ କରିବାକୁ ଅନୁମତି ଦେଇ ନ ଥିଲେ । କିନ୍ତୁ ସେଥିରେ ବି ଏକ ପେଞ୍ଚ ଥିଲା । ସେତିକି ବେଳକୁ ଦକ୍ଷିଣ ଆଫ୍ରିକାର ଏସବୁ ପ୍ରଦେଶଙ୍କୁ ବିଲାତ ସରକାର ସ୍ୱାଧୀନ କରିଦେବାର ପ୍ରସ୍ତାବ କରିଥାନ୍ତି । ବିଲାତ ସରକାର ଟିପଚିହ୍ନ ଆଇନରେ ମଞ୍ଜୁର ନ କରି ନିଜ ମୁଣ୍ଡରୁ ଦୋଷ ଛଡ଼େଇ ଦେଇଥିଲେ । ଦକ୍ଷିଣ ଆଫ୍ରିକାର ଏ ପ୍ରଦେଶ ଗୁଡ଼ିକ ସ୍ୱାଧୀନ ହେବା ସଙ୍ଗେ ସଙ୍ଗେ ପୁଣି ଟିପଚିହ୍ନ ଆଇନ ନୂଆକରି ଗଢ଼ି ଦେଇଥିଲେ ।

୧୯୦୭ରେ ସରକାର ଏ ଆଇନ ଚଳାଇବାକୁ ଦିନ ଠିକ୍ କରିଥାନ୍ତି । ସେହି ଦିନକୁ ସତ୍ୟାଗ୍ରହ ବି ଜୋର ଚାଲିବାର ଆୟୋଜନ ଓ ପ୍ରଚୁର ଚାଲିଥାଏ । ପ୍ରଥମେ ପ୍ରଥମେ ଜଣେ ଅଧେ ସତ୍ୟାଗ୍ରହୀଙ୍କୁ ଜେଲକୁ ନେଉଥିଲେ କ୍ରମେ ନେତାମାନଙ୍କ ଉପରେ ହାତ ପଡ଼ିଥିଲା । ସେମାନଙ୍କ ଉପରେ ମକଦ୍ଦମା ହେଲା । ଗାନ୍ଧୀ-ପ୍ରମୁଖ କଚେରୀରେ ହାଜର ହେଲେ ଏବଂ ସତ୍ୟାଗ୍ରହୀ ଭଳି ମକଦ୍ଦମା

ନ ଲଢ଼ିବାରୁ ଓ ସ୍ୱେଚ୍ଛାରେ ଜେଲ ଯିବାକୁ ପ୍ରସ୍ତୁତ ହେବାରୁ ଛ ଛମାସ ଜେଲଦଣ୍ଡ ପାଇଲେ । ପ୍ରାୟ ଦେଢ଼ଶହଯାଏ ସତ୍ୟାଗ୍ରହୀ ଜେଲରେ ରହିଲେ ।

ଶେଷରେ ସରକାର ମଧ୍ୟସ୍ଥ ପଠେଇ ଏକ ରଫା କଲେ ଗାନ୍ଧୀ ପ୍ରଭୃତି ଜେଲରୁ ବାହାରିଲେ । ଏ ରଫାରେ ସମସ୍ତେ ଖୁସି ହୋଇଥିଲେ ସୁଦ୍ଧା କେତେଜଣ କାବୁଲୀ ଏ ରଫାରେ ଖୁସି ହୋଇ ନ ଥିଲେ ଏବଂ ଗାନ୍ଧୀ ଘୁସ୍ ଖାଇ ରଫା କରିଛନ୍ତି ବୋଲି ଗାନ୍ଧୀଙ୍କୁ ଦୋଷ ଦେଉଥିଲେ ଓ ଗାନ୍ଧୀଙ୍କୁ ଠେଙ୍ଗାରେ ପିଟି ଥିଲେ । ସେମାନଙ୍କୁ ସର୍କାର ଧରିନେଇ ମକଦମା କଲେ କିନ୍ତୁ ସତ୍ୟାଗ୍ରହୀ ଗାନ୍ଧୀ ସେମାନଙ୍କ ବିରୁଦ୍ଧରେ ମକଦମାରେ ହାଜର ହୋଇ ନ ଥିଲେ ।

ସେ ଆଇନ ରଦ ହେଲା ସତ କିନ୍ତୁ ସରକାର ପୁଣି ବିଶ୍ୱାସ-ଘାତକତା କରି ଅନ୍ୟ ପ୍ରକାରେ ବାଧା ଦେବାକୁ ନୂଆ ଆଇନ ଗଢ଼ିଲେ । ରଫାନାମାକୁ ଏକ ଭିନ୍ନ ଅର୍ଥ କଲେ । ପୁଣି ସତ୍ୟାଗ୍ରହ ଆରମ୍ଭ ହେଲା । ଯେଉଁମାନେ ପରୱାନା ନେଇଥିଲେ ସମସ୍ତେ ପ୍ରକାଶ୍ୟ ସଭାରେ ପରୱାନା ପୋଡ଼ିବାକୁ ଲାଗିଥିଲେ ।

ନିରକ୍ଷର ଲୋକଙ୍କର ଶୁଦ୍ଧ ନିର୍ମଳ ତ୍ୟାଗ ଉପରେ ସତ୍ୟାଗ୍ରହର ବଳ ଦିନକୁ ଦିନ କିପରି ବଢ଼ିବାକୁ ଲାଗିଥିଲା, ତାହା ଗାନ୍ଧୀ ତାଙ୍କର ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ ବହିରେ ବର୍ଣ୍ଣନା କରିଛନ୍ତି । ଏହି ମୂର୍ଖ ଲୋକେ ବି ଜେଲ ଭିତରେ ଟୁରି ସତ୍ୟାଗ୍ରହୀ ଭଳି ଆଚରଣ କରିଥିଲେ । ଆତ୍ମସମ୍ମାନରେ ବାଧା ନ ପଡ଼ିବାଯାଏ, ସବୁ ରକମ କଷ୍ଟ ସହି ମାଟିବୋହିବା ପଥର ବାଡ଼େଇବା ପ୍ରଭୃତି କାମ କରି କରି ବଡ଼ ଦୁର୍ବଳ ହୋଇ ପଡୁଥିଲେ । ଜଣେ ଅଧେ ବେମାର ପଡ଼ି ମରି ବି ଗଲେ । ଅଥଚ ଅନ୍ୟ ବିଷୟରେ ଜେଲବ୍ୟବହାରରେ ଆତ୍ମସମ୍ମାନରେ ବାଧା ପଡ଼ିବାରୁ ଉପବାସ ମଧ୍ୟ କରିଥିଲେ । ସେତେବେଳେ

ଲୋକମତ ସେପରି ଉଗ୍ର ହୋଇ ନ ଥିଲା ଯେ ବାହାରେ ଏ ବିଷୟରେ ଜୋର୍ ଆନ୍ଦୋଳନ କରିଥାନ୍ତେ । ଯେଉଁମାନେ ଉପବାସ କରିଥିଲେ ସେମାନେ ନିଜର ଶକ୍ତି ଉପରେ ନିର୍ଭର କରି ରହିଥିଲେ । ଶେଷରେ ସାତ ଆଠଦିନ ଉପବାସ ପରେ ସେମାନଙ୍କୁ ଅନ୍ୟ ଜେଲକୁ ବଦଳି କରାଯାଇଥିଲା ଓ ସେମାନଙ୍କର ଦାବୀ ପୂରଣ କରାଯାଇଥିଲା । ତାଙ୍କ ସମ୍ବନ୍ଧରେ ଗାନ୍ଧୀ ଲେଖିଛନ୍ତି—"ସତ୍ୟାଗ୍ରହ ଯୁଦ୍ଧ ଗରୀବଙ୍କର ଯୁଦ୍ଧ ଥିଲା ଏବଂ ଗରୀବ ଭାବରେ ଚଳା ଯାଉଥିଲା । ତେଣୁ ଏ ଭଳି ଉପବାସ ପ୍ରତିଜ୍ଞାରେ ବହୁତ ବିପଦ ଥିଲା, କିନ୍ତୁ ସତ୍ୟାଗ୍ରହୀମାନେ ପ୍ରତିଜ୍ଞାରେ ଦୃଢ଼ ଥିଲେ ।"

## ( ୧୦ )

ଗାନ୍ଧୀ ପୁଣି ଜେଲ ଗଲେ; ଏଥର ପ୍ରାୟ ପଚାଶ ଜଣ ଯାଏ ତାଙ୍କ ସାଙ୍ଗରେ ଜେଲ ଯାଇଥିଲେ । ସମସ୍ତଙ୍କୁ ଅଲଗା ଅଲଗା ଜେଲରେ ରଖା ଯାଇଥିଲା । କାହାର ସଙ୍ଗେ କାହାର ଦେଖା ନ ହେଲେ, ଏକୁଟିଆ ରହିଲେ ଶୀଘ୍ର ତାଙ୍କର ଉତ୍ସାହ ତୁଟିଯିବ ଏଇ ଆଶାରେ ଏପରି କରାଯାଇଥିଲା । ଏହି ଦଳରେ ନାଗାପ୍ପାନ ବୋଲି ଜଣେ ଯୁବକ ସତ୍ୟାଗ୍ରହୀ ଥିଲା । ତାକୁ ଯେତେ କାମ ଦିଆଯାଉଥାଏ ସେ ସବୁ କରୁଥାଏ । ଧୀରେ ଧୀରେ ତାର ସ୍ୱାସ୍ଥ୍ୟ ଖରାପ ହୋଇଗଲା ଓ ତାକୁ ଫୁସ୍‌ଫୁସ୍ ରୋଗ ଧରିଥିଲା । ଶେଷରେ ସେ ସେହିଠାରେ ମରିଗଲା । ସେ ଦିନେ ହେଲେ ମନରେ କିଛି ଦୁଃଖ କରି ନାହିଁ; ମରିବାଯାଏ ହସି ହସି କେବଳ ସତ୍ୟାଗ୍ରହ କଥା କହୁଥିଲା । ଗାନ୍ଧୀ ତା ସମ୍ବନ୍ଧରେ ଲେଖୁ ଲେଖୁ ଲେଖିଛନ୍ତି—"ଅମ ମାପ କାଟିରେ ମାପିଲେ ନାଗାପ୍ପାନ ନିରକ୍ଷର ଥିଲା । ଇଂରେଜୀ ଓ ଜୁଲୁ ଭାଷା ଅଭ୍ୟାସ ଯୋଗୁଁ କହି ପାରୁଥିଲା, ଟିକିଏ ଇଂରେଜୀ ବ

ଲେଟୁଥିଲେ; ମାତ୍ର ପାଠୁଆଙ୍କ ଧାଡ଼ିରେ ତାଙ୍କୁ କେବେହେଁ ସାମିଲ କରି ହେବ ନାହିଁ। ତଥାପି କାଗାପ୍ଟାନ୍‌ର ଧୈର୍ଯ୍ୟ, ଶାନ୍ତି, ଦେଶଭକ୍ତି ଓ ମରଣପର୍ଯ୍ୟନ୍ତ ଦୃଢ଼ତା ଢେର। ଆମେ ଯଦି ବିଚାରିବା ତେବେ କହିବାକୁ ହେବ ଯେ ତାହାଠାରେ ଆଶାକଲା ଭଳି କୌଣସି ବିଷୟର ଅଭାବ ନ ଥିଲା। ଆମକୁ ବଡ଼ ବଡ଼ ପାଠୁଆ ଲୋକେ ମିଳି ନ ଥିଲେ ସତ କିନ୍ତୁ ସେଥିଯୋଗୁଁ ସତ୍ୟାଗ୍ରହ ଯୁଦ୍ଧ ଅଟକି ରହି ନ ଥିଲା।"

ସରକାର ମଧ୍ୟ କେବଳ ଜେଲକୁ ପଠାଇ ନିଶ୍ଚିନ୍ତ ରହି ନ ଥିଲେ। ଜାହାଜରେ ଦଳ ଦଳ ସତ୍ୟାଗ୍ରହୀଙ୍କୁ ବୋଝେଇ କରି ଦକ୍ଷିଣ ଆଫ୍ରିକାରୁ ବିଦାୟ କରି ଦେଉଥିଲେ। ଏକଦମ୍ ନେଇ ଭାରତ ଉପକୂଳରେ ଛାଡ଼ିଦେଇ ଆସୁଥିଲେ। କିନ୍ତୁ ଏହା ବିରୁଦ୍ଧରେ ଭାରତରେ ହୁରି ଗୋଳମାଳ ହେଲା। ଲୋକେ ମକଦମା କଲେ, ଅପିଲ କଲେ। ଶେଷରେ ଦେଶ ବାହାର କରିଦେବା କଥା ବନ୍ଦ ହୋଇଗଲା।

ଏହିପରି ଅନେକ ଦିନ ସତ୍ୟାଗ୍ରହ ଚାଲିଥିଲା। ଏହା ଭିତରେ ଗାନ୍ଧୀ ନିରାଶ ହୋଇ ପୁଣି ବିଳାତ ଯାଇ ସେଠା ସରକାରଙ୍କ ପାଖେ ଦାବି ଜଣାଇଥିଲେ। ସେଥିରେ ଫଳ କିଛି ହୋଇ ନ ଥିଲା। ଏ ଯୁଦ୍ଧ ବହୁଦିନ ଚାଲିବାର ଦେଖି ସତ୍ୟାଗ୍ରହୀମାନଙ୍କ ପାଇଁ ଗାନ୍ଧୀ ଏକ ଆଶ୍ରମ ଖୋଲିଥିଲେ।

ତାର ନାଁ ଦେଇଥିଲେ ଟଲଷ୍ଟୟ ଫାର୍ମ। ଟଲଷ୍ଟୟ ଥିଲେ ରୁଷ ଦେଶର ଜଣେ ମହାପୁରୁଷ। ସେ ତାଙ୍କ ଦେଶରେ ସତ୍ୟାଗ୍ରହ ଭଳି ଏକ ଆନ୍ଦୋଳନ ପ୍ରଥମେ ଚଳାଇଥିଲେ। ସତ୍ୟାଗ୍ରହୀମାନେ ଜେଲ ଯିବା ସମୟରେ ତାଙ୍କ ପିଲାମାନେ ଏ ଫାର୍ମରେ ରହୁଥିଲେ। ସେମାନେ ବାଡ଼ି ବଗିଚା କରି କାମଦାମ କରି ଚଳୁଥିଲେ। ଆଶ୍ରମର ଉଦ୍ଦେଶ୍ୟ ଥିଲା, "ସତ୍ୟାଗ୍ରହୀ କୁଟୁମ୍ବବର୍ଗଙ୍କୁ ପରିଶ୍ରମୀ ରଖିବା,

ପଇସା ବଞ୍ଚେଇବା ଏବଂ ସମସ୍ତଙ୍କୁ ସ୍ୱାବଲମ୍ବୀ କରେଇବା ।"

ଏହା ଫଳରେ ପ୍ରାୟ ଦୁଇ ତିନି ଲକ୍ଷ ଟଙ୍କା ବଞ୍ଚି ଯାଇଥିଲା, ଆଶ୍ରମ-ବାସୀଙ୍କ ଭିତରେ ଏକ ପରିବାର ଭାବ ଆସିଥିଲା ଓ ସତ୍ୟାଗ୍ରହୀଙ୍କୁ ଗୋଟିଏ ଶୁଦ୍ଧ ଆଶ୍ରୟ ସ୍ଥଳ ମିଳିଥିଲା ।

ମଝିରେ ମଝିରେ ଗୋଟିଏ ଦୋଟି କରି ସତ୍ୟାଗ୍ରହୀ ଜେଲ ଯାଉଥାନ୍ତି । ୧୯୧୧ ରେ ଗୋଖେଲ ବିଲାତ ଯାଇଥିଲେ । ସେଠୁ ଦକ୍ଷିଣ ଅଫ୍ରିକା ଯାଇଁ ସତ୍ୟାଗ୍ରହର ହାଲ ଦେଖିବା ପାଇଁ ତାଙ୍କର ଇଚ୍ଛା ହୋଇଥିଲା । ଗାନ୍ଧୀ ଏ ଖବର ପାଇ ଭାରି ଖୁସି ହେଲେ ଏବଂ ଗୋଖେଲଙ୍କର ଦକ୍ଷିଣ ଅଫ୍ରିକାରେ ଗସ୍ତ କରିବାର ସମସ୍ତ ବ୍ୟବସ୍ଥା କରିଥିଲେ । ଗୋଖେଲ ସବୁଆଡ଼େ ବୁଲି ସବୁ ଅବସ୍ଥା ବୁଝିଥିଲେ । ସେଠା ସରକାରଙ୍କ ସଙ୍ଗେ କଥାବାର୍ତ୍ତା କରି ଏକ ରଫାର ବ୍ୟବସ୍ଥା କରିଯାଇଥିଲେ । ଗୋଖେଲଙ୍କ ପଛେ ପଛେ ସ୍ୱର୍ଗୀୟ ମହାମତ ଆଣ୍ଡ୍ରୁଜ ଓ ପିଅରସନ୍ ସାହେବମାନେ ଭାରତବାସୀଙ୍କୁ ସାହାଯ୍ୟ କରିବାକୁ ଆସିଥିଲେ ।

ଗୋଖେଲ ଆଶା କରି ଯାଇଥିଲେ ଯେ ପଇଁତ୍ରିଶ ଟଙ୍କିଆ କରଟା ବର୍ତ୍ତିକରେ ଉଠାଇ ନିଆଯିବ । ମାତ୍ର ଦକ୍ଷିଣ ଆଫ୍ରିକା ସରକାର ଗୋଖେଲଙ୍କୁ ଯେ ଜବାବ ଦେଇଥିଲେ ତାହା ରକ୍ଷା କଲେ ନାହିଁ ଓ ଟିକସକୁ ଉଠାଇ ନେଲେ ନାହିଁ । ଫଳରେ ସତ୍ୟାଗ୍ରହ ଲଢ଼େଇ ପୁଣି ତେଜି ଉଠିଥିଲା । ଏଥର [ସତ୍ୟାଗ୍ରହରେ ସେ ପଇଁତ୍ରିଶ ଟଙ୍କିଆ କର ବିରୁଦ୍ଧରେ ଲଢ଼ିବା ସାମିଲ କରାଗଲା । କାରଣ ଏହାଦ୍ୱାରା ଗୋଖେଲଙ୍କୁ ଅପମାନ କରାଯାଇଥିଲା ଏବଂ ତା ଫଳରେ ସମଗ୍ର ଭାରତକୁ ଅପମାନ କରାଯାଇଥିଲା । ତାକୁ ସହିଯିବା ସେଠା ଭାରତବାସୀଙ୍କ ପକ୍ଷରେ ସମ୍ଭବ ନ ଥିଲା ।

( ୧୧ )

ଅନେକ ଗିରମିଟିଆ କୁଲିମାନେ ସତ୍ୟାଗ୍ରହରେ ଯୋଗ ଦେଇ ନ ଥିଲେ, କ୍ରମେ ସେମାନଙ୍କର ପ୍ରତ୍ୟକ୍ଷଭାବରେ ଯୋଗ ଦେବାର ସୁଯୋଗ ଆସି ଯାଇଥିଲା । ଏ ସମ୍ବନ୍ଧରେ ଗାନ୍ଧୀ ଲେଖିଛନ୍ତି, "ଆଜଯାଏ ଗିରମିଟିଆଙ୍କ ଭିତରେ କୌଣସି ପ୍ରକାର ଯୁଦ୍ଧର ଶିକ୍ଷା ତ ଦୂରର କଥା, ସତ୍ୟାଗ୍ରହର ଚର୍ଚ୍ଚା ବି ଆମେ କରୁ ନ ଥିଲୁ । ସେମାନେ ନିରକ୍ଷର ଥିଲେ । ସେମାନେ 'ଇଣ୍ଡିଆନ୍ ଓପିନିୟନ୍' (ଗାନ୍ଧୀଙ୍କ ଖବର କାଗଜ) କିମ୍ବା ଅନ୍ୟ କୌଣସି ସମ୍ବାଦପତ୍ର ପଢ଼ି ପାରୁ ନ ଥିଲେ । ତଥାପି ମୁଁ ଦେଖିପାରିଥିଲି ଯେ ସେହି ଗରିବ ଲୋକେ ସତ୍ୟାଗ୍ରହ ଯୁଦ୍ଧର ଗତିକୁ ବେଶ ନିରୀକ୍ଷଣ କରୁଥିଲେ ଏବଂ ସବୁ ଘଟଣା ବୁଝୁଥିଲେ । ସେମାନଙ୍କୁ ସତ୍ୟାଗ୍ରହରେ ଯୋଗ ଦେବାକୁ ଅନୁମତି ମିଳୁ ନ ଥିଲା ବୋଲି କେତେକଙ୍କ ମନରେ ଦୁଃଖ ବି ଥିଲା ।"

ଯୁଦ୍ଧର ସଜବାଜ ଏହିପରି ଆରମ୍ଭ ହେଲାବେଳକୁ, ଏପରି ଏକ ନୂଆ ବିଘ୍ନ ପହଞ୍ଚିଲା ଯାହା ଫଳରେ ସ୍ତ୍ରୀଲୋକମାନଙ୍କୁ ସତ୍ୟାଗ୍ରହରେ ଯୋଗ ଦେବାର ସୁଯୋଗ ମିଳି ଯାଇଥିଲା । ଆଗରୁ ଅନେକ ସ୍ତ୍ରୀ ଲୋକ ଜେଲ ଯିବାକୁ ଆଗ୍ରହ ଦେଖାଇଥିଲେ ସୁଦ୍ଧା ସେମାନଙ୍କୁ ଯୁଦ୍ଧରେ ସାମିଲ କରାଯାଇ ନ ଥିଲା । ଏବେ ସେଠା ବଡ଼ ଅଦାଲତରେ ଏକ ମକଦ୍ଦମାର ରାୟ ବାହାରିଲା ଯେ ଦକ୍ଷିଣ ଆଫ୍ରିକାର ଆଇନ ଅନୁସାରେ ସେ ଦେଶର ଖ୍ରୀଷ୍ଟାନ ବିବାହଗୁଡ଼ିକ ଛଡ଼ା ଆଉ ସବୁ ବିବାହକୁ ବିବାହ ବୋଲି ଧରାଯିବ ନାହିଁ । ଏହା ଫଳରେ ଭାରତୀୟମାନଙ୍କ ସେଠାକାର ବିବାହିତ ସ୍ତ୍ରୀଲୋକମାନେ ଆଉ ଧର୍ମ-ପତ୍ନୀ ବୋଲି ଧରାଯିବେ ନାହିଁ ଏବଂ ତାଙ୍କ ପିଲାଏ ମଧ୍ୟ ବାପର ପୁଅ ବୋଲି ଗଣାଯିବେ ନାହିଁ । ଏଥିରେ ଉଭୟେ ହିନ୍ଦୁ ମୁସଲମାନ୍

ଚମକି ଉଠିଥିଲେ । ଏ ମକଦ୍ଦମାର ରାୟ ବିରୁଦ୍ଧରେ ଅପିଲ କରିବା ବି ଉଚିତ ମନେ ହେଲା ନାହିଁ । ଏତେ ବଡ଼ ଅପମାନର ପ୍ରତିକାର କେବଳ ସତ୍ୟାଗ୍ରହ ବୋଲି ସ୍ଥିର ହୋଇଥିଲା । ପ୍ରଥମେ ଟଲଷ୍ଟୟ ଫାରମରେ ଥିବା ଭଉଣୀମାନଙ୍କୁ ପଚରା ଯାଇଥିଲା । ଜେଲ୍ ତଥା ସତ୍ୟାଗ୍ରହର ଅନ୍ୟାନ୍ୟ ଦୁଃଖ କଷ୍ଟ କଥା ସେମାନଙ୍କୁ ଭଲରକମ ବୁଝାଇ ଦିଆଯାଇଥିଲା । ସେମାନେ କୌଣସି କଥାରେ ଡର ନ ଥିଲେ । କେତେଜଣଙ୍କ କୋଳରେ ଛୋଟ ଛୋଟ ପିଲା ବି ଥାନ୍ତି । କିନ୍ତୁ ସେମାନେ ଯୋଗ ଦେବାକୁ ଆଗ୍ରହ ପ୍ରକାଶ କରିବାରୁ ଗାନ୍ଧୀ ସେମାନଙ୍କୁ ଅନୁମତି ଦେଇଥିଲେ ।

ସେମାନେ ବିନା ପରଓ୍ୱାନାରେ ବଜାରରେ ଜିନିଷପତ୍ର ବିକିବାକୁ ଲାଗିଲେ । କିନ୍ତୁ ତାଙ୍କୁ ପୁଲିସ ଧରି ନ ଥିଲା । ଏମାନେ ସମସ୍ତେ ତାମିଲ (ମାନ୍ଦ୍ରାଜ) ପ୍ରଦେଶର ରମଣୀ ଥିଲେ । ଗାନ୍ଧୀଙ୍କ ସ୍ତ୍ରୀଙ୍କ ସହିତ ଆଉ କେତେ ଜଣ ମହିଳା ମଧ୍ୟ ଏମାନଙ୍କ ସାଙ୍ଗକୁ ବାହାରିଥିଲେ । 'ଖବର କାଗଜ ଚଳେଇବାକୁ ଯେତେ ଜଣ ଦରକାର ସେହି କେତେ ଜଣଙ୍କୁ'ରଖି ବାକୀ ଆପଣାର ପୁରୁଣା ବଛା ବଛା ସହକର୍ମୀ-ମାନଙ୍କୁ ସତ୍ୟାଗ୍ରହୀଙ୍କର ଯୋଗ ଦେବାକୁ ଗାନ୍ଧୀ ଅନୁମତି ଦେଇଥିଲେ । ଏହା ଶେଷ ଆହୁତି ଦେବା ଭଳି ଥିଲା । ଏମାନଙ୍କ ନାମ ଧାମ ଜାଣିଲେ କାଳେ ପୁଲିସ ଏମାନଙ୍କୁ ଧରିବ ନାହିଁ, ସେଥିପାଇଁ ପୁଲିସକୁ ଆପଣା ନାଁ ନ କହି କଚେରୀରେ ହାକିମକୁ ଆପଣା ନାଁ କହୁଥିଲେ । ଖାଲି ପରଓ୍ୱାନା ନ ଥାଇ ଜିନିଷ ବୁଲେଇ ବିକିଲେ ଯଦି ନ ଧରିବ ତେବେ 'ନାତାଲ' ଓ 'ଟ୍ରାନ୍ସଭାଲ' ଦୁଇ ପ୍ରଦେଶର ସୀମା ପାରହୋଇ ଏକ ପ୍ରଦେଶରୁ ଅନ୍ୟ ପ୍ରଦେଶରେ ପଶିବା ପାଇଁ ବିଚାର ମଧ୍ୟ ହୋଇଥିଲା । କାରଣ ସେଠାରେ ପରଓ୍ୱାନା ନ ନେଇ ଗଲେ ଧରା ହେବାର ଆଇନ ଥାଏ । ସେଥିରେ

ନ ଧରିଲେ କୋଇଲାଖଣିମାନଙ୍କୁ ଯାଇ ସେଠାରେ ଯେ ଗିରମିଟିଆ
କୁଲିମାନେ କାମ କରୁଥାଆନ୍ତି ତାଙ୍କୁ କାମ ଛାଡ଼ିଦେବାକୁ
ଡାକ ଦେବେ । ପ୍ରଦେଶ ସୀମା ଡେଇଁ ଯାଇଥିବାରୁ କେତେ
ଜଣଙ୍କୁ ପୁଲିସ ଗିରଫ କରି ଛ ଛ ମାସ ଜେଲ୍ ଦିଆଇଥିଲେ ।
ସ୍ତ୍ରୀଲୋକମାନେ କୋଇଲାଖଣିକୁ ଯାଇ ସେଠି କୁଲିମାନଙ୍କୁ ମତେଇ
ଥିଲେ । ଗୃହୁଁ ଗୃହ ନିଆଁ ଲାଗିଯାଇଥିଲା; ଶହ ଶହ, ହଜାର
ହଜାର କୁଲି କାମ ଛାଡ଼ି ଚାଲି ଆସିଥିଲେ । ସେତେବେଳେ
ସେ ବୀର ରମଣୀମାନଙ୍କୁ ଆଉ ସରକାର ନ ଧରି ରହନ୍ତେ କିପରି ?

ଏହିମାନଙ୍କ ବଳିଦାନରେ ଦକ୍ଷିଣ ଆଫ୍ରିକାରେ ଏକ
ଅଦ୍ଭୁତ ଜାଗରଣ ଦେଖାଯାଇଥିଲା । ଏହା ଭାରତବର୍ଷକୁ ମଧ୍ୟ
ଚମକେଇ ଦେଇଥିଲା । ଭାରତର ବଡ଼ ବଡ଼ ନେତାମାନେ ଯେ
ଦକ୍ଷିଣ ଆଫ୍ରିକା ବିଷୟରେ ସେତେ ମନ ଦେଉ ନ ଥିଲେ ସେମାନେ
ଉଠି ପଡ଼ି ଲାଗି ଥିଲେ । ସ୍ୱର୍ଗୀୟ ସାର୍ ଫିରୋଜ ଶାହା ମେହେଟା
ନିଜେ ଏକ ବକ୍ତୃତାରେ କହିଥିଲେ "ନାରୀମାନଙ୍କର ଜେଲ ଦଣ୍ଡ
ମୋର ଶାନ୍ତି ଭଙ୍ଗ କରି ଦେଇଛି ।"

( ୧୬ )

ଏଣେ ଜେଲ ଭିତରେ ଭଉଣୀମାନେ ଖୁବ୍ ବୀରତ୍ୱ ଦେଖାଇ-
ଥିଲେ । ଯେଉଁ କାମ ଦିଆଯାଉଥିଲା ତାହା ସବୁ ଆନନ୍ଦରେ କରୁଥିଲେ ।
ସେମାନଙ୍କୁ ଖାଦ୍ୟ ମଗାଇବା ପାଇଁ ମନା ଥିଲା, ଜେଲ୍ ଖାଦ୍ୟରେ
ତୃପ୍ତି ହୋଇ ଚଳୁଥିଲେ । ଯେ ଟିକିଏ ସୁକୁମାରିଆ ଥିଲେ, ସେ
ଜେଲରୁ ଅସ୍ଥିକଙ୍କାଳ ହୋଇ ବାହାରି ଥିଲେ । ଓ୍ୱାଲିୟାମା ନାମ୍ନୀ
ଏକ ଭଉଣୀ ଜେଲରୁ ବେମାର ହୋଇ ଆସି ଶେଷରେ ସେହି
ରୋଗରେ ଅଳ୍ପଦିନରେ ଜୀବନ ଦାନ ଦେଇଥିଲା । ମଲାଙ୍କ ପରି
ବିଛଣାରେ ପଡ଼ିଥାଏ, ଏଣେ କଥାବାର୍ତ୍ତାରେ କହୁଥାଏ "ମୋର ଦୁଃଖ

ନାହିଁକି ହେବ ? ପୁଣି ଗିରଫ କରିବେ ତ ମୁଁ ଯିବାକୁ ପ୍ରସ୍ତୁତ ଅଛି । ଦେଶପାଇଁ ମରିବାକୁ କାହାକୁ ଭଲ ନ ଲାଗିବ ?”

ଗାନ୍ଧୀ ତାର ମୃତ୍ୟୁ ସମ୍ବନ୍ଧରେ ଲେଖିଛନ୍ତି, “ତାର ଜେଲ୍ ଯିବା ତାର ହୃଦୟର ଅଭିନାଦ ଥିଲା, ଶୁଦ୍ଧ ଯଜ୍ଞ ଥିଲା । ଏହିଭଳି ଶୁଦ୍ଧ ହୃଦୟରୁ ପ୍ରାର୍ଥନା ଭଗବାନ ଶୁଣିଥାନ୍ତି । ଯଜ୍ଞର ଶୁଦ୍ଧତାରେ ଯଜ୍ଞର ସଫଳତା ଥାଏ । ଭଗବାନ ତ ଭାବନାର ଭକ୍ତ । ଭକ୍ତିରେ ଅର୍ଥାତ୍ ନିଃସ୍ୱାର୍ଥ ବୁଦ୍ଧିରେ ଯଦି ପୁଷ୍ପଟିଏ ଯାହା ଦେବ, ପରମାତ୍ମାଙ୍କର ତାହା ପ୍ରିୟ । ············ କିଏ କହିବ ଦକ୍ଷିଣ ଆଫ୍ରିକାରେ କାହାର କାହାର ଯଜ୍ଞ ସଫଳ ହୋଇଥିଲା ? ତେବେ ଏତିକି କହିହେବ ଯେ ଓ୍ୱାଲିୟାମାର ବଳିଦାନ ନିଶ୍ଚୟ ସଫଳ ହୋଇଛି । ସତ୍ୟାଗ୍ରହୀ ଜାଣନ୍ତି, ତାଙ୍କ ଭିତରୁ ଜଣକର ଯଜ୍ଞ ଯଦି ଶୁଦ୍ଧ ଥିବ ଫଳାଫଳ ପାଇଁ ତାହା ଯଥେଷ୍ଟ ହେବ । ପୃଥିବୀ ସତ୍ୟ ଉପରେ ତିଷ୍ଠି ରହିଛି । ଅସତର ଅର୍ଥ ‘ନାହିଁ’, ସତର ଅର୍ଥ ‘ଅଛି’ । ସତ୍‌କୁ କିଏ ନାଶ କରିପାରିବ ? ସତ୍ୟାଗ୍ରହର ସମସ୍ତ ତତ୍ତ୍ୱ ଏତିକିରେ ଅଛି ।”

ଗିରମିଟିଆମାନେ କାମ ଛାଡ଼ି ଜମା ହେଲେ । ଗାନ୍ଧୀ ସେତେବେଳଯାଏ ବାହାରେ ଥାନ୍ତି, ତେଣୁ ପାଇଁ ସେମାନଙ୍କ ପଛେ ଜୁଟି ଗଲେ । ସେମାନଙ୍କର ଖିଆ ପିଆ ବ୍ୟବସ୍ଥା ଗାନ୍ଧୀ ନିଜ ହାତରେ କରଥିଲେ । କୁଲିମାନଙ୍କ ମାଲିକମାନେ କୁଲିମାନଙ୍କୁ ଆଉ କୁଲିବସ୍ତିରେ ରଖିଦେଲେ ନାହିଁ, ମାଡ଼ ଗାଳି ଦେଇ ସବୁ ବାହାର କରି ଦେଲେ । ସେତେବେଳକୁ ସରକାରୀ ଜୁଲମରେ ପଚାସା-ରୁଅଲି ଦେହଧାରୀ ଭାଇମାନେ ଠିକିଏ ଉଠି ଯାଇଥାନ୍ତି । ଜଣେ ଦକ୍ଷିଣୀ ଖ୍ରୀଷ୍ଟାନ ଭାଇ ତା ଘର ଆଗ ପଡ଼ିଆ ଖଣ୍ଡି ଛାଡ଼ି ଦେଇଥିଲା । ସେ ଥିଲା ଗିରମିଟିଆ ମା ବାପଙ୍କ ସନ୍ତାନ—ପରେ ସ୍ୱାଧୀନ ହୋଇଥିଲା । କିନ୍ତୁ ତାକୁ ବି ପଇଁଚାଳିଶ ଟଙ୍କିଆ ଟିକସ ଦେବାକୁ

ପଡ଼ୁଥିଲା । ସେ ଥିଲା ଗରିବ । ଗରିବର ଡର ଅଛି କାହାକୁ ? ସେହି ଲୋକଟି ଆଦରରେ ଗାନ୍ଧୀଙ୍କୁ ସ୍ଥାନ ଦେଇଥିଲା । ଗାନ୍ଧୀଙ୍କୁ ଡାକି ଆଣିବାର ଅର୍ଥ ଥିଲା ଦାରିଦ୍ର୍ୟକୁ ଡାକି ଆଣିବା ଏବଂ ତା ସାଙ୍ଗକୁ ହୁଏ ତ ଜେଲଦଣ୍ଡକୁ ମଧ୍ୟ ବରଣ କରିବା ।

କିନ୍ତୁ ସେ ଜଣେ ଲୋକ କ'ଣ ଏ ଶହ ଶହ ମୂଲିଆ ପରିବାରଙ୍କୁ ଖାଇବାକୁ ଦେଇ ପାରିଥାନ୍ତା ? ପରେ ଭାରତବର୍ଷରୁ ଯେଉଁ ଟଙ୍କା ବର୍ଷା ହୋଇଥିଲା ତାହା ସେତେବେଳଯାଏ ଆରମ୍ଭ ହୋଇ ନ ଥାଏ । ଗାନ୍ଧୀ ଲୋକଙ୍କୁ ଏହି ମର୍ମରେ ସାବଧାନ କରିଦେଇଥିଲେ, "ଏ ହରତାଳ ସବୁଦିନେ ଚାଲିବ, ଏଥି ନିମନ୍ତେ ସେମାନେ ନିଜ ନିଜ ମାଲିକଙ୍କ ଘର ଛାଡ଼ି ଆସନ୍ତୁ । ଯାହା ବିକିବା ଭଳି ଜିନିଷପତ୍ର ଅଛି ତାହା ବିକି ଦିଅନ୍ତୁ । ବାକି ସବୁ ଜିନିଷ ସେହି କୁଡ଼ିଆରେ ରଖିଦେଇ ଆସନ୍ତୁ । ମାଲିକ ସେଥିରେ ହାତ ଦେବେ ନାହିଁ । ଯଦିବା ଶତ୍ରୁତା କରି ଫୋପାଡ଼ି ଦିଅନ୍ତି, ତାହା ସହି ଯିବାକୁ ହେବ ।" ଖଣ୍ଡେ ଖଣ୍ଡେ କମ୍ବଳ କେଇଖଣ୍ଡ ଲୁଗାପଟା ଧରି, କୁଲିଙ୍କର ଏକ ସୁଅ ଚାଲିଲା । "ଯାହାର ବଳ ପାଉ ନାହିଁ ସେ ଫେରି ଯାଉ; ଯେ ଫେରିଗଲେ ତାଙ୍କୁ କେହି ଗାଳି ନ ଦିଅନ୍ତୁ ।" —ଏ ଉପଦେଶ ସେମାନେ ଖୁବ୍ ମାନି ଚଳିଥିଲେ ।

ପାଞ୍ଚହଜାର ଯାଏ ଲୋକ ଜମା ହୋଇଥିଲେ । ଏତେଗୁଡ଼ିଏ ଲୋକଙ୍କୁ ଖୁଆଇ ପିଆଇ ସମ୍ଭାଳିବା କାମ କାଠିକର ପାଠ ହେଲା । ସାହାଯ୍ୟରେ ବେପାରୀମାନେ ଆଉ ଚୁପ୍ ହୋଇ ବସି ପାରି ନ ଥିଲେ । ସବୁ ଖାଦ୍ୟ ଜିନିଷ ଯୋଗାଇ ଦେଉଥିଲେ । ସେହି କୁଲିମାନଙ୍କ ଭିତରୁ ସ୍ୱେଚ୍ଛାସେବକ ବାଛି ଗାନ୍ଧୀ ସେମାନଙ୍କ ହାତରେ କାମ ତୁଲେଇ ନେଇଥିଲେ । ରନ୍ଧା ଜିନିଷକୁ ବାଣ୍ଟିବା ନିଜେ ଗାନ୍ଧୀ କରୁଥିଲେ । ଏତେ ଲୋକଙ୍କ ଭିତରେ ଅନେକ ରୋଗୀ, ଦୁର୍ବଳ ପ୍ରସୂତୀ, ଗୁର୍ବିଣୀ

ଗ୍ରେଁର ଇତ୍ୟାଦ ଥା'ନ୍ତି । ସେତେବେଳେ ଏ ହରତାଳକୁ ଚଳେଇବା କାମ ବନ୍ଦ ହୋଇ ପଡ଼ିଥିଲା, ଲୋକ ବାଣ୍ଟିବା ବା ସୁଧାରିବା କାମ ସମ୍ଭବ ହୋଇ ନ ଥିଲା । ଏତେଗୁଡ଼ାଏ ଲୋକ ଏକାଠି ରହିଲେ କିଛି ନା କିଛି ଗୋଳମାଳ ବିପଦ ଲାଗି ରହିବାର କଥା, ମାତ୍ର କେମିତି ଯେ ସବୁ ଶାନ୍ତିରେ କଟିଗଲା ତାହାହିଁ ଆଶ୍ଚର୍ଯ୍ୟର କଥା ।

ଆଉ ଅପେକ୍ଷା ନ କରି ଶୀଘ୍ର ସମସ୍ତଙ୍କୁ ଜେଲ୍ ପଠାଇବା ସ୍ଥିର ହେଲା । ଦଫା ଦଫା କରି ନ ଯାଇ ସମସ୍ତେ ଏକାଠି ପ୍ରଦେଶର ସୀମା ଡେଇଁ ଯିବେ ଓ ଆଇନ ଅମାନ୍ୟ କରିବେ । ଖଣିଠାରୁ ଟ୍ରାନ୍ସଭାଲର ସୀମା ପ୍ରାୟ ଛତିଶ ମାଇଲ ଦୂର ଥିଲା । କୁଲିମାନଙ୍କ ସହିତ ପରାମର୍ଶ କରି ଯେଉଁମାନେ ଗୃହ ଗୃହ ଯାଇପାରିବେ ସେମାନଙ୍କର ଗୃହ ଯିବା ସ୍ଥିର ହେଲା । ସବୁ ଆୟୋଜନ ହେଉଥାଏ । ଏହିମଧ୍ୟରେ ଖଣିର ମାଲିକମାନେ ଗାନ୍ଧୀଙ୍କୁ ଡକାଇ ପଠାଇଲେ ଏବଂ କୁଲିମାନଙ୍କୁ ଏତେ ଦୁଃଖ କଷ୍ଟରେ ନ ପକେଇବାକୁ ଗାନ୍ଧୀଙ୍କୁ ବୁଝାଇଥିଲେ । ଗାନ୍ଧୀ ଜବାବ ଦେଇଥିଲେ, "ମୂଲିଆମାନେ ବୁଝି ବିଚାରି ଓ ହାନି ଲାଭର ପୂରା ହିସାବ କରି, ଏ ମେଳୀ ଆରମ୍ଭ କରିଛନ୍ତି । ଆତ୍ମସମ୍ମାନର ହାନିଠାରୁ ବଳି ଆଉ କିଛି ବଡ଼ ହାନି ମୋ ଆଖିକୁ ଦିଶୁ ନାହିଁ ଏବଂ ମୂଲିଆମାନେ ଯେ ଏ କଥାକୁ ବୁଝିଛନ୍ତି ସେଥିରେ ମୋର ଆନନ୍ଦ ।" ଏତେ ଗୁଡ଼ାଏ ଲୋକ କିପରି ଶାନ୍ତିପୂର୍ଣ୍ଣ ଭାବରେ ଏ ଧର୍ମଘଟକୁ ଚଳାଉଥିଲେ ତାହା ଦେଖି ଗୋରାମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଥିଲେ । ତାଙ୍କୁ ଅଧିକ ଆଶ୍ଚର୍ଯ୍ୟ ବିଷୟ ଥିଲା ଯେ ଏ ଲୋକଗୁଡ଼ିକ ସବୁ ଗରିବ, ଅପାଠୁଆ ମୂର୍ଖ ଲୋକ ଥିଲେ । ଗାନ୍ଧୀ ସବୁଦିନେ କହୁଥାନ୍ତି ଯେ ଦୃଢ଼ତା ଓ ବୀରତ୍ୱ ଏପରି ଗୁଣ ଯେ ତାଙ୍କର ପ୍ରଭାବ ନିଶ୍ଚୟ ପ୍ରତିପକ୍ଷ ଉପରେ ପଡ଼ିବ ।

( ୧୩ )

ଯାତ୍ରା ଆରମ୍ଭ ହେଲା । ଲୋକଙ୍କୁ ଆଗରୁ କର୍ତ୍ତବ୍ୟ ବୁଝାଇ ଦିଆଯାଇଥିଲା—ସାଙ୍ଗରେ ବେଶୀ ଜିନିଷ ନେବେ ନାହିଁ, ବାଟରେ ଅନ୍ୟ କାହାର ଜିନିଷରେ ହାତ ଦେବେ ନାହିଁ; ସରକାରୀ ଲୋକ ଆସି ବାଟରେ ଗାଳିଦେଲେ ବା ମାରିଲେ ସବୁ ସହିଯିବେ, ଗିରଫ କଲେ ଚୁପ୍ କରି ଧରା ଦେବେ । ଗାନ୍ଧୀ ଧରା ହୋଇ ଗଲେ ମଧ୍ୟ ନିଜର ଗନ୍ତବ୍ୟ ସ୍ଥାନଯାଏ ଚାଲି ଚାଲି ଯିବେ ।

ରାତିକୁ ରହିବା ଶୋଇବା ବ୍ୟବସ୍ଥା ହୋଇଥାଏ । ବାଟରେ ସଫା ସୁତୁରା ପ୍ରତି ଖୁବ୍ କଡ଼ା ନଜର ଦିଆ ଯାଉଥାଏ । "ସେବକ ହୁକୁମ ଦେବ ନାହିଁ ବରଂ ସେବା କରି ଯାଉଥିବ, ସେଥିରେ ବହୁତ କାମ ହୋଇଯାଏ; ସେବକଙ୍କୁ ନିଜର ଦେହକୁ କଷ୍ଟ ଦେବାର ଦେଖିଲେ ଲୋକେ ମଧ୍ୟ ସେୟା କରିବାକୁ ଲାଗି ଯାନ୍ତି" ଏ ଅନୁଭବ ଉପରେ ନିର୍ଭର କରି ଗାନ୍ଧୀ ଓ ତାଙ୍କର ସାଥୀମାନେ ରହଣି ବାଟିରେ ଝାଡ଼ୁଦେବା, ମଇଳା ହଟାଇ ସଫା କରିବା ସମସ୍ତ କାମ ଆନନ୍ଦରେ କରୁଥିଲେ । ଲୋକେ ବି ତାଙ୍କ ଦେଖା ଦେଖି ସେ କାମରେ ଯୋଗ ଦେଉଥିଲେ । "ସ୍ୱୟଂ ସର୍ଦ୍ଦାର ଯଦି ସେବକ ହେବ ତେବେ ଅନ୍ୟମାନେ ଆଉ ସର୍ଦ୍ଦାର ହେବାକୁ କାହିଁକି ମନ ବଳେଇବେ ?"

ଏ ସବୁ ଭଲ କଥା ଭିତରେ ବଦମାସି ବି ଠିକିଏ ଠିକିଏ ମୁଣ୍ଡ ଟେକୁଥାଏ । କଳିଗୋଳ ତ ସ୍ୱାଭାବିକ, ତା ଠାରୁ ବଳି ବ୍ୟଭିଚାର ମଧ୍ୟ ଦେଖା ଯାଉଥିଲା । ଗାନ୍ଧୀ ଖୁବ୍ କଡ଼ାକଡ଼ି କରି ଏଭଳି ଦୁଷ୍ଟଙ୍କୁ ଅଲଗା ନଜରବନ୍ଦ କରି ରଖନ୍ତି । ଗାନ୍ଧୀଙ୍କର ଏ ସବୁ କଟକଣାରେ କେହି ବିରୋଧ କରୁ ନ ଥିଲେ—ପଛେ ହୁଁ ଚୁଁ ବି କରୁ ନ ଥିଲେ । ଗାନ୍ଧୀ ଏ ସମ୍ବନ୍ଧରେ ଲେଖିଛନ୍ତି "ପ୍ରସ

ଜଙ୍ଗଲୀ ଲୋକେ ଭଲ ବାତାବରଣରେ ପଡ଼ିଗଲେ କିପରି ଭଲ ଆଚରଣ କରନ୍ତି ତାହା ମୁଁ ଏହି ସୁଯୋଗରେ ଜାଣି ପାରିଥିଲି । ଏ ବିଷୟ ମଧ୍ୟ ଜାଣିରଖିବା ବଡ଼ ଜରୁରୀ ଅଟେ, ଲଜ୍ଜାଯୁକ୍ତ ନୁହଁ ।”

ଏ ସମସ୍ତ ୧୯୧୩ ନଭେମ୍ବର ଆରମ୍ଭର ଘଟଣା । ଧର୍ମଘଟ ଖୁବ୍ ଜୋର୍ ଥାଏ । ପୁରୁଷଙ୍କ ସଙ୍ଗେ ସ୍ତ୍ରୀଲୋକ ବି ବହୁତ ଆସୁଥାନ୍ତି । କୋଳର ଛୁଆ କାଖେଇ ମା'ମାନେ ବାଟ ଚାଲି ଥାଆନ୍ତି । ବାଟରେ ଜଣଙ୍କର ପିଲାଟିଏ ବେମାର ପଡ଼ି ମରିଗଲା । ଆଉ ଜଣଙ୍କର ପିଲାଟିଏ ନାଳ ପାରି ହେଉ ହେଉ କାଖରୁ ଖସି ପାଣିରେ ବୁଡ଼ି ମଲା । ତଥାପି ମା'ମାନେ ଧୈର୍ଯ୍ୟ ଧରି ଚାଲୁଥାନ୍ତି । ଜଣେ କହିଲା “ମଲା ଲୋକ ପାଇଁ ଶୋକ କରି କ'ଣ ପାଇବ; ସେ କଣ ଲେଉଟି ଆସିବ ? ମୋର କର୍ତ୍ତବ୍ୟ ଜୀବନ୍ତଙ୍କ ସେବା କରିବା ।” ଗାନ୍ଧୀ କହନ୍ତି “ଏପରି ଅସୀମ ଆସ୍ତିକତା ଈଶ୍ୱର ବିଶ୍ୱାସ ଏବଂ ଅଗାଧ ଜ୍ଞାନର ଅନେକ ଦୃଷ୍ଟାନ୍ତ ମୁଁ ଏ ଗରିବଙ୍କ ଭିତରେ ଦେଖିବାକୁ ପାଇଥିଲି ।” ଟ୍ରାନ୍ସଭାଲ ପ୍ରଦେଶର ସରହଦ୍ ଧର୍ମଘଟୀଙ୍କ ଦଳକୁ ଦୁଇହଜାର ସଇଁତିରିଶ ଜଣ ପୁରୁଷ, ଏକଶତ ସତେଇଶ ଜଣ ସ୍ତ୍ରୀ ଓ ସତାବନ ଜଣ ପିଲା ସେନାରେ ଥିଲେ । ସୀମା ପାର ହୋଇଯିବାର ଅଠ ଦଶ ମାଇଲ ପରେ ଗୋଟିଏ ଚହୀରେ ଗାନ୍ଧୀଙ୍କୁ ଗିରଫ କରାଗଲା । କିନ୍ତୁ କଚେରୀରେ ଗାନ୍ଧୀ ଟ ୬୫୦୯ ଜାମିନ ଦେଇ ପୁଣି ଆସି ଲୋକଙ୍କ ସାଙ୍ଗ ଧରିଥିଲେ । ସରକାରୀ ଫେଲ ଆଦେଶ କଲେ ସୁଦ୍ଧା, ଗାନ୍ଧୀ ଯେତେବେଳେ ହାକିମଙ୍କୁ ଏତେ ଗୁଡ଼ିଏ ଲୋକଙ୍କର ଯାତାର ଦୁଃଖ କଷ୍ଟ କଥା କହିଲେ ହାକିମ ତାଙ୍କୁ ଜାମିନ୍ ଦେଲେ । ତା ପର ଚହୀରେ ପୁଣି ଜଣେ ମାଜିଷ୍ଟ୍ରେଟ ସ୍ୱୟଂ ଗାନ୍ଧୀଙ୍କୁ ଗିରଫ କଲେ ଏବଂ ସାଙ୍ଗରେ କଚେରୀକୁ ନେଇଗଲେ, ଏଠି ମଧ୍ୟ ପୁଣି ଜାମିନରେ ଛାଡ଼ିଦେଲେ । ଗାନ୍ଧୀ ଗାଡ଼ିରେ ଫେରି

ଯାଇ ଲୋକଙ୍କ ସାଙ୍ଗରେ ମିଶିଥିଲେ । ୨୧୭ ମାଇଲ ପରେ ପୁଣି ଗାନ୍ଧୀଙ୍କୁ ଗିରଫ କରାଗଲା, ଇତି ମଧ୍ୟରେ ଯାତ୍ରୀମାନେ ପୋଲକ ସାହେବଙ୍କ ନେତୃତ୍ୱରେ ଆଗକୁ ମାଡ଼ି ଚାଲିଥାନ୍ତି । ଗୋଟିଏ ରେଲଷ୍ଟେସନ ପାଖରେ ସେମାନଙ୍କୁ ଗିରଫ କରି ରେଲରେ ବସିବାକୁ କୁହାଗଲା । ପ୍ରଥମେ ଲୋକ ଟିକିଏ ଅକଡ଼ି ବସିଲେ 'ଗାନ୍ଧୀ ନ କହିଲେ ଗାଡ଼ୀରେ ବସିବୁ ନାହିଁ, ଧରା ଦେବୁ ନାହିଁ' ଏହାପରେ ପୋଲକ କଲେ କରୁ ବୁଝାବୁଝି କରି ଦେବାରୁ ଗାଡ଼ୀରେ ଶୀଘ୍ର ବସିଗଲେ ।

ଗାନ୍ଧୀଙ୍କୁ ସଜା ହେଲା, ଜେଲରେ ରହିଲେ । ତାଙ୍କର ଦେଢଶହ ସାଥୀ ତାଙ୍କ ସଙ୍ଗେ ବନ୍ଦୀ ହେଲେ । ଗାନ୍ଧୀ ଧରା ହେବା ପରେ ନାଟାଲରେ ଚହଲ ପଡ଼ିଗଲା । ସେଠାରୁ ଲୋକେ ଦଳ ଦଳ ହୋଇ ଟ୍ରାନ୍ସଭାଲର ସରହଦ୍ ପାର ହୋଇ ଧରାହେଲେ । ୭୫ ବର୍ଷର ଏକ ବୁଢ଼ା ହରବନ ସିଂହ ଜେଲରେ ଆସି ହାଜର ହେଲା । ତାକୁ ଗାନ୍ଧୀ ପଚାରିଲେ 'ତମେ ବୁଢ଼ା କାହିଁକି ଆସିଲ ? ତମକୁ ଖଲାସ କରିଦେବା ପାଇଁ ଚେଷ୍ଟା କରିବ ?' ସେ କ୍ଷଣରେ ଜବାବ ଦେଇଥିଲା "ଦିନେ ତ ମରିବାକୁ ହେବ । ସତେ କଣ ମୋର ଭାଗ୍ୟରେ ଏ ଜେଲରେ ମୃତ୍ୟୁ ଘଟିବ ? ମୁଁ ଜେଲ ଛାଡ଼ିବ ନାହିଁ ।"

ଶେଷରେ ବୁଢ଼ା ଜେଲରେ ହିଁ ମଲା—ଦକ୍ଷିଣ ଆଫ୍ରିକାର ସତ୍ୟାଗ୍ରହରେ ଜେଲରେ ମରିବାର ସୌଭାଗ୍ୟ ତାଙ୍କୁହିଁ ମିଳିଥିଲା ।

( ୧୪ )

ଗାନ୍ଧୀ ପ୍ରଭୃତିଙ୍କୁ ଜେଲ୍ ବଦଳାଇଲେ । ତାଙ୍କଠାରୁ ଯେପରି କୌଣସି ଖବର କୁଆଡ଼େ ଯିବ ନାହିଁ ସେପରି କଡ଼ା ବ୍ୟବସ୍ଥା

ସରକାର କରଥିଲେ । କିନ୍ତୁ ଯେତେ କଲେ କଣ ହେବ ସେତେବେଳକୁ ବନ୍ଧ ଭାଙ୍ଗି ସୁଅ ଗ୍ଲଲିଥାଏ, ଆଉ ସମ୍ଭାଳିବା ମୁସ୍କିଲ ହୋଇ ପଡ଼ଥିଲା । ନାଟାଲ ପ୍ରଦେଶର ସବୁ ଗିରମିଟିଆଯାକ ଚେଇଁ ଉଠିଥିଲେ । ତାଙ୍କୁ ଅଟକାନ୍ତା କିଏ ? ଏତେ ଲୋକଙ୍କୁ ନେଇ ଜେଲରେ ବା ରଖନ୍ତେ କେଉଁଠି ? ସରକାର ଫିକର କଲେ ଯେଉଁ ଖଣିରୁ ଲୋକେ ଧର୍ମଘଟ କରି ଗ୍ଲଲି ଆସିଥିଲେ, ତାକୁ ସରକାର ଜେଲ୍ କରଦେଲେ, ସେଠା ମାଲିକଙ୍କ କର୍ମଗ୍ଲରୀଙ୍କୁ ସେଠାକାର ଜେଲର କରଦେଲେ । ସେହି ଖଣିର କାମ କରବାକୁ ବଧ୍ୟତାଲା କିନ୍ତୁ ମୂଲିଆମାନେ ବୀରପୁରୁଷ ଥିଲେ, ସେ କାମ କରବାକୁ ମନା କରଦେଲେ । ଫଳରେ କୋରଡ଼ା ମାଡ଼ ବ ସହିବାକୁ ପଡ଼ଥିଲା । ନାନା ଅତ୍ୟାଗ୍ଲର ସହିବାକୁ ପଡ଼ଥିଲା ।

ଏ ସବୁ ସମ୍ବାଦ ଭାରତକୁ ପଠାଯାଉଥାଏ, ଗୋଖେଲ ରୋଗଶଯ୍ୟାରେ ପଡ଼ ଏ ସବୁ ସମ୍ବାଦ ପ୍ରଗ୍ଲର କରୁଥାନ୍ତି, ଭାରତର ଗ୍ଲରଆଡ଼େ ନିଆଁ ଲାଗିଗଲା । ଭାରତର ବଡ଼ଲାଟ ହାଡିଞ୍ଜ ସାହେବ ମଧ୍ୟ ଭାରତବାସୀଙ୍କ ସପକ୍ଷରେ ନୂତ୍ କୋର କୋର କଥା କହି ଏକ ବକ୍ତୃତା ଦେଇଥିଲେ । ସେଥିରେ ସେ ସତ୍ୟାଗ୍ରହ ଓ ସତ୍ୟାଗ୍ରହୀଙ୍କୁ ସମର୍ଥନ କରି ଦକ୍ଷିଣ ଆଫ୍ରିକା ସରକାରଙ୍କର ଜୁଲମ୍‌ର ସମାଲୋଚନା କରଥିଲେ ।

କ୍ରମେ ମୂଲିଆମାନେ ଅଧିକ ପରିମାଣରେ କାମ ବନ୍ଦ କଲେ । ତାଙ୍କ ଉପରେ ଘୋଡ଼ା ଚଢ଼େଇଦେଇ ଜବରଦସ୍ତ ତାଙ୍କୁ କାମକୁ ଫେରାଇବାକୁ ଚେଷ୍ଟା କରାଯାଇଥିଲା । ସେମାନେ ନ ଗଲେ ତାଙ୍କ ଉପରେ ଗୁଳି ଚଳାଗଲା । ଦୁଇ ଗ୍ଲରି ଜଣ ମଲେ । କେତେ ଖଣ୍ଡିଆ ହେଲେ କିନ୍ତୁ ଠିକିଏ ହେଲେ ଦବିଲେ ନାହିଁ । ଭଲ

କଷଟିରେ ପରୀକ୍ଷା ହୋଇଗଲା । ସତ୍ୟାଗ୍ରହୀଙ୍କ ଦୁଃଖ ସେତିକି ବଢୁଥାଏ, ସତ୍ୟାଗ୍ରହର ଅନ୍ତ ପାଖେଇ ଆସୁଥାଏ ।

ଭାରତରୁ ଆଣ୍ଡ୍ରୁଜ ଓ ପିଅର୍ସନ୍ ସାହେବମାନେ ଆସି ପହଞ୍ଚିଗଲେ । ରଫାକଥା ପଡ଼ିଲା, ଗାନ୍ଧୀ ଓ ଆଉ ଦୁ'ଚାରି ଜଣଙ୍କୁ ଛାଡ଼ିଦେଲେ । ପ୍ରଥମ ରଫାପରେ ଶେଷ ନିଷ୍ପତ୍ତି ଚୁକ୍ତିରୁ ପୁଣି ଟିକିଏ ଭିଡ଼ା ଓଟରା ଲାଗିଥିଲା । ପୁଣି ସତ୍ୟାଗ୍ରହ ପାଇଁ ଗାନ୍ଧୀ ଅଣ୍ଟା ଭିଡ଼ିଲେ, କିନ୍ତୁ ଏତିକିବେଳେ ଗୋରା ରେଲ୍କର୍ମଚାରୀଙ୍କର ଏକ ଧର୍ମଘଟ ଆରମ୍ଭ ହୋଇଯାଇଥିଲା । ସରକାର ବଡ଼ ଅଡୁଆରେ ପଡ଼ିଗଲେ, କିନ୍ତୁ ଗାନ୍ଧୀ ସତ୍ୟାଗ୍ରହୀର ନୀତି ଅନୁସାରେ ତାଙ୍କ ସତ୍ୟାଗ୍ରହ ବନ୍ଦ ରଖିଲେ ।

ସେ ଲେଖିଛନ୍ତି "ସରକାରଙ୍କୁ ହରକତ କରିବା ମୋର ଉଦ୍ଦେଶ୍ୟ ନୁହେଁ । ଆମ ଲଢ଼େଇ ଓ ତାଙ୍କ ଲଢ଼େଇରେ ତାରତମ୍ୟ ଏହା, ଆମକୁ ପୁଣି ସତ୍ୟାଗ୍ରହ କରିବାକୁ ପଡ଼ିବ ତ ତାଙ୍କ ଧର୍ମଘଟ ପରିଣାମରେ କରାଯିବ ।" ସତ୍ୟାଗ୍ରହୀଙ୍କର ବିଚାର ଓ ବିନୟର ବଡ଼ ପ୍ରଭାବ ପଡ଼ିଥିଲା । ସରକାର ଲୋକେ ବି ବଡ଼ ଅଡୁଆରେ ପଡ଼ିଥିଲେ । ସେନାପତି ସ୍ମଟ୍ସ ସେତେବେଳର ସରକାରୀ ବଡ଼ କର୍ତ୍ତା, ସେ ଏହି ମର୍ମରେ ମତ ପ୍ରକାଶ କରିଥିଲେ, 'ଆପଣମାନେ ତ ଶତ୍ରୁଙ୍କୁ ଦୁଃଖ ଦେବାକୁ ଚାହୁଁ ନାହାନ୍ତି, ନିଜେ ଦୁଃଖ ସହି ଜିତିବାକୁ ଚାହୁଁଛନ୍ତି । ବିବେକ ମର୍ଯ୍ୟାଦାକୁ ତିଳେହେଲେ ଛାଡ଼ୁ ନାହାନ୍ତି । ଆମେ ଆଉ କଣ କରିବା ?"

ସତ୍ୟାଗ୍ରହୀଙ୍କର ଭଦ୍ରତାର ଏହା ପ୍ରଥମ ଉଦାହରଣ ନ ଥିଲା । କୁଲିମାନେ ଥରେ ଆଖୁକ୍ଷେତରେ ଆଖୁକାଟି ପକାଇ ଦେଇ ଧର୍ମଘଟରେ ଯୋଗ ଦେଇଥିଲେ । ଆଖୁକୁ ବିଲରୁ ନେଇ ଉପଯୁକ୍ତ ସ୍ଥାନରେ ନ ରଖିଲେ ମାଲିକର ବହୁତ କ୍ଷତି ହେବ, ସେଥିପାଇଁ

୧୫୦୦ କୁଲି ଯୋଗାଇ ସେ କାମଟି ସାରିଦେଇ ଆସିଥିଲେ । ପୁଣି, ଡର୍ବାନ ମ୍ୟୁନିସିପାଲଟିର କୁଲିମାନେ ଯେତେବେଳେ ହରତାଳ କଲେ, ସେତେବେଳେ ମେହେନ୍ତର ଓ ଡାକ୍ତରଖାନାର ସେବକମାନଙ୍କୁ ଫେରାଇ ପଠାଯାଇଥିଲା ।

କ୍ରମେ ଏହିପରି ଏକ ସାଲିସର ବାଟ ଫିଟିଗଲା ଏବଂ ବହୁ ଚିଠିପତ୍ର ଓ ବାଦାନୁବାଦ ପରେ ଏକ ରଫା ହେଲା । ୧୯୧୪ ଜୁନ୍‌ମାସରେ ସତ୍ୟାଗ୍ରହର ଜୟ ହେଲା । ସରକାର ଏକ ନୂଆ ଆଇନକରି ବିବାହ ସମ୍ବନ୍ଧୀୟ ଆଇନ ପ୍ରଭୃତି ବଦଳାଇ ଦେଲେ । ୪୫ ଟଙ୍କିଆ କର ମଧ୍ୟ ଉଠିଗଲା ।

( ୧୫ )

ସତ୍ୟାଗ୍ରହ ସଫଳ ବେଳକୁ ଗୋଖେଲ ବିଲାତରେ ଥାନ୍ତି ବିଲାତବାଟେ ଭାରତକୁ ଫେରିବା ପାଇଁ ଗୋଖେଲ ଗାନ୍ଧୀଙ୍କୁ ଲେଖିଥିଲେ । ୧୯୧୪ ଜୁଲାଇ ମାସରେ ଗାନ୍ଧୀ ସସ୍ତ୍ରୀକ ବିଲାତ ଯାତ୍ରା କରିଥିଲେ ଏବଂ ସେଠାରେ ଅଗଷ୍ଟ ୬ ତାରିଖରେ ପହଞ୍ଚିଥିଲେ । ସେତେବେଳକୁ ୧୯୧୪ ର ମହାଯୁଦ୍ଧ ଆରମ୍ଭ ହୋଇ ଯାଇଥାଏ । ତେଣୁ ଗୋଖେଲ ଫ୍ରାନ୍‌ସରେ ଅଟକି ଯାଇଥାନ୍ତି । ଏଣେ ବିଲାତରେ ପହଞ୍ଚି ଗାନ୍ଧୀ ଟିକିଏ ବେମାର ପଡ଼ିଗଲେ । କାରଣ, ଦକ୍ଷିଣ ଆଫ୍ରିକାରେ ସେଠା ଆଶ୍ରମର ଲୋକଙ୍କପାଇଁ ଦୁଇ ଥର ଉପବାସ କରି ବଡ଼ ଦୁର୍ବଳ ହୋଇ ପଡ଼ିଥିଲେ ଏବଂ ତା ସଙ୍ଗେ ସଙ୍ଗେ ଜାହାଜ ଯାତ୍ରା ପଡ଼ିବାରୁ ତାଙ୍କ ଦେହ ବେଶୀ ଖରାପ ହୋଇ ଯାଇଥିଲା । ୧୯୧୪ ଶେଷ ପର୍ଯ୍ୟନ୍ତ ସେ ବିଲାତରେ ଅଟକି ଯାଇଥିଲେ । ବିଲାତରେ ସେ କେତେଦିନ ଚୁପ୍ ହୋଇ ନ ବସି ଯୁଦ୍ଧ ପାଇଁ ସ୍ୱେଚ୍ଛାସେବକ ସଂଗ୍ରହ କରିଥିଲେ ।

ଭାରତକୁ ଫେରି ଗୋଖେଲଙ୍କ ଆଶ୍ରୟରେ ରହି ଦେଶ ସେବା କରିବେ ବୋଲି ଗାନ୍ଧୀ ମନରେ ବହୁତ ଆଶା ବାନ୍ଧିଥିଲେ । କିନ୍ତୁ ଦୁର୍ଭାଗ୍ୟକ୍ରମେ ଭାରତରେ ପହଞ୍ଚିବାର ଅଳ୍ପଦିନ ଭିତରେ ଗୋଖେଲଙ୍କ ଦେହତ୍ୟାଗ ଘଟିଥିଲା ।

ଦକ୍ଷିଣଅଫ୍ରିକାରୁ ବିଲାତବାଟେ ଭାରତକୁ ଫେରୁ ଫେରୁ ଗାନ୍ଧୀ ସେହି ଜାହାଜରେ ଭାରତବର୍ଷର ବାତାବରଣର ଗନ୍ଧ ଟିକିଏ ଟିକିଏ ପାଉଥିଲେ । ସେ ଜାହାଜରେ ଅନେକ ସାହେବ ଥାନ୍ତି । କିନ୍ତୁ ତାଙ୍କ ଚଳଣିରେ ଓ ଭାରତୀୟ ଯାତ୍ରୀଙ୍କ ପ୍ରତି ତାଙ୍କର ବ୍ୟବହାର ଏକଦମ୍ ଭିନ୍ନ ଜଣା ପଡ଼ୁଥିଲା । ଦକ୍ଷିଣ ଅଫ୍ରିକାରୁ ବିଲାତ ଯାଉଥିବା ଜାହାଜମାନଙ୍କରେ ସାହେବମାନଙ୍କର ଏ ଭଳି ବ୍ୟବହାର ଦେଖା ଯାଉ ନ ଥିଲା । ଭାରତୀୟମାନେ ପରାଧୀନ, ଇଂରେଜମାନେ ତାଙ୍କର ଶାସକ, ସ୍ୱଭାବତଃ ଏହି କାରଣରୁ ଇଂରେଜମାନଙ୍କ ମନରେ ଟିକିଏ ଅହଂକାର ଓ ଭାରତବାସୀଙ୍କ ମନରେ ଟିକିଏ ଦୈନ୍ୟଭାବ ଜନ୍ମୁଥିଲା ବୋଲି ଗାନ୍ଧୀଙ୍କୁ ଜଣାପଡ଼ୁଥିଲା ।

ଭାରତକୁ ଫେରି ଗାନ୍ଧୀ କଣ କରିବେ ବୋଲି ମନରେ ଯାହା ପାଞ୍ଚି କରିଥିଲେ ତାହା ସେ ୧୯୪୩ ଉପବାସ ବେଳେ ବଡ଼ଲାଟଙ୍କୁ ଦେଇଥିବା ଚିଠିରେ ଅଳ୍ପ ଦୁଇ ଧାଡ଼ିରେ ଲେଖିଛନ୍ତି— "ଆପଣ ଜାଣନ୍ତି ମୁଁ ୧୯୧୪ ଶେଷକୁ ଦକ୍ଷିଣ ଅଫ୍ରିକାରୁ ଭାରତକୁ ଫେରିଲି, ସେତେବେଳେ ମୁଁ ଜୀବନରେ ଗୋଟିଏ ଲକ୍ଷ୍ୟ ନେଇ ଆସିଥିଲି । ୧୯୦୬ରେ ସେ ଲକ୍ଷ୍ୟ ମୋ ହୃଦୟରେ ପ୍ରଥମେ ପ୍ରକଟ ହୋଇଥିଲା । ସେ ଲକ୍ଷ୍ୟ ହେଉଛି—'ଜୀବନର ସମସ୍ତ କ୍ଷେତ୍ରରେ ମିଥ୍ୟା ଓ ହିଂସା ପରିବର୍ତ୍ତରେ ସତ୍ୟ ଓ ଅହିଂସାର ପ୍ରଚାର କରିବା' ।"

ଭାରତରେ ପହଞ୍ଚିଲା ବେଳକୁ ଗାନ୍ଧୀଙ୍କୁ ଅଭ୍ୟର୍ଥନା କରିବା ପାଇଁ ବମ୍ବେଠାରେ ଗୋଟିଏ ଦୁଇଟି ସଭା ହୋଇଥିଲା । ସେଠାରେ ଗାନ୍ଧୀଙ୍କୁ କିପରି ଗୋଟିଏ ଗୋଟିଏ ଛୋଟିଆ ସତ୍ୟାଗ୍ରହ କରିବାକୁ ପଡ଼ିଥିଲା ତାହା ସେ ନିଜେ ବର୍ଣ୍ଣନା କରିଛନ୍ତି, "ଶ୍ରୀ ଜାହାଙ୍ଗୀର ପେଟିଟ୍‌ଙ୍କ ଘରେ ଯେ ନିମନ୍ତ୍ରଣ ହୋଇଥିଲା, ସେଠାରେ ଗୁଜୁରାଟୀ ଭାଷାରେ କହିବାକୁ ମୋର ସାହସ ହୋଇ ନ ଥିଲା । ମୁଁ ତ ଜୀବନର ପାଳେ ଗିରମିଟିଆ କୁଲିଙ୍କ ସଙ୍ଗେ କଟେଇ ଆସିଥାଏ, ତେଣୁ ପେଟିଟ୍‌ଙ୍କ ଘରର ଚକ୍‌ମକ୍‌, ଝଲ୍‌ମଲ୍‌ ଦେଖି ମୁଁ ଆପଣାକୁ ପୁରା ଏକ ମଫସଲିଆ ବୋଲି ମନେ କରୁଥାଏ । ସେତେବେଳକୁ ମୁଁ ଧୋତି, କୁର୍ତ୍ତା, ପଗଡ଼ି ପିନ୍ଧୁଥାଏ, ମୋର ଏବେକାର ପୋଷାକଠାରୁ ଢେର୍ ସଭ୍ୟ ଦିଶୁଥାଏ ସତ କିନ୍ତୁ ସେଠା ଝଲମଲ୍ ଆଗରେ ମୁଁ ଅବାକାବା ହୋଇଯାଉଥାଏ । ........ଏହାପରେ ଆଉ ଗୋଟିଏ ଅଭ୍ୟର୍ଥନା ଗୁଜୁରାଟୀ ଭାଇମାନଙ୍କ ତରଫରୁ ହୋଇଥିଲା । ଜିନ୍ନା ସାହେବ ସେଠି ଉପସ୍ଥିତ ଥିଲେ, ସମ୍ଭବତଃ ସେଠି ସଭାପତି ହୋଇଥିଲେ, ମୋର ଠିକ୍ ମନେ ନାହିଁ । ସେ ଇଂରାଜୀରେ ଗୋଟିଏ ସୁନ୍ଦର ବକ୍ତୃତା ଦେଇଥିଲେ । ମୋ ପାଳି ପଡ଼ିଲା । ଗୁଜୁରାଟୀଙ୍କ ସଭାରେ ଇଂରାଜୀରେ କହିବା ବିରୁଦ୍ଧରେ ମୋର ନମ୍ର ପ୍ରତିବାଦ ଜଣାଇ ଓ ହିନ୍ଦ ଗୁଜୁରାଟୀ ପ୍ରତି ମୋର ପକ୍ଷପାତିତା ଜଣାଇ ମୁଁ ଗୁଜୁରାଟୀ ଭାଷାରେ ଦିପଦ ଧନ୍ୟବାଦ ଦେଇଥିଲି । ମନରେ ଟିକିଏ ଦ୍ୱିଧା କରି ମୁଁ ଏତିକ କରୁଥାଏ । ନୂଆ ଲୋକ ବହୁକାଳ ପରେ ଦେଶକୁ ଫେରୁଛି, ସେଠାକାର ପ୍ରଚଳିତ ପ୍ରଥା ବିରୁଦ୍ଧରେ ନୂଆ କଥାଟିଏ କଲେ କାଳେ ମୋତେ ଅଭଦ୍ର ବିଚାରୁଥିବେ, ମନରେ ଏ ଡର ହେଉଥାଏ । ଯାହାହେଉ ମୁଁ ଗୁଜୁରାଟୀରେ କହିବାକୁ ଜିଦ୍ ଧରିବାରୁ କେହି କିଛି ଅନ୍ୟଥା ଭାବି

ନ ଥିଲେ । ଏହା ଦେଖି ମୋର ଆନନ୍ଦ ହୋଇଥିଲା । ମୋର ପ୍ରତିବାଦଗୁଡ଼ାକୁ ସମସ୍ତେ ମାନି ନେବା ପରି ଲାଗିଥିଲା । ଫଳରେ ମୋର ସାହସ ବଢ଼ିଥିଲା ଏବଂ ଦେଶବାସୀଙ୍କ ଆଗରେ ମୋର ନୂଆ ନୂଆ ଚିନ୍ତାଧାରା ବାଢ଼ିବାରେ କଷ୍ଟ ହେବ ନାହିଁ ବୋଲି ମନରେ ଆଶା ମଧ୍ୟ ହୋଇଥିଲା ।"

ଅଳ୍ପଦିନ ଭିତରେ ଗାନ୍ଧୀ ଆପଣା ପୋଷାକକୁ ପୁଣି ବଦଳେଇ ଦେଲେ । ଗୁଜୁରାଟି ପଗଡ଼ି ଓ ଚୁଡ଼ିଦାରକୁ ଛାଡ଼ି ଖଣ୍ଡିଏ ଆଠ, ଦଶ ଅଣିଆ କାଶ୍ମୀର ଟୋପି କିଣି ମୁଣ୍ଡରେ ଲଗେଇଲେ । ଦକ୍ଷିଣ ଆଫ୍ରିକାରେ ରେଳରେ ତୃତୀୟ ଶ୍ରେଣୀ ଡବାରେ ଯିବା ଆସିବା କରୁଥିଲେ । ଭାରତରେ ମଧ୍ୟ ସେହି ଅଭ୍ୟାସ ବଜାୟ ରଖିଥିଲେ । ଗରିବ ଲୋକ ଭଳି ଦେଖାଯିବେ ବୋଲି ପୋଷାକକୁ ବଦଳେଇ ଥିଲେ । ତାଙ୍କର ସ୍ପଷ୍ଟ ମତ—"ଯେ ପର୍ଯ୍ୟନ୍ତ ଶିକ୍ଷିତ ଓ ଧନୀ ଲୋକେ ସ୍ୱେଚ୍ଛାରେ ଦାରିଦ୍ର୍ୟ ଗ୍ରହଣ କରି, ତୃତୀୟ ଶ୍ରେଣୀର ଯାତ୍ରୀ ନ ହୋଇଛନ୍ତି, ଗରିବଙ୍କୁ ଯେ ସୁବିଧା ମିଳୁ ନାହିଁ ସେ ସବୁ ଭୋଗ କରିବାକୁ ମନା ନ କରିଛନ୍ତି ଏବଂ ରେଳ କର୍ମଚାରୀଙ୍କର ବା କୋମ୍ପାନୀର ଅନ୍ୟାୟ ବା ଅନ୍ୟାୟ ବ୍ୟବହାର ବିରୁଦ୍ଧରେ ନ ଲଢ଼ୁଛନ୍ତି, ସେତେବେଳ ଯାଏ ତୃତୀୟ ଶ୍ରେଣୀ ରେଳଯାତ୍ରୀଙ୍କ ଦୁଃଖ ଯିବ ନାହିଁ ।"

( ୧୭ )

ଏହି ସମୟରେ କାଠିଆୱାଡ଼ରେ ଭିରମ୍‌ଗାଁ ଠାରେ ଏକ ଶୁଳ୍କ ଆଇନରେ ଲୋକଙ୍କ ଉପରେ ବଡ଼ ଜୁଲମ ଚାଲିଥାଏ । ତାହା ବିରୁଦ୍ଧରେ କିଛି କରିବା ପାଇଁ ସେଠାକାର ଲୋକେ ଗାନ୍ଧୀଙ୍କୁ ଧରି

ବସିଥିଲେ । ସେମାନଙ୍କ ଭିତରେ ଅନେକ ଉତ୍ସାହୀ ଯୁବକ ଥାନ୍ତି । ସେମାନଙ୍କ ଅଗ୍ରଣୀ ଥିଲେ ଏକ ଯୁବକ ଦରଜୀ, ମୋତିଲାଲ । ସେ ପାଠୁଆ ନ ଥିଲେ । ଦରଜୀ କାମରୁ ମାସକୁ ପନ୍ଦର ଟଙ୍କା ରୋଜଗାର କରି ବାକୀ ସମୟତକ ଦେଶକାମରେ ଲଗାଉ ଥିଲେ । ଶିକ୍ଷିତ ଯୁବକମାନେ ମଧ୍ୟ ତାଙ୍କ ନେତୃତ୍ୱ ଗ୍ରହଣ କରି କାମ କରିବାକୁ ବାଧ୍ୟ ହୋଇଥିଲେ । ସେହି ମୋତିଲାଲ ଏ ଶୁଳ୍କ ବିଷୟ ପ୍ରତି ଦୃଷ୍ଟି ଆକର୍ଷିତ କରିଥିଲେ ।

ଗାନ୍ଧୀ ଏ ବିଷୟ ନେଇ ବମ୍ବେଇ ସରକାରଙ୍କ ଠାରୁ ଆରମ୍ଭ କରି ଭାରତ ସରକାର ତଥା ବଡ଼ଲାଟଙ୍କ ଯାଏ ସମସ୍ତଙ୍କ ସହିତ ଦେଖା କରିଥିଲେ । ବଡ଼ଲାଟ ଶୀଘ୍ର ଏ ଶୁଳ୍କକୁ ଉଠାଇ ଦେଇଥିଲେ । ଗାନ୍ଧି ଏହାକୁ ଏକ ସତ୍ୟାଗ୍ରହ ବୋଲି ମନେ କରନ୍ତି । କାରଣ ଏହି ସମ୍ପର୍କରେ ଗୋଟିଏ ସଭାରେ ବକ୍ତୃତାରେ ସତ୍ୟାଗ୍ରହ କଥା କହିଥିବାରୁ ବମ୍ବେ ସରକାରଙ୍କ ସେକ୍ରେଟେରୀ ଦେଖା ହେଲା ବେଳେ ଗାନ୍ଧୀଙ୍କୁ ପଚାରି ଥିଲେ "ତମେ କଣ ସତ୍ୟାଗ୍ରହର ଧମକ ଦେଉଛ ? ତମେ କଣ ବିଚାରୁଛ ଏତେ ବଡ଼ ସରକାର ଏ ଧମକରେ ଡରିଯିବ ?" ଗାନ୍ଧୀ ଜବାବ ଦେଇଥିଲେ "ଏହା ଧମକ ନୁହେଁ; ଏହା ଲୋକ ଶିକ୍ଷା । ଲୋକଙ୍କ ଦୁଃଖ ଦୂର କରିବାକୁ ଯେତେ ନ୍ୟାୟସଙ୍ଗତ ବାଟ ଅଛି, ଲୋକଙ୍କୁ ଜଣାଇ ଦେବା ମୋର କର୍ତ୍ତବ୍ୟ । ଯେ ଜାତି ସ୍ୱାଧୀନ ହେବାକୁ ଚାହେ; ସ୍ୱାଧୀନତା ପାଇଁ ସବୁ ବାଟ ସହିତ ସେ ପରିଚିତ ହେବା ଉଚିତ । ସାଧାରଣତଃ ଶେଷ ଅସ୍ତ୍ର ସ୍ୱରୂପ ହିଂସା ପ୍ରୟୋଗ କରାଯାଇଥାଏ । କିନ୍ତୁ ସତ୍ୟାଗ୍ରହ ଏକ ପୁରାପୂରି ଅହିଂସା ଅସ୍ତ୍ର । ମୁଁ ଜାଣେ ବ୍ରିଟିଶ ସରକାର ଏକ ପ୍ରବଳ ପରାକ୍ରାନ୍ତ ସରକାର, ମାତ୍ର ମୋର ଛିଲେ ହେଲେ ସନ୍ଦେହ ନାହିଁ ଯେ ସତ୍ୟାଗ୍ରହ ଏକ ଅମୋଘ ଅସ୍ତ୍ର ।" ସେ ସାହେବ ଏତେକ ଶୁଣି ବିଶ୍ୱାସ ନ କଲା ଭଳି ମୁଣ୍ଡ ହଲେଇ କହିଥିଲେ "ହଉ ଦେଖିବା ।"

୧୯୧୫ ମେ ମାସ ତା ୨୫ ରିଖ ଦିନ ଗାନ୍ଧୀ ଅହମଦାବାଦ ନିକଟସ୍ଥ ସାବରମତୀ ଗ୍ରାମରେ ସତ୍ୟାଗ୍ରହାଶ୍ରମ ପ୍ରତିଷ୍ଠା କରିଥିଲେ । ଆଶ୍ରମ ପାଇଁ ଏ ନାଁଟି ପସନ୍ଦ କରିବାର କାରଣ ଗାନ୍ଧୀ ନିଜେ ଲେଖିଛନ୍ତି, "ଆମର ଧର୍ମ ଥିଲା ସତ୍ୟର ଉପାସନା ଏବଂ ଆମର କାମ ଥିଲା ସତ୍ୟର ଅନୁସନ୍ଧାନ । ମୁଁ ଦକ୍ଷିଣ ଆଫ୍ରିକାରେ ଯେଉଁ ଉପାୟରେ ପରୀକ୍ଷା କରି ଆସିଥିଲି, ତାହାକୁ ଭାରତବାସୀଙ୍କ ଆଗରେ ପରୀକ୍ଷା କରି ଦେଖାଇବାର ଇଚ୍ଛା ଥିଲା । ତେଣୁ ମୁଁ ଓ ଦକ୍ଷିଣ ଆଫ୍ରିକାରୁ ଆସିଥିବା ମୋର ସାଥୀମାନେ ସତ୍ୟାଗ୍ରହାଶ୍ରମ ନାଁଟି ପସନ୍ଦ କରିଥିଲେ । ଆମର ଲକ୍ଷ୍ୟ ଓ ଆମର ସେବାର ମାର୍ଗ, ଏ ଦୁଇ କଥା ଏ ନାଁରୁ ବୁଝା ପଡ଼ୁଥିଲା ।"

ଅହମଦାବାଦ ନିକଟରେ ଆଶ୍ରମ ବସାଇବାର କାରଣ ଥିଲା, ଧନୀବନ୍ଧୁମାନଙ୍କଠାରୁ ସହଜରେ ଅର୍ଥ ସାହାଯ୍ୟ ମିଳିଥାନ୍ତା । ଗାନ୍ଧି କିନ୍ତୁ ମୂଳରୁ ଜଣାଇ ଦେଇଥିଲେ ଯେ ସୁବିଧା ଓ ସୁଯୋଗ ମିଳିଲେ ସେ ଆଶ୍ରମରେ ଜଣେ ହରିଜନ କର୍ମୀଙ୍କୁ ସ୍ଥାନ ଦେବେ । ଅଳ୍ପ କେତେଟା ମାସ ଯାଇଛି କି ନାହିଁ ଠକ୍କର ବାପା ଗୋଟିଏ ହରିଜନ ପରିବାରକୁ ଆଶ୍ରମକୁ ପଠାଇ ଦେଇଥିଲେ ।

ଯେଉଁ ବନ୍ଧୁମାନେ ଏଙ୍କୁ ସାହାଯ୍ୟ ଦେଉଥିଲେ ତାଙ୍କ ଭିତରେ ଚହଳ ପଡ଼ିଯାଇ ଥିଲା ଓ ଏଙ୍କୁ ସାହାଯ୍ୟ ବନ୍ଦ ହୋଇ ଯାଇଥିଲା । ଆଶ୍ରମର କୂଅଟି ଇଜମାଲ ଥାଏ; ସେ ଘରର ମାଲିକ ନିକଟରେ ରହୁଥାନ୍ତି । ତାଙ୍କ ଲୋକ ବି ସେ କୂଅରୁ ପାଣି ନିଏ । ସେ ଲୋକ ପାଣି ନଠାଏ ସେ ହରିଜନ କର୍ମୀଟିକୁ ଗାଳିଦେବାକୁ ଆରମ୍ଭ କରିଥିଲା । ଏଣେ ଗାନ୍ଧୀ କହୁଥାନ୍ତି ଯେ ସବୁ ଗାଳିମାଡ଼ ସହି ଆଶ୍ରମ ଲୋକେ ପାଣି ନେଉଥିବେ ଏବଂ କାହାକୁ କିଛି କହିବେ ନାହିଁ । ସତକୁ ସତ ସେ ଲୋକଟି ଯେତେବେଳେ ଦେଖିଲା ଯେ ତା'ଗାଳି ବଦଳରେ

ତାଙ୍କୁ କେହି ଗାଳି ଦେଇ ନାହାନ୍ତି ତାଙ୍କୁ ଭାରି ଲାଜ ମାଡ଼ିଥିଲା ଏବଂ ସେ ଅଉ କାହାକୁ ବିରକ୍ତ ନ କରି ଭୂମି ପଡ଼ିଥିଲା ।

ଟଙ୍କା ପଇସା ସାହାଯ୍ୟ ବନ୍ଦ ସାଙ୍ଗେ ସାଙ୍ଗେ ସମାଜ ବାସନ୍ଦ ଜନରବ ବି ଶୁଣା ଯାଇଥିଲା । ଗାନ୍ଧୀ ସେତେବେଳେ ସାଥୀମାନଙ୍କୁ ପରାମର୍ଶ ଦେଇଥିଲେ "ଯେତେବେଳେ କୌଣସି ସୁବିଧା ଏଠି ମିଳିବ ନାହିଁ, ଆମେ ଯାଇଁ ଅସ୍ପୃଶ୍ୟ ବସ୍ତିରେ ରହିବା, ସେଠି ମୂଲ ଲାଗି ଖାଇବା କିନ୍ତୁ ଅହମଦାବାଦ ଛାଡ଼ିଯିବା ନାହିଁ ।" ଭଗବାନଙ୍କର ସାହାଯ୍ୟ ଆଶ୍ଚର୍ଯ୍ୟ ରକମ ମିଳେ ବୋଲି ଗାନ୍ଧୀଙ୍କର ଦୃଢ଼ ବିଶ୍ୱାସ ଥାଏ । ହଠାତ୍ ଏକ ଅଜଣା ଅଚିହ୍ନା ଲୋକଙ୍କଠାରୁ ଦିନେ ତେରହଜାର ଟଙ୍କା ସାହାଯ୍ୟ ମିଳିଯାଇଥିଲା । କ୍ରମେ କ୍ରମେ ସେଠା ଧନୀ ବନ୍ଧୁମାନେ ପୁଣି ଆଶ୍ରମକୁ ସାହାଯ୍ୟ କରିଥିଲେ । ଏହିପରି ଭାବରେ ଆଶ୍ରମର ଅଗ୍ନିପରୀକ୍ଷା ହୋଇ ଯାଇଥିଲା ।

( ୧୭ )

୧୯୧୫ ଏପ୍ରିଲ ମାସରେ ଗାନ୍ଧୀ ମାନ୍ଦ୍ରାଜ ଯାଇଥିଲେ । ଦକ୍ଷିଣ ଆଫ୍ରିକାରୁ ଫେରିବା ପରେ ଏହା ତାଙ୍କର ପ୍ରଥମ ମାନ୍ଦ୍ରାଜ ଗସ୍ତ । ତେଣୁ ତାଙ୍କୁ ପାଛୋଟି ନେବାକୁ ତାଙ୍କର ବନ୍ଧୁମାନେ ଓ ଅନ୍ୟ କେତେକ ମାନ୍ୟ ଗଣ୍ୟ ବ୍ୟକ୍ତି ଷ୍ଟେସନକୁ ଆସିଥାନ୍ତି । ଶ୍ରୀଯୁକ୍ତ ନଟେଶନ୍‌ଙ୍କ ଘରେ ରହିବାର ସ୍ଥିର ହୋଇଥାଏ । ନଟେଶନ୍ ମହାଶୟ ଲେଖିଛନ୍ତି, "ଆମେ ରେଲ୍ ଗାଡ଼ିରେ ଗାନ୍ଧୀଙ୍କୁ ଏଠି ସେଠି ଖୋଜୁଥିଁ; ହଠାତ୍ ଦେଖିଲୁ ଯେ ସେ ସସ୍ତ୍ରୀକ ତୃତୀୟ ଶ୍ରେଣୀ ଡବାରୁ ଓହ୍ଲାଉଛନ୍ତି । ଦୁହେଁ ଆପଣା ଆପଣା ବୁଜୁଳାଟିମାନ ଧରିଥାନ୍ତି; ସାଧାରଣ ଗୃହୀଙ୍କ ଭଳି ଦିଶୁଥାନ୍ତି, ମୋର ଅତିଥି ହେଲେ । ମୁଁ ତାଙ୍କପାଇଁ ଦରଟି ବଙ୍ଗଳା ଘର

ସଜେଇ ରଖିଥିଲ—ଖଟ, ଟେବୁଲ, ଚୌକୀ ପ୍ରଭୃତି ରଖେଇଥିଲ । ସେ ଘରକୁ ଦେଖି ଠିକେ ଅନେଇଲେ—ଠୋ, ଠୋ କରି ହସି ଉଠିଥିଲେ ଏବଂ ସବୁ ଖଟ, ଟେବୁଲ୍ ଗଦୀ ପ୍ରଭୃତି କାଢ଼ି ଦେବାକୁ କହୁଥିଲେ ।

ମାନ୍ଦ୍ରାଜରେ ଏକ ବଡ଼ ସଭା ହୋଇଥିଲା । ସ୍ୱର୍ଗୀୟ ଡାକ୍ତର ସୁବ୍ରହ୍ମଣ୍ୟ ଅୟ୍ୟାର ସଭାପତି ହୋଇଥିଲେ । ଗାନ୍ଧୀଙ୍କୁ ଏକ ଅଭିନନ୍ଦନ ଦିଆଯାଇଥିଲା । ତାର ଉତ୍ତରରେ ଗାନ୍ଧୀ କହୁଥିଲେ, "ଏ ଅଭିନନ୍ଦନରେ ଆମ ପାଇଁ ଯେ ଭାଷା ବ୍ୟବହାର ହୋଇଛି, ତା'ର ଦଶ ଭାଗରୁ ଭାଗକ ପାଇଁ ଯଦି ଆମେ ଯୋଗ୍ୟ ହୋଇଥାଉଁ ତେବେ ଦକ୍ଷିଣ ଆଫ୍ରିକାରେ ଯେଉଁମାନେ ମରିଛନ୍ତି, ଯେ ସେଠା ଦୁଃଖୀ ଦେଶବାସୀଙ୍କ ପାଇଁ ଆପଣା କର୍ତ୍ତବ୍ୟ ପୂରା କରିଦେଇଛନ୍ତି ସେମାନଙ୍କ ପାଇଁ କି ଭାଷା ପ୍ରୟୋଗ କରିବେ ? ସେହି ଯେ ନାଗପ୍ପନ୍, ନାରାୟଣସ୍ୱାମୀ, ସତର ଅଠର ବର୍ଷର ଟୋକାମାନେ ମାତୃଭୂମିର ଇଜ୍ଜତ ପାଇଁ ମରିଛନ୍ତି, ତାଙ୍କ ପାଇଁ କି ଭାଷା ବ୍ୟବହାର କରିବେ ? ସେ ବୀର ରମଣୀ ଭାଲିୟାମା ପାଇଁ କଣ କହିବେ ? ................ଆପଣ କହୁଛନ୍ତି, ମୁଁ ଏ ମାନ୍ଦ୍ରାଜୀ ମହାପୁରୁଷ ଓ ମହୀୟସୀ ରମଣୀମାନଙ୍କୁ ଅନୁପ୍ରାଣିତ କରିଥିଲି ମାତ୍ର ତାହା ଠିକ୍ ନୁହଁ । ବରଂ ଏହି ସରଳମନା ଲୋକେ, ଯେ ବିଶ୍ୱାସରେ କାମ କରି ଯାଉଥିଲେ, କୌଣସି ପ୍ରତିଦାନ ବା ପୁରସ୍କାରର ଆଶା ରଖୁ ନ ଥିଲେ, ସେହିମାନେ ଓଲଟା ମୋତେ ଅନୁପ୍ରାଣିତ କରିଥିଲେ । ମତେ ଅବଶ୍ୟକୀୟ ଉତ୍ତେଜନା ଦେଉଥିଲେ ଏବଂ ଆପଣାର ମହାତ୍ୟାଗ ନିରାଟ ବିଶ୍ୱାସ ଏବଂ ପ୍ରଭୁଙ୍କ ଠାରେ ଅସୀମ ଭରସା ଦ୍ୱାରା ମତେ ଏହି କାମରେ ବାଟ କଢ଼େଇଥିଲେ ।"

ସେତିକି ବେଳରେ ଆଉ ଏକ ଘଟଣା । ଶ୍ରୀ ନଟେସନ୍‌ଙ୍କ ଘରେ ରହୁଥିବା ବେଳେ ଦିନେ ଗାନ୍ଧୀ କେଉଁଠୁ ଗୋଟିଏ ଅସ୍ପୃଶ୍ୟ ପଞ୍ଚମ୍

ପିଲା ସାଙ୍ଗରେ ନେଇ ଆସିଲେ ଏବଂ ତାକୁ ଆପଣା ସାଙ୍ଗରେ ରଖିଲେ । ନଟେସନ୍‌ଙ୍କ ମା ବଡ଼ ରକ୍ଷଣଶୀଳା, ସେ ଭାରି ଡରିଗଲେ । ନଟେସନ ଛୁଆନ୍ତା ମାନନ୍ତି ନାହିଁ ସତ, ଗାନ୍ଧୀଙ୍କ ଆଦର୍ଶକୁ ସମ୍ମାନ କରନ୍ତି କିନ୍ତୁ ମା ପ୍ରତି ତେଣେ ସ୍ନେହ ଓ ଭକ୍ତି ଥାଏ । କଅଣ କରିବେ ? ବଡ଼ ଅଡ଼ୁଆରେ ପଡ଼ିଗଲେ । କିନ୍ତୁ ଗାନ୍ଧୀ ଏ ଅଚଳ ଅବସ୍ଥାର ସମାଧାନ ନିଜେ କରିବାକୁ ଲାଗି ଯାଇଥିଲେ । ସେ ଟୋକା ନାଇକର୍ ବେମାର ପଡ଼ିଗଲା; ଗାନ୍ଧୀ ନିଜେ ତାର ସେବା ଶୁଶ୍ରୂଷା କରି ତାକୁ ରୋଗ ମୁକ୍ତ କଲେ । ଏଥିରେ ନଟେସନ୍‌ଙ୍କ ମାଙ୍କର ମନ ତରଳି ଯାଇଥିଲା । ଗାନ୍ଧୀ ସେ ସମ୍ବନ୍ଧରେ ଖଣ୍ଡେ ଚିଠି ନଟେସନ୍‌ଙ୍କୁ ଲେଖିଥିଲେ, "ତୁମର ମା କେଡ଼େ ଉଦାର ଆଚରଣ କଲେ ଦେଖିଲ ? ସେ ତୁମ ସଙ୍ଗେ ଯିବେଇ ପାରିବେ ନାହିଁ ବୋଲି ତୁମର ସନ୍ଦେହ ଥିଲା । ଆମେ ସଂସ୍କାରକମାନେ ଏହି ଭଳି ଅଭ୍ୟାସରେ ବୁଡ଼ି ରହିଛୁ । ଆମେ ଆପଣା ପରିବାରରେ ସଂସ୍କାର ଆରମ୍ଭ କରିବା କଥା ଭୁଲି ଯାଉ । ଏବେ ନିଜକୁ ସୁଧାରିବା କଠିନ ହୋଇପଡ଼ୁଛି ।"

ଆଉ ଦିନକର କଥା, ମାନ୍ଦ୍ରାଜରେ ସ୍ୱର୍ଗୀୟ ଜୀ. ସୁବ୍ରହ୍ମଣ୍ୟ ଆୟାର ଜଣେ ଦେଶପ୍ରେମୀ ସୁଦକ୍ଷ ସାମ୍ବାଦିକ ଥିଲେ । 'ହିନ୍ଦୁ' ଖବର କାଗଜର ସମ୍ପାଦକ ମଧ୍ୟ ଥିଲେ । ସେ ଏକ ଭୟଙ୍କର ରୋଗରେ (କୁଷ୍ଠ) ବହୁତ କଷ୍ଟ ପାଉଥିଲେ ସୁଦ୍ଧା ଦେଶପାଇଁ ଯଥାସାଧ୍ୟ କାମକରୁଥାନ୍ତି । ଗାନ୍ଧି ତାଙ୍କୁ ସଙ୍ଗୁଳିବାକୁ ଯାଇଥିଲେ । ଆୟାର ମହୋଦୟ ଗାନ୍ଧୀଙ୍କୁ ବହୁତ ପ୍ରଶଂସା କରି କହିଥିଲେ ଏବଂ ନିଜେ କରିପାରୁ ନାହାନ୍ତି ବୋଲି ଆପଣା ଭାଗ୍ୟକୁ ନିନ୍ଦ କାନ୍ଦ ପକାଉଥିଲେ । ଗାନ୍ଧୀ ତାଙ୍କୁ ବୁଝାଇ ସୁଝାଇ ସାନ୍ତ୍ୱନା ଦେଇଁ ଦେଇଁ ତାଙ୍କ

ପାଖରେ ବସି ଯାଇ ଆପଣା ଗୃଦରଦ୍ୱାନରେ ଅସ୍ପୃଶ୍ୟଙ୍କ ଦେହର ଘା ଗୁଡ଼ିକ ପୋଛି ସଫା କରିବାକୁ ଆରମ୍ଭ କଲେ । ନଟେସନ ଓ ମାନ୍ୟବର ଶାସ୍ତ୍ରୀ ମହୋଦୟ ସେତେବେଳେ ଉପସ୍ଥିତ ଥାନ୍ତି । ଏ ଦୃଶ୍ୟ ଦେଖି ସେମାନଙ୍କ ଆଖି ଛଳ ଛଳ ହୋଇ ଯାଇଥିଲା ।

ଗାନ୍ଧୀ ସସ୍ତ୍ରୀକ ନଟେସନଙ୍କ ଘରେ ରହୁଥାନ୍ତି । ନଟେସନ ସେତେବେଳେ ଲକ୍ଷ୍ୟ କଲେ ଯେ ଅନେକ ସମୟରେ ଶ୍ରୀମତୀ କସ୍ତୁରବା ବାଈଙ୍କ ମନ ଖରାପ ହେଉଥାଏ । ନଟେସନ ଏ କଥା ଗାନ୍ଧୀଙ୍କ କାନରେ ପକେଇ ଦେଇଥିଲେ । ଗାନ୍ଧୀ ଅପେକ୍ଷା ନ କରି ଜବାବ ଦେଇଥିଲେ 'ସେ ସବୁ ତାର ଆପଣା କର୍ମର ଫଳ । ନାତି ନାତୁଣୀଙ୍କୁ ଦାମିକା ଲୁଗାପଟା ଦେବ ବୋଲି ପଇସା ମାଗୁଛି ।' ନଟେସନ୍ ଥଟ୍ଟା କରି କହିଲେ 'ତମେ ବଡ଼ ନିଷ୍ଠୁର ସ୍ୱାମୀ' । ତୁରନ୍ତ ଗାନ୍ଧୀଙ୍କ ଜବାବ ମିଳିଥିଲା, 'ଦେଖ, ତମେ ମୋ ହିତ ବଡ଼ କଡ଼ା କଥା କହୁଛ । ମୁଁ ଯଦି ଏ ସବୁ ବିଷୟରେ ତା କଥାରେ ରାଜି ହୋଇଯିବି, ତେବେ ମୋର ନୀତି ଛାଡ଼ିବା କଥା ହେବ । ସେ ତ ମୋର ମତ ଗତି ଭଲକରି ଜାଣେ ଏବଂ ମୋର ଚାଲି ଚଳଣି ସେ ଦେଖୁଛି । ମୁଁ ତାକୁ ବାରମ୍ବାର କହୁଛି ଯେ ସେ ମୋ ଠାରୁ ଅଲଗା ରହୁ; ଏ ଦୁଃଖ କଷ୍ଟ ଛାଡ଼ି ତାର ପିଲା ଛୁଆଙ୍କ ସଙ୍ଗେ ଆରାମରେ ରହୁ । କିନ୍ତୁ ସେ ତ ତା କରିବ ନାହିଁ । ହିନ୍ଦୁ ସ୍ତ୍ରୀ ଭଳି ସେ ମୋ ସଙ୍ଗେ ଗୋଡ଼ଉଛି ।'

ଏହା ପରେ ଗାନ୍ଧୀ ଶ୍ରୀମତୀ ଆନିବେସାନ୍ତଙ୍କ ନିମନ୍ତ୍ରଣରେ ତାଙ୍କର କର୍ମକେନ୍ଦ୍ର ଅଡ଼ିଆର ଦେଖିବାକୁ ଯାଇଥିଲେ । ସେଠାରେ ଶ୍ରୀମତୀ ବେସାନ୍ତ ଖୁବ୍ ଆଦର ସମ୍ବର୍ଦ୍ଧନା କରିଥିଲେ । ତାଙ୍କର ରାଜପ୍ରାସାଦ ଭଳି ବଡ଼ ବଡ଼ ଘରଗୁଡ଼ିକ ବୁଲାଇ ଦେଖାଇ

ଥିଲେ, ଏବଂ ଶେଷରେ ଗୋଟିଏ ଅନ୍ତ୍ୟଜ ବିଦ୍ୟାଳୟ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଘର ବି ଦେଖାଇଥିଲେ । ସେ ଘରଟି ଅତି ସାଦାସିଧା ଥିଲା । ଅନ୍ତ୍ୟଜଙ୍କ ପାଇଁ ଏତିକ କରିବା ମଧ୍ୟ ସେ ଯୁଗରେ ନୂଆ କାମ ଥିଲା । କିନ୍ତୁ ଗାନ୍ଧୀଙ୍କୁ ଏହି ଭେଦ ଭଲ ଲାଗି ନ ଥିଲା—ଧନିଲ ଲୋକଙ୍କ ପାଇଁ ବଡ଼ ବଡ଼ କୋଠା, ଆଉ ଦଳିତଙ୍କ ପାଇଁ ଦୀନହୀନ କୁଡ଼ିଆ ! ସେ ତା' ସହିପାରି ନ ଥିଲେ । ଶେଷରେ ସେ ସେଠାରୁ ଚାଲିଯାଇ ଅନ୍ୟତ୍ର ରହିଥିଲେ ।

ମାନ୍ଦ୍ରାଜଠାରେ ଏକ ଛାତ୍ର ସଭାରେ ଗାନ୍ଧୀ ଛାତ୍ରମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ କହୁଁ କହୁଁ କହିଥିଲେ "ମୁଁ ଜାଣେ ମୋର ମତ ତମ ମନକୁ ପାଇବ ନାହିଁ । ତଥାପି ମୋ ଭିତରେ ଯାହା ମୋର ଅନ୍ତରକୁ ଘାଣ୍ଟି ପକାଉଛି ମୁଁ ତାହା ତୁମକୁ ଶୁଣାଇ ଦେବି । ତମର ଦେଶବାସୀ ଯେ କି ଆଜିକାଲିକା ଶିକ୍ଷା ପାଇ ନ ଥିଲେ, ଏ ଯୁଗର ସଭ୍ୟ ହୋଇ ନ ଥିଲେ କିନ୍ତୁ ଯାହାଙ୍କର ସେହି ପୁରୁଣା ମୁନି ଋଷିଙ୍କ ପରି ବଳ ଥିଲା, ଯେ ସେହି ମୁନି ଋଷିଙ୍କ ତପସ୍ୟାର ଉତ୍ତରାଧିକାରୀ ଥିଲେ ସେହିମାନେ ପଦେ ହେଲେ ଇଂରେଜୀ ସାହିତ୍ୟ ନ ଜାଣି, ବର୍ତ୍ତମାନ ସଭ୍ୟତାର କିଛିମାତ୍ର ଖବର ନ ରଖି, ଆପଣାର ପୂର୍ଣ୍ଣ ବିକାଶ କରି ପାରିଛନ୍ତି, ନୂଆ ବଡ଼ ହୋଇ ପାରିଛନ୍ତି; ଯାହା ଦକ୍ଷିଣ ଆଫ୍ରିକାରେ ଆମର ଅଶିକ୍ଷିତ ନିରକ୍ଷର ଭାଇମାନଙ୍କ ପକ୍ଷରେ ସମ୍ଭବ ହୋଇଛି ତାହା ଆଜି ଆମର ଏ ପୁଣ୍ୟଭୂମିରେ ତମ ପାଇଁ ମୋ ପାଇଁ ଦଶଗୁଣ ସମ୍ଭବ ହେବ । ଭଗବାନ ତମକୁ ସେ ଅଧିକାର ଦିଅନ୍ତୁ, ମୋତେ ସେ ଅଧିକାର ଦିଅନ୍ତୁ ।"

( ୧୮ )

ଗାନ୍ଧୀ ପ୍ରତିବର୍ଷ କଂଗ୍ରେସର ସାଲିଅନା ବୈଠକକୁ ଯାଉଥିଲେ । ସେଠାରେ ବିଷୟ ନିର୍ବାଚନ ସମିତିରେ ଯୋଗ ଦେଉଥାନ୍ତି କିନ୍ତୁ କିଛି କଥା କହିନ୍ତି ନାହିଁ । ଏ ହେଉଛି ୧୯୧୬ ସାଲ ପୂର୍ବର କଥା । ଥରେ ଅଧେ ଦକ୍ଷିଣ ଆଫ୍ରିକା ଆନ୍ଦୋଳନ ବେଳେ କଂଗ୍ରେସରେ ସେହି ସମ୍ବନ୍ଧରେ ସେ ପ୍ରସ୍ତାବ ଆଗତ କରିଥିଲେ ନଚେତ୍ କଂଗ୍ରେସରେ ସେ କିଛି କହୁ ନ ଥିଲେ । ଜଣେ ତାଙ୍କୁ ପଚାରିଥିଲେ 'ଆଚ୍ଛା ତୁମେ କଂଗ୍ରେସ ବିଷୟ ନିର୍ବାଚନ ସମିତିରେ ସେମିତି ଚୁପ ହୋଇ ବସି ରହ କାହିଁକି ? ଆଲୋଚନାରେ ଯୋଗ ଦିଅ ନାହିଁ କାହିଁକି ?' ଗାନ୍ଧୀ ଜବାବ ଦେଇଥିଲେ, 'ବନ୍ଧୁ ! ସତ କହୁଛି ଏ ସବୁ ସଭା ବା ଆଲୋଚନାରେ ମତେ ରସ ମିଳୁ ନାହିଁ । ଏ ସବୁ ବୁଦ୍ଧିଜୀବୀ ଲୋକଙ୍କର, ତଥା କଥିତ ପାଟୁଆ ଲୋକଙ୍କର କାଣ୍ଡ କାରଖାନା । ସାଧାରଣ ଲୋକଙ୍କୁ ଟାଣି ଆଣିବା ଭଳି ଏ ଅନୁଷ୍ଠାନରେ କିଛି ନାହିଁ । କଂଗ୍ରେସର ରୂପ ଯାହା ହେବା ଉଚିତ, ତାହା କରିବାକୁ ହେଲେ ସାଧାରଣ ଲୋକଙ୍କ ହୃଦୟ ସ୍ପର୍ଶ କଲା ଭଳି କିଛି କରିବାକୁ ହେବ ଏବଂ ଏକ ନୂଆ କାର୍ଯ୍ୟକାରୀ ଶକ୍ତି ଖେଳେଇ ଦେବାକୁ ହେବ ।'

ଭାରତର ସେତେବେଳର ରାଜନୈତିକ ଅବସ୍ଥା ସମ୍ବନ୍ଧରେ ତାଙ୍କର ମତ ଏବଂ ତାହାର ସମାଧାନ ପାଇଁ ତାଙ୍କୁ ଯେ ବାଟ ଦିଶୁଥିଲା ତାହା ସେ ୧୯୧୬ ଫେବୃୟାରୀ ମାସରେ ଏକ ବକ୍ତୃତାରେ ପ୍ରକାଶ କରିଛନ୍ତି । ମାନ୍ଦ୍ରାଜଠାରେ ପାଦ୍ରୀମାନଙ୍କ ସଭାରେ ସେ ଏ ବକ୍ତୃତା ଦେଇଥିଲେ; ବକ୍ତୃତା ବିଷୟ ଥିଲା ସ୍ୱଦେଶୀ । 'ମୁଁ ବହୁତ ଭାବି ଚିନ୍ତି ସ୍ୱଦେଶୀର ଲକ୍ଷଣ ସ୍ଥିର କରିଛି ଏବଂ ସେଥିରୁ ମୋର କହିବାର ଭାବାର୍ଥ ନେଇ ଉତ୍ତମ ବୁଝିପାରିବେ । ନିଜ ଭିତରର ଯେଉଁ ଭାବନା ଆମକୁ

ଆପଣାର ପାଖର ପରିସ୍ଥିତିରେ ବ୍ୟବହାର କରିବାକୁ ଏବଂ ଆପଣାର ଦୂରର ପରିସ୍ଥିତିର ତ୍ୟାଗ କରିବାକୁ ପ୍ରବର୍ତ୍ତାଏ ସେହି ଭାବନାକୁ ମୁଁ ସ୍ୱଦେଶୀ ଭାବନା କହେଁ । ଉଦାହରଣ ସ୍ୱରୂପ, ମୋଟାରେ ସ୍ୱଦେଶୀ ଭାବନା ଥିବାରୁ, ଧର୍ମ ବିଷୟରେ ମୁଁ ମୋର ପୂର୍ବ ପୁରୁଷଙ୍କର ଧର୍ମ ଭିତରେ ରହିବି । ତାହା କରିବା ଦ୍ୱାରା ମୁଁ ମୋର ନିକଟର ଧାର୍ମିକ ବାତାବରଣର ବ୍ୟବହାର କରିବି । ସେଥିରେ ମୁଁ ଯଦି କିଛି ଦୋଷ ଦେଖିବି ତେବେ ସେ ଦୋଷ ଦୂର କରି ଆପଣା ଧର୍ମର ସେବା କରିବି । ରାଜନୀତିରେ ମୋର ଦେଶୀ ଅନୁଷ୍ଠାନମାନଙ୍କୁ କାମରେ ଲଗେଇବା ଉଚିତ ଏବଂ ସେଥିରେ ଯାହା ତ୍ରୁଟି ଥିବ ସେ ସବୁ ଦୂର କରି ସେମାନଙ୍କର ସେବା କରିବି । ଆର୍ଥିକ କ୍ଷେତ୍ରରେ ମୋ ଆଖ ପାଖରେ ବସବାସ କରୁଥିବା ଲୋକଙ୍କର ତିଆରି ଜିନିଷ ମୁଁ ବ୍ୟବହାର କରିବି ଏବଂ ସେ ସବୁ ଧନ୍ଦାରେ ଯଦି କିଛି ତ୍ରୁଟି ଜଣା ପଡ଼ିବ ତାହା ଦୂର କରି ସେ ସବୁର ସେବା କରିବି ।'.........

ସ୍ୱଦେଶୀର ଏହି ଅର୍ଥ ବୁଝାଇ ସାରି ପରେ ରାଜନୀତି ବିଷୟରେ କହିଥିଲେ, 'ଧର୍ମର ରାଜନୀତି ସଙ୍ଗେ ସମ୍ପର୍କ ନାହିଁ, ଏ କଥା ମୁଁ ମାନେ ନାହିଁ । ଯେ ରାଜନୀତି ଧର୍ମରୁ ବିଚ୍ଛିନ୍ନ ସେ ରାଜନୀତିକୁ ମୂଳାର ଭଳି ପୋଡ଼ିଦେବା ଉଚିତ । ମନେ ଲାଗୁଛି, ଧର୍ମ ଯଦି ରାଜନୀତିଠାରୁ ଅଲଗା ହୋଇ ନ ଥାନ୍ତା କିମ୍ବା ଅଲଗା କରିବାକୁ ଉଦ୍ୟମ ଏବେ ମଧ୍ୟ ହେଉ ନ ଥାନ୍ତା, ତେବେ ସେ ଦୁହିଁଙ୍କର ଏ ଭଳି ଅଧଃପତନ ହୋଇ ନ ଥାନ୍ତା । କେହି କହିବେ ନାହିଁ ଯେ ଦେଶ ରାଜନୈତିକ ଅବସ୍ଥା ଆଜି ଭଲ ଅଛି । ସ୍ୱଦେଶୀ ଭାବନା ପାଳନ କରୁଥିବାରୁ ଦେଶୀ ଅନୁଷ୍ଠାନମାନଙ୍କ ଉପରେ ମୁଁ ମୋର ଲକ୍ଷ୍ୟ ରଖିଛି; ତେଣୁ ଗ୍ରାମ ପଞ୍ଚାୟତଗୁଡ଼ିକ ମୋ ମନକୁ ଦଖଲ କରି ବସିଛନ୍ତି । ଭାରତବର୍ଷ ଯଥାର୍ଥରେ ଏକ ପ୍ରଜାତନ୍ତ୍ରବାଦୀ ଦେଶ ଏବଂ ସେଇଥିପାଇଁ

ଆଜି ପର୍ଯ୍ୟନ୍ତ ତା ଉପରେ ଯେତେ ପାହାର ପଡ଼ୁଛି ସେ ସବୁ ସହି ସେ ତିଷ୍ଠି ରହିଛି । ରଜା ରାଜୁଡ଼ାମାନେ ଦେଶୀ ହୁଅନ୍ତୁ ବା ବିଦେଶୀ ହୁଅନ୍ତୁ, ଖଜଣା ଗଣ୍ଡାକ ଅସୁଲ କରିବା ଛଡ଼ା ଆଉ କେବେ ଲୋକଙ୍କ ସମ୍ପର୍କରେ ଆସୁ ନ ଥିଲେ । ପ୍ରଜାମାନେ ମଧ୍ୟ ରାଜାଙ୍କ ଭାଗ ରାଜାଙ୍କୁ ଦେଇ ନିଶ୍ଚିନ୍ତ ରହୁଥିଲେ, ତେଣିକି ଆପଣା ଖୁସି ଯାହା କରିବାର କରୁଥିଲେ । ବର୍ଣ୍ଣ ବିଭାଗରେ ଗୋଟିଏ ବିରାଟ ସଂଗଠନ ଥିଲା । ତାହା ଦ୍ୱାରା ସମାଜର ଧାର୍ମିକ ଅଭାବ ପୂର୍ଣ୍ଣ ହେଉଥିଲା ଏବଂ ରାଜନୈତିକ ଅଭାବର ମଧ୍ୟ ସମାଧାନ ହେଉଥିଲା । ଗାଁ ଲୋକେ ଏହି ବର୍ଣ୍ଣ ବ୍ୟବସ୍ଥା ଦ୍ୱାରା ଆପଣାର ଭିତରର ସବୁ ବିଷୟ ପରିଚାଳନା କରୁଥିଲେ ଏବଂ ତାହାରି ସାହାଯ୍ୟରେ ଶାସକମାନଙ୍କର ଜୁଲମର ପ୍ରତିରୋଧ ମଧ୍ୟ କରୁଥିଲେ । ଯେଉଁ ଜାତି ଏ ବର୍ଣ୍ଣ ବ୍ୟବସ୍ଥାରୁ ଏ ଭଳି ସଂଗଠନ ତିଆରି କରି ପାରିଥିଲା, ସେ ଜାତିର ସଂଗଠନ ଶକ୍ତି ନାହିଁ ବୋଲି କହିବା ଅସମ୍ଭବ । ଗତବର୍ଷ ହରିଦ୍ୱାରଠାରେ କୁମ୍ଭମେଳା ଯେଉଁ ଲୋକ ଦେଖିଥିବେ ସେ ସହଜରେ ବୁଝି ପାରିବେ ଯେ ସଂଗଠନ କେତେ କୌଶଳରେ କରାଯାଇଛି ଯାହା ବଳରେ ଲକ୍ଷ ଲକ୍ଷ ତୀର୍ଥ ଯାତ୍ରୀଙ୍କର ବ୍ୟବସ୍ଥା ଅନାୟାସରେ ହୋଇ ଯାଉଛି । ତଥାପି ଆମର ସଂଗଠନ ଶକ୍ତି ନାହିଁ ବୋଲି ଆମେ ଏକ ଦୁହା ଧରିଛୁ । ଯେଉଁମାନେ ନୂଆ ଧରଣରେ ବଢ଼ିଛନ୍ତି, ଶିକ୍ଷା ପାଇଛନ୍ତି ତାଙ୍କ ସମ୍ବନ୍ଧରେ ଏ ଅଭିଯୋଗ କେତେକ ପରିମାଣରେ ସତ୍ୟ ହୋଇପାରେ । ଆମେ ସ୍ୱଦେଶୀ ଭାବନାକୁ ଛାଡ଼ି, ନ ମରି ବହୁତ ଭଦ୍ରଙ୍କର ହାତରେ ପଡ଼ିଛୁ । ଆମେ ପଢ଼ୁଆଯାକ ବିଦେଶୀ ଭାଷା ଜରିଆରେ ଶିକ୍ଷା ପାଇଛୁ । ଫଳରେ ଆମେ ଆମ ସାଧାରଣ ଲୋକଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରୁ ନାହୁଁ । ଆମେ ଜନସାଧାରଣଙ୍କର ପ୍ରତିନିଧି ହେବାକୁ

ରସୁଛୁ କିନ୍ତୁ ହୋଇ ପାରୁ ନାହୁଁ । ସେବେ ଇଂରାଜ କର୍ମଚାରୀଙ୍କୁ ଯେତେ ମାନନ୍ତି ତାଠାରୁ ଆମକୁ ବେଶୀ ମାନନ୍ତି ନାହିଁ । ଭାରତୀୟଙ୍କ ପାଖରେ ନିଜ ମନ ଖୋଲି ସେବେ କିଛି କହନ୍ତି ନାହିଁ । ତାଙ୍କର ଆଶା ଆକାଂକ୍ଷା ଆମର ଆଶା ଆକାଂକ୍ଷା ନୁହେଁ । ଅତଏବ ଆମ ଭିତରେ ଏକ ବ୍ୟବଧାନ ସୃଷ୍ଟି ହୋଇ ଯାଇଛି । ତମେ ଦେଖିବ ଆମର ସଙ୍ଗଠନ ଶକ୍ତି ନାହିଁ ତା ନୁହେଁ ବରଂ ଯାହାଙ୍କ ପ୍ରତିନିଧି ଆମେ ହେବାକୁ ଚାହୁଁଛୁ ତାଙ୍କ ଆମ ଭିତରେ କୌଣସି ସମ୍ପର୍କ ନାହିଁ । ଗତ ପଚିଶବର୍ଷ ଭିତରେ ଆମେ ଯଦି ଆପଣା ମାତୃଭାଷାରେ ଶିକ୍ଷା ପାଇଥାନ୍ତୁ, ତେବେ ରାମାୟଣ, ମହାଭାରତ ପରି ଆମ ଘରେ ଘରେ ସମ୍ପୃକ୍ତ ହୋଇ ରହିଛନ୍ତି, ବୋଷ ରାୟଙ୍କର ବୈଜ୍ଞାନିକ ଆବିଷ୍କାର ମଧ୍ୟ ସେହି ଭଳି ଆମ ଘରେ ସମ୍ପୃକ୍ତ ହୋଇ ରହିଥାନ୍ତା । ଆମର ବଡ଼ ବଡ଼ ଆମର ଚାକର ବାକର, ଆମର ଘାଇ ପଡ଼ୋଶୀ ସମସ୍ତେ ଆମ ଜ୍ଞାନ ଲାଭ କରୁଥାନ୍ତେ ।’

( ୧୯ )

୧୯୧୬ ରେ ବନାରସଠାରେ ହିନ୍ଦୁ ବିଶ୍ବବିଦ୍ୟାଳୟର ପ୍ରତିଷ୍ଠା ଉତ୍ସବ ହୋଇଥିଲା । ସେହି ଉତ୍ସବ ସଭାରେ କିଛି କହିବାକୁ ଗାନ୍ଧୀଙ୍କୁ ଅନୁରୋଧ କରାଯାଇଥିଲା । ସେ ସଭାରେ ଅନେକ ରାଜା ମହାରାଜା ଥାନ୍ତି । ଗାନ୍ଧୀଙ୍କ ବକ୍ତୃତା ନ ସରୁଣୁ କେତେ ଲୋକ ବିରକ୍ତ ହୋଇ ସଭା ଛାଡ଼ି ଚାଲି ଯାଇଥିଲେ । ସେହି ବକ୍ତୃତାରେ ଗାନ୍ଧୀ କହୁଁ କହୁଁ କହିଥିଲେ; “କଂଗ୍ରେସ ସ୍ୱାୟତ୍ତ ଶାସନ ସମ୍ବନ୍ଧରେ ଏକ ପ୍ରସ୍ତାବ ଗ୍ରହଣ କରିଛନ୍ତି..... ନିଖିଳ ଭାରତ କଂଗ୍ରେସ ସମିତି ଓ ମୁସଲିମ୍ ଲିଗ୍ ଆପଣା କର୍ତ୍ତବ୍ୟ କରିବେ ଏବଂ କାର୍ଯ୍ୟକାରୀ ସୂଚନା ଦେବେ । କିନ୍ତୁ ମୁଁ ମୋ ମନକଥା ସଫା ସଫା କହି ଦେବି, ଛାତ୍ରଜଗତ ଯାହା କିଛି କରିବ ବା ଜନସାଧାରଣ

ଯାହା କରିବେ ସେଥିପ୍ରତି ମୋ ମନ ଯେପରି ଆକୃଷ୍ଟ ହୁଏ ବ୍ରିଟିଶ ବା ଲୁଗର କାର୍ଯ୍ୟରେ ମୋ ମନ ସେପରି ଆକୃଷ୍ଟ ହୋଇ ନ ଥାଏ । ......ଯେତେବେଳେ ମୁଁ ଶୁଣେ ଯେ ଅମୁକ ସହରରେ ଗୋଟିଏ ବଡ଼ ରାଜପ୍ରାସାଦ ଗଢ଼ା ହେଉଛି, ତାହା ଇଂରାଜୀ ଶାସିତ ଭାରତରେ ହେଉ ବା ରାଜା ମହାରାଜାଙ୍କ ଶାସିତ ଭାରତରେ ହେଉ, ମୋର ତାହାଁକୁ ଈର୍ଷା ହୋଇଥାଏ । ମୁଁ କହୁଥାଏ—, "ଆହା ! ଏ ପଇସା ସବୁ ତ ଚାଷୀଙ୍କ ପାଖରୁ ଆସିଛି ।" ଆମ ଦେଶର ଶତକଡ଼ା ପଚାସ୍ତରି ଜଣ ଚାଷୀ ବୋଲି ପୂର୍ବବର୍ତ୍ତୀ ବକ୍ତା କହି ଯାଇଛନ୍ତି ଏବଂ ସେହିମାନେହିଁ ସବୁ ଉତ୍ପନ୍ନ କରୁଛନ୍ତି । ଯଦି ଏମାନଙ୍କଠାରୁ ତାଙ୍କର ସମସ୍ତ ପରିଶ୍ରମର ଲାଭ ଆମେ ନେଇଯାଉଁ ବା ଅନ୍ୟକୁ ନେଇଯିବାକୁ ଦେଉଁ ଆମର ସ୍ୱାୟତ୍ତଶାସନର କିଛି ଅର୍ଥ ରହିବ ନାହିଁ । ଆମର ମୁକ୍ତି ଚାଷୀ ହାତରେ । ଏ ଓକିଲ, ଡାକ୍ତର ଓ ଧନୀ ଜମିଦାରମାନେ କେହି ତାହା ଆଣି ଦେଇ ପାରିବେ ନାହିଁ ।"

ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ ଫଳରେ ଗିରମିଟିଆଙ୍କ ଉପରୁ ପାଉଣ୍ଡ ଟିକସ ଉଠିଯାଇଥିଲା ସତ କିନ୍ତୁ ଯେଉଁ ଆଇନ ବଳରେ ଗିରମିଟିଆ କୁଲି ସଂଗ୍ରହ କରି ପଠାଯାଉଥିଲେ ସେ ଆଇନ ରଦ୍ ହୋଇ ନ ଥାଏ । ୧୮୯୪ ସାଲରେ ସେହି ଆଇନ ଉଠାଇ ଦେବା ପାଇଁ ଗାନ୍ଧୀ ଏକ ଦରଖାସ୍ତ ପଠାଇଥିଲେ । ୧୯୧୬ ରେ ସେଥିପାଇଁ ପୁଣି ଆନ୍ଦୋଳନ ଆରମ୍ଭ ହୋଇଥିଲା । ସ୍ୱର୍ଗୀୟ ପଣ୍ଡିତ ମଦନମୋହନ ମାଳବ୍ୟ ବଡ଼ଲାଟ ସଭାରେ ଏହି ଆଇନ ରଦ୍ କରିବା ପାଇଁ ଏକ ପ୍ରସ୍ତାବ ଆଣିଥିଲେ । ସେତେବେଳର ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜ ଜବାବ ଦେଇଥିଲେ ଯେ ସେ ଆଇନକୁ ରଦ୍ କରିବା ପାଇଁ ବିଲାତ ସରକାରଙ୍କର ମଞ୍ଜୁରି ମିଳି ସାରିଛି ଏବଂ

ତାହା ଯଥା ସମୟରେ ଉଠାଇ ଦିଆଯିବ । ଗାନ୍ଧୀ ଏଭଳି ଅନିର୍ଦ୍ଦିଷ୍ଟ ଜବାବରେ ସନ୍ତୁଷ୍ଟ ହୋଇ ନ ଥିଲେ; ଏ ଆଇନ ତୁରନ୍ତ ଉଠିଯାଉ ବୋଲି ତାଙ୍କର ଇଚ୍ଛା ଥିଲା । ସେ ବଡ଼ ବଡ଼ ନେତାଙ୍କ ପରାମର୍ଶ ନେଇଥିଲେ । ଏ ସମ୍ବନ୍ଧରେ ସତ୍ୟାଗ୍ରହ ମଧ୍ୟ ଦରକାର ହୋଇପାରେ ବୋଲି ତାଙ୍କୁ ଜଣା ପଡ଼ିଥିଲା । ୧୯୧୬ ରେ ମାଲବ୍ୟଜୀ ଏ ଆଇନ ରଦ୍ କରିବା ପାଇଁ ବଡ଼ଲାଟ ସଭାରେ ଏକ ନୂଆ ଆଇନ ପେଶ୍ କରିବାରୁ ସେତେବେଳର ବଡ଼ଲାଟ ତାହା କରାଇ ଦେଇ ନ ଥିଲେ ।

ଏହି ସୁଯୋଗରେ ଗାନ୍ଧୀ ଭାରତ ତମାମ ବୁଲିଥିଲେ । ବମ୍ବେ ସଭାରେ ପ୍ରସ୍ତାବ ହେଲା—ଆଇନ ଉଠାଇ ଦିଆଯାଉ । ଗାନ୍ଧୀ କହିଥିଲେ, "ଉଠାଇ ଦେବା ପାଇଁ ଗୋଟିଏ ତାରିଖ ସରକାରଙ୍କୁ ଜଣାଇ ଦିଆଯାଉ, ତେଣିକି ଆଇନ ନ ଉଠାଇଲେ ଲୋକଙ୍କୁ ଯେଉଁ ବାଟ ଦିଶିବ, ଲୋକେ ସେ ବାଟ ଧରିବେ ।" ତା୩୧ରିଖ ଜୁଲାଇ ଭିତରେ ଆଇନ ଉଠିଯାଉ ବୋଲି ପ୍ରସ୍ତାବ ହେଲା । କରାଚୀ, କଲିକତା ପ୍ରଭୃତି ସହରରେ ମଧ୍ୟ ବଡ଼ ବଡ଼ ସଭାମାନ ହେଲା । ବମ୍ବେ ସହରରୁ ଦଳେ ମହିଳା ଦିଲ୍ଲୀ ଯାଇ ବଡ଼ଲାଟଙ୍କୁ ଏ ବିଷୟ ଶୁଣାଇଥିଲେ; ବଡ଼ଲାଟ ସେମାନଙ୍କୁ ଆଶା ଦେଇଥିଲେ । ଯାହାହେଉ ଏହିପରି ଅବସ୍ଥାରେ ୧୯୧୭ ଜୁଲାଇ ତା ୩୧ ରିଖ ପୂର୍ବରୁ ବଡ଼ଲାଟ ଆଇନଟିକୁ ରଦ୍ କରି ଦେଇଥିଲେ । ଗାନ୍ଧୀଙ୍କ ମତରେ ଏ ଆନ୍ଦୋଳନ ପଛରେ ସତ୍ୟାଗ୍ରହ ଭାବନା ଥିବାରୁ ଫଳ ଶୀଘ୍ର ମିଳି ଯାଇଥିଲା ।

( ୨୦ )

୧୯୧୬ ଶେଷ ଅଡ଼କୁ ଗାନ୍ଧୀ ଲକ୍ଷ୍ନୌ କଂଗ୍ରେସକୁ ଯାଇଥାନ୍ତି । ସେହିଠାରେ ରାଜକୁମାର ଶୁକ୍ଳ ବୋଲି ଜଣେ ଲୋକ ଗାନ୍ଧୀଙ୍କୁ

ଦେଖା କରି ତାଙ୍କୁ ଚମ୍ପାରଣ ଜିଲାର ଦୁଃଖ କଥା ଶୁଣାଇଥିଲା ।
ଚମ୍ପାରଣ ବିହାରର ଏକ ଜିଲ୍ଲା । ଜନକଙ୍କର ମିଥିଳା ଦେଶର
ଅନ୍ତର୍ଗତ । ସେଠାରେ ନୀଳବାଡ଼ି ଚାଷ ହେଉଥିଲା; ବିଦେଶୀ ଗୋରା
ବେପାରୀମାନେ ସେଠାରେ କୋଠି ବାନ୍ଧି ନୀଳ ବ୍ୟବସାୟ
କରୁଥିଲେ ଏବଂ ଜମିଦାରୀ ବି କିଣୁଥିଲେ । ପ୍ରଜାଙ୍କୁ ଜୋର କରି
ନୀଳଚାଷ କରେଇବା ପାଇଁ ସରକାରଙ୍କ ଦ୍ୱାରା ଏକ ଆଇନ ମଧ୍ୟ
କରାଇ ନେଇଥିଲେ । ଏ ଆଇନର ନାଁ ଥିଲା ତିନି କାଠିଆ ଆଇନ ।
ଏକରକ ଜମି କୋଡ଼ିଏ କାଠା, ଏ ଆଇନ ଯୋଗୁଁ ପ୍ରଜା ମାନେ
ଜମି ଚଷୁଥିବେ ତ ନିଶ୍ଚୟ ତିନି କାଠା ଜମିରେ ନୀଳଚାଷ କରିବ ।
ତେଣିକି ଆଇନ, ଜମିଦାର, ଲୋଭ, ବେପାର, ଏ ସବୁ ମିଶିଗଲେ
ଯାହା ହୋଇଥାଏ ତାହା ଚମ୍ପାରଣରେ ଚାଲୁଥିଲା । ଲୋକଙ୍କର
ଦୁଃଖର ସୀମା ନ ଥିଲା । ରାଜକୁମାର ଶୁକ୍ଳ ସେଠାକାର ଜଣେ
ଚାଷୀ । ସେ ନିଜେ ଅଙ୍ଗରେ ସବୁ ନିଭେଇଥାଏ । ଏ ଆଇନକୁ
ଉଠେଇ, ନୀଳବାଡ଼ିର କଳଙ୍କକୁ ମୂଳପୋଛ କରିଦେବା ପାଇଁ ସେ
ଅଣ୍ଟାଭିଡ଼ି ବାହାରିଥାଏ ।

ସେ ଲକ୍ଷ୍ନୌ କଂଗ୍ରେସରେ ସ୍ୱର୍ଗୀୟ ବ୍ରଜକିଶୋର ବାବୁଙ୍କ
ଜରିଆରେ ଚମ୍ପାରଣ ସମ୍ବନ୍ଧରେ ଗୋଟିଏ ପ୍ରସ୍ତାବ ମଞ୍ଜୁର କରାଇ
ନେଇଥିଲା । ଏଥିରେ ରାଜକୁମାର ଖୁସି ହୋଇଥିଲା ସତ କିନ୍ତୁ
ତା ମନ ମାନି ନ ଥାଏ । ସେ ଚାହୁଁ ଥାଏ ଯେ ଗାନ୍ଧୀ ନିଜେ
ଯାଇ ଅବସ୍ଥା ଦେଖନ୍ତୁ । ଗାନ୍ଧୀଙ୍କଠାରୁ ଏକ ଜବାବ ନ ପାଇବା ଯାଏ
ସେ ତାଙ୍କୁ ଛାଡ଼ି ନ ଥିଲା । ସୁବିଧା ଅନୁସାରେ ପରେ ଚମ୍ପାରଣ
ଯିବେ ବୋଲି ଗାନ୍ଧୀ ଜବାବ ଦେଇଥିଲେ । ରାଜକୁମାର ଛାଡ଼ିବା
ଲୋକ ନୁହଁ; ଗାନ୍ଧୀ ଲକ୍ଷ୍ନୌରୁ କାନପୁର ଗଲେ, ସେ ବି ତାଙ୍କ
ପଛେ ପଛେ ହାଜର । ଗାନ୍ଧୀ ଆଶ୍ରମକୁ ଫେରିଲେ, ରାଜକୁମାର

ସେଠି ଯାଇ ପହଞ୍ଚିଥିଲ । ବାଧ୍ୟ ହୋଇ ଗାନ୍ଧୀ କହିଥିଲେ 'ମୋର କଲିକତା ଯିବାର ଅଛି, ସେଠାରେ ମୋ ସଙ୍ଗେ ଦେଖାକର ମତେ ସେଠୁ ଚମ୍ପାରଣ ନେଇଯିବ ।' ଗାନ୍ଧୀ କଲିକତା ପହଞ୍ଚିବା ପୂର୍ବରୁ ରାଜକୁମାର ଯାଇଁ ସେଠାରେ ବସିଥାଏ । ସେହି ଅପାଠୁଆ ସାଦା ସିଧା ଗୃହୀଟି ଶେଷରେ ନିଜର ନିଷ୍ଠାବଳରେ ଗାନ୍ଧୀଙ୍କୁ ଜୟ କରିଥିଲ ।

୧୯୧୭ ଅରମ୍ଭରେ ଗାନ୍ଧୀ ଚମ୍ପାରଣ ଯାତ୍ରା କରିଥିଲେ । ସେ ପ୍ରଥମେ ମୁଜାଫରପୁରରେ ପହଞ୍ଚି ବିହାରର ଓକିଲ ବନ୍ଧୁମାନଙ୍କ ସଙ୍ଗେ ପରାମର୍ଶ କରିଥିଲେ । ଓକିଲମାନେ କେତେଦୂର ସାହାଯ୍ୟ କରିବେ, ଏବଂ ଜେଲ୍ ଯିବେ କି ନାହିଁ ସେ ସବୁ ବିଷୟ ତନ୍ନ ତନ୍ନ କରି ପଚାରି ବୁଝିଥିଲେ ।

ପ୍ରଥମେ ମୋତିହାରି ଯାଇ ପ୍ରଜାଙ୍କ ଦୁଃଖ କ'ଣ ସେ ସମ୍ବନ୍ଧରେ ଭଲ ଅନୁସନ୍ଧାନ କରିବାର ସ୍ଥିର ହୋଇଥିଲ । ଗାନ୍ଧୀ ତାଙ୍କ ନୀତି ଅନୁସାରେ ଆଗ ସରକାରୀ କର୍ମଚାରୀଙ୍କ ସଙ୍ଗେ ଦେଖା କରିଥିଲେ । ସେଠାକାର କମିସନର୍ ସାହେବ ଗାନ୍ଧୀଙ୍କୁ ଧମକେଇ ସେ ଅଞ୍ଚଳରୁ ଫେରିଯିବାପାଇଁ କହିଥିଲେ । ଗାନ୍ଧୀ ଆଶଙ୍କା କରିଥିଲେ ଯେ ସରକାର ତାଙ୍କୁ ଗିରଫ କରି ନେବେ; ସେଥିପାଇଁ ମୋତିହାରି ବା ବେତିହାଠାରେ ଧରା ହେଲେ ଭଲ ହେବ ବୋଲି ସେ ମୋତିହାରି ବାହାରି ପଡ଼ିଥିଲେ । ମୋତିହାରି ଚମ୍ପାରଣ ଜିଲ୍ଲାର ସଦର ମହକୁମା ଥିଲ । ବେତିହା ରାଜକୁମାର ଶୁକ୍ଳଙ୍କ ଘର ପାଖର ଏକ ଗାଁ ଯେଉଁଠାରେ ନୀଳକୋଠି ବାଲାଙ୍କର ସବୁଠୁ ଗରିବ ପ୍ରଜା ବାସ କରୁଥାନ୍ତି ।

ସେହିଦିନ ଗାନ୍ଧୀ ସଦଳବଳରେ ମୋତିହାରି ପହଞ୍ଚି ଶୁଣିଲେ ଯେ ପାଞ୍ଚମାଇଲ ଦୂର ଗାଁରେ ଜଣେ ପ୍ରଜା ଉପରେ ଖୁବ୍

ଅତ୍ୟାଗ୍ରହ ହୋଇଛନ୍ତି । ସେଠାକୁ ଯିବାପାଇଁ ଗାନ୍ଧୀ ଏକ ହାତୀ ଚଢ଼ି ବାହାରିଲେ । ବିହାରର ଗାଁ ଗହଳରେ ଅନ୍ୟ ଜାଗାର ବଳଦଗାଡ଼ି ପରି ହାତୀ ସହଜରେ ମିଳନ୍ତି । ଗାନ୍ଧୀ ପ୍ରକୃତ ଅଧେ ବାଟ ଯାଇଛନ୍ତି କି ନାହିଁ, ଜଣେ ଲୋକ ପୁଲିସ ସାହେବଙ୍କ ପାଖରୁ ଏକ ଖବର ନେଇ ଦୌଡ଼ ଦୌଡ଼ ଯାଇ ପହଞ୍ଚିଲା । ପ୍ରକୃତ ଘଟଣା ବୁଝିବାକୁ ଆଉ ତାଙ୍କୁ ବାଟ ନ ଥିଲା । ଚମ୍ପାରଣ ଛାଡ଼ିଯିବା ପାଇଁ ତାଙ୍କ ଉପରେ ହୁକୁମ ଜାରି ହେଲା; ସେହି ହୁକୁମନାମା ପଛରେ ଗାନ୍ଧୀ ଲେଖିଦେଲେ ଯେ ପ୍ରଜାଙ୍କ ଦୁଃଖ ଅନୁସନ୍ଧାନ କରି ନ ସାରିଲେ ସେ ଚମ୍ପାରଣ ଛାଡ଼ି ଯିବେ ନାହିଁ । ସଙ୍ଗେ ସଙ୍ଗେ ଆଉ ଏକ ପରୱାନା ଆସି ପହଞ୍ଚିଲା । ଆଇନ ଅମାନ୍ୟ କରିଛନ୍ତି ବୋଲି କଚେରିରେ ହାଜର ହେବା ପାଇଁ ପରୱାନାରେ ଲେଖାଥାଏ । ତହିଁ ଅରଦଳକୁ ତାକିଦ ଥାଏ ।

ତୁଣ୍ଡ ବାଇଦ ସହସ୍ର କୋଶ । ଏ ସମ୍ବାଦ ସଙ୍ଗେ ସଙ୍ଗେ ଚାରିଆଡ଼େ ଖେଳି ଯାଇଥିଲା । ମୋତିହାରିରେ ଯାହା ଘଟିଲା ତାହା କେବେ କେହି ଦେଖି ନ ଥିଲେ; ହଜାର ହଜାର ଲୋକ ଚାରିଆଡ଼ୁ ଆସି ଜମା ହୋଇଗଲେ । ଘର କ'ଣ, କଚେରି କ'ଣ ସବୁଆଡ଼େ ଲୋକାରଣ୍ୟ । ଗାନ୍ଧୀ ଯୁଆଡ଼େ ଯାଆନ୍ତି, ଲୋକେ ସିଆଡ଼େ ଯାଆନ୍ତି । ଗାନ୍ଧୀଙ୍କ ସାଥୀମାନେ ଏ ଭିଡ଼କୁ ଅଯତ୍ନରେ ରଖିବାକୁ ଚେଷ୍ଟା କରୁଥାନ୍ତି ।

ଗାନ୍ଧୀ ନୋଟିସ ବିରୁଦ୍ଧରେ ଆଇନ ଅନୁସାରେ ଲଢ଼ି ନ ଥିଲେ, ଓଲଟା ସବୁ ମାନିଯାଇଥିଲେ ଏବଂ ଶାସ୍ତି ପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ । କଲେକ୍ଟର, ପୁଲିସ ସାହେବ ପ୍ରଭୃତି କର୍ମଚାରୀମାନେ ଏ ବ୍ୟବହାର ଦେଖି ବଡ଼ ସନ୍ତୁଷ୍ଟ ହୋଇଥିଲେ । ଗାନ୍ଧୀ ଓ ତାଙ୍କ ସାଥୀମାନଙ୍କ ସାହାଯ୍ୟ ନେଇ ଭିଡ଼ ସମାଳିବା

ପାଇଁ ଲାଗି ପାଉଥିଲେ । ଲୋକେ ସେତେବେଳେ ନିର୍ଭୟ ହୋଇ ଯାଉଥିଲେ । ଜେଲ ଡର କୁଆଡ଼େ ଉଡ଼ିଯାଇଥିଲା । ତାଙ୍କ ପାଇଁ ଲଢ଼ିବାକୁ କିଏ ଜଣେ ଅଜଣା ବନ୍ଧୁ ଆସିଛନ୍ତି ତାହାର ପ୍ରେମର ଶକ୍ତିରେ ସେମାନେ ପରିଚାଳିତ ହେଉଥିଲେ ।

ଚମ୍ପାରଣରେ ଏହି ଜାଗରଣ ସମ୍ବନ୍ଧରେ ଗାନ୍ଧୀ ନିଜର ଆତ୍ମକଥାରେ ଲେଖିଛନ୍ତି, "ମୋ ସାଥୀମାନଙ୍କ ସଙ୍ଗେ ପରାମର୍ଶ କରି ଠିକ୍ କରିଥିଲି ଯେ କଂଗ୍ରେସ ନାଁରେ କିଛି କରାଯିବ ନାହିଁ । ଆମେ କାମ ଚାହୁଁଥିଲୁ, ନାଁ ଚାହୁଁ ନ ଥିଲୁ । ସରକାର ତଥା ସରକାରଙ୍କ ସୂତ୍ରଧାର କୋଠିବାଲାମାନେ କଂଗ୍ରେସ ନାଁ ଶୁଣି ଚମକୁଥିଲେ । ସେମାନେ ବୁଝୁଥିଲେ କଂଗ୍ରେସର ଅର୍ଥ ଓକିଲଙ୍କ ପାଟିଗୋଳ, ଆଇନର ଛିଦ୍ର ବାହାର କରି ଆଇନରୁ ଖସିଯିବା, ବୋମା ଇତ୍ୟାଦି ପକାଇ ନାନାପ୍ରକାର ଦୋଷାବହ କାମ କରିବା; କଂଗ୍ରେସ ବୋଇଲେ ଚାଲବାଜୀ, କଂଗ୍ରେସ ବୋଇଲେ ମିଥ୍ୟାଚାର । ଆମର ଉଦ୍ଦେଶ୍ୟ ଥିଲା, ସେମାନଙ୍କର ଏ ଭୁଲ ଧାରଣାକୁ ସଂଶୋଧନ କରିବା । ତେଣୁ ଆମେ କଂଗ୍ରେସ ନାଁ ଧରୁ ନ ଥିଲୁ, ଚାଷୀମାନଙ୍କୁ କଂଗ୍ରେସ ନାଁ ଶୁଣାଉ ନ ଥିଲୁ ।

"ଆମେ ସବୁ ଯିବୁ ବୋଲି ଆଗରୁ କଂଗ୍ରେସ ତରଫରୁ ସମ୍ବାଦ ପଠା ହୋଇ ନ ଥିଲା କିମ୍ବା ସେଠାରେ ପ୍ରଚାର କରି ସବୁ ଠିକ୍ ରଖିବାକୁ ଆଗରୁ କର୍ମୀ ପଠା ହୋଇ ନ ଥିଲା । ହଜାର ହଜାର ଚାଷୀଙ୍କୁ ଖବର ଦେବା ମଧ୍ୟ ରାଜକୁମାର ଶୁକ୍ଳଙ୍କ ପକ୍ଷରେ ସମ୍ଭବ ନ ଥିଲା । ସେଠା ଲୋକଙ୍କ ଭିତରେ ପୂର୍ବରୁ କୌଣସି ରାଜନୈତିକ କାମ ହୋଇ ନ ଥାଏ । ଚମ୍ପାରଣ ବାହାରର ଦୁନିଆ କଥା ତାଙ୍କୁ ଜଣା ନ ଥାଏ । ତଥାପି ଆମେ ଯେପରି ତାଙ୍କର ଯୁଗ ଯୁଗର ପୁରୁଣା ବନ୍ଧୁ, ସେହିପରି ସେମାନେ ଆମକୁ ସ୍ୱାଗତ

କରିଥିଲେ । ଏ କୃଷକଙ୍କ ସହିତ ମିଳନରେ ମୁଁ ସତ୍ୟ, ଅହିଂସା ଓ ଭଗବାନଙ୍କର ସାକ୍ଷାତ ଦର୍ଶନ କରିଥିଲି, ଏହା କହିଲେ ଉଳେ ହେଲେ ଅତ୍ୟୁକ୍ତି ହେବ ନାହିଁ, ଏକଦମ୍ ଅକ୍ଷରେ ଅକ୍ଷରେ ସତକଥା ହେବ ।

"ମତେ ଏ ଭଳି ସାକ୍ଷାତ ଦର୍ଶନର ସୁଯୋଗ ମୋର କେଉଁ ଗୁଣରୁ ମିଳିଲା ମୁଁ ଯଦି ତାହା ବର୍ଣ୍ଣନ କରୁଛି, ମତେ ଆଉ କିଛି ଦିଶୁ ନାହିଁ, ଲୋକଙ୍କ ପ୍ରତି ମୋର ପ୍ରେମ ଏହାର କାରଣ ବୋଲି ମୁଁ ବୁଝୁଛି ଏବଂ ଏ ପ୍ରେମ ମଧ୍ୟ ଆଉ କିଛି ନୁହେଁ, ଏହା ମୋର ଅହିଂସା ବିଶ୍ୱାସର ଫଳ ।

"ଚମ୍ପାରଣର ସେହି ଘଟଣାଟି ମୋର ଜୀବନରେ ମୁଁ ଭୁଲିବ ନାହିଁ । ତାହା ସେ କୃଷକଙ୍କର ମଧ୍ୟ ଚିର ସ୍ମରଣୀୟ ହୋଇ ରହିବ ।"

( ୨୧ )

ମକଦ୍ଦମା ପଡ଼ିଲା । ହାକିମ, ସରକାରୀ ଓକିଲ ଅନ୍ୟାନ୍ୟ ଅମଲାକର୍ମଚାରୀମାନେ ସମସ୍ତେ ଅଠାକାଠିରେ ପଡ଼ିଥାନ୍ତି; କ'ଣ କରିବେ ବୁଝି ଦିଶୁ ନ ଥାଏ । ଓକିଲ ମକଦ୍ଦମା ଅନ୍ୟ ତାରିଖ କରିଦେବାକୁ ଲାଗିଥାନ୍ତି । କିନ୍ତୁ ଗାନ୍ଧୀ ଆପତ୍ତି କରିଥିଲେ । ସେ ତ ଦୋଷ ମାନିବାକୁ ପ୍ରସ୍ତୁତ ଥାନ୍ତି; ସେହି ମର୍ମରେ ଏକ ବିବୃତି ମଧ୍ୟ ପଢ଼ି ଶୁଣାଇ ଦେଇଥିଲେ । ଫଳରେ ମକଦ୍ଦମା ମୁଲତବୀ ରଖାଗଲା ନାହିଁ । କିନ୍ତୁ ହାକିମ ରାୟ ଶୁଣାଇ ନ ଥିଲେ । ରାୟ ଦେବାପାଇଁ ତାରିଖ ହେଲା । ଆଉ ତାରିଖରେ କଚେରୀ ଯିବା ଆଗରୁ ହାକିମ ଗାନ୍ଧୀଙ୍କୁ ଲେଖିପଠାଇଥିଲେ ଯେ ଲାଟସାହେବ ମକଦ୍ଦମା ଉଠାଇ ନେଇଛନ୍ତି ଏବଂ ଗାନ୍ଧୀ ଯାହା ତଦନ୍ତ କରିବାକୁ ଚାହାନ୍ତି,

ସେ ତାହା କରିପାରିବେ ଓ ସରକାରୀ କର୍ମଚାରୀମାନଙ୍କ ସାହାଯ୍ୟ ଲୋଡ଼ିବେ ନା ତାହା ତାଙ୍କୁ ଦିଆଯିବ।

ତହୁଁ ଚାଷୀମାନଙ୍କ ଜବାନବନ୍ଦ ନେବା ଆରମ୍ଭ ହେଲା; ହଜାର ହଜାର ଚାଷୀ ଆସି ଜମା ହେଲେ। ରାଜେନ୍ଦ୍ର ବାବୁ ବ୍ରଜକିଶୋର ବାବୁ ପ୍ରଭୃତି ଓକିଲ ସାଥୀମାନେ ଓକିଲାତି ଛାଡ଼ି ଗାନ୍ଧୀଙ୍କୁ ସାହାଯ୍ୟ କରୁଥାନ୍ତି। ଗାନ୍ଧୀ ସତ୍ୟାଗ୍ରହ ନୀତି ଅନୁସାରେ ହାକିମ ଓ କୋଠିବାଲମାନଙ୍କ ସଙ୍ଗେ ଦେଖା କରି ସେମାନଙ୍କ ମତାମତ ବୁଝୁଥାନ୍ତି ଓ ସେମାନଙ୍କୁ ବୁଝାଉଥାନ୍ତି। କିନ୍ତୁ କୋଠିବାଲମାନେ ବହୁତ ମିଥ୍ୟା ପ୍ରଚାର କରିବାକୁ ଲାଗିଥିଲେ ଏବଂ ଖବରକାଗଜମାନଙ୍କରେ ଲେଖାଲେଖି ଚଳେଇଥିଲେ। ଗାନ୍ଧୀ ଲେଖିଛନ୍ତି; "ମୁଁ ବାହାରୁ କୌଣସି କଂଗ୍ରେସ ନେତାଙ୍କ ସାହାଯ୍ୟ ଲୋଡ଼ି ନ ଥିଲି। ମୁଁ ସେ ଲଢ଼େଇକୁ ରାଜନୈତିକ ରୂପ ଧାରଣ କରିବାକୁ ଦେଇ ନ ଥିଲି······ଯେଉଁଠି ଲଢ଼େଇଟା ରାଜନୈତିକ ନ ଥାଏ, ଅଥଚ ଲକ୍ଷ୍ୟ ରାଜନୈତିକ ଥାଏ ସେଠାରେ ଲଢ଼େଇକୁ ରାଜନୈତିକ ରୂପ ଦେବା ଦ୍ୱାରା କ୍ଷତି ହୋଇଥାଏ, ଏବଂ ତାକୁ ରାଜନୀତିର ସୀମା ବାହାରେ ରଖିବା ଦ୍ୱାରା ଲାଭ ହୋଇଥାଏ—ଏହା ମୋର ଅଭିଜ୍ଞତା। ଯେ କୌଣସି କ୍ଷେତ୍ରରେ ହେଉନା କାହିଁକି ନିଃସ୍ୱାର୍ଥ ଲୋକସେବା ଶେଷରେ ଦେଶର ରାଜନୀତିକୁ ସାହାଯ୍ୟ କରିଥାଏ, ଏହାର ଏକ ପ୍ରମାଣ ଚମ୍ପାରଣ ଲଢ଼େଇରୁ ମିଳିଥିଲା।"

ଗାନ୍ଧୀ ଚାଷୀଙ୍କଠାରୁ ଜୁଲମର ପ୍ରମାଣ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ସେ ଅଞ୍ଚଳରେ ଗଠନମୂଳକ କାମ ଆରମ୍ଭ କରିଦେଇଥିଲେ। ବାହାରୁ କେତେକ ସହକର୍ମୀଙ୍କୁ ଡକାଇ ଆଣିଥିଲେ। ଶ୍ରୀମତୀ କସ୍ତୁରବା ମଧ୍ୟ ସେଠାକୁ ଯାଇଥିଲେ। କେତୋଟି ପାଠଶାଳା ଖୋଲି ଲୋକଶିକ୍ଷା ଦିଆଯାଇଥିଲା।

ଔଷଧ ବାଣ୍ଟିବା, ଗାଁ ସଫାଇ, ଗୋ ରକ୍ଷା ଇତ୍ୟାଦି ଦିଗରେ କାମ ସବୁ ଆରମ୍ଭ କରାଯାଇଥିଲା । ଗାନ୍ଧୀ ସେହି ସମୟର ଗୋଟିଏ ଘଟଣା ଅନେକ ସମୟରେ କହୁଥାନ୍ତି । "ଉଡ଼ ହରଣ୍ଡ୍ୱା ଗାଁରେ ଆମର ଗୋଟିଏ ପାଠଶାଳୀ ଚଳୁଥାଏ । ତାହାର ପାଖରେ ଗୋଟିଏ ଛୋଟିଆ ଗାଁକୁ ମୁଁ ଥରେ ଯାଇଥିଲି । ସେଠାରେ ମୁଁ କେତେକ ସ୍ତ୍ରୀ ଲୋକଙ୍କୁ ଅତି ମଇଳା ଲୁଗା ପିନ୍ଧିଥିବାର ଦେଖିଥିଲି । ମୁଁ ମୋର ସ୍ତ୍ରୀକୁ କହିଲି, "ତାଙ୍କଠୁ ପଚାରି ବୁଝ କାହିଁକି ମଇଳା ଲୁଗା ଧୋଉ ନାହାନ୍ତି ।" ସେ ତାଙ୍କୁ ପଚାରିଥିଲା । ଜଣେ ସ୍ତ୍ରୀ ଲୋକ ତାଙ୍କୁ ନିଜ କୁଡ଼ିଆକୁ ଡାକି ନେଇ କହିଲା, "ଏଠି ଦେଖ କେଉଁଠି ଗୋଟିଏ ପେଡ଼ି ପେଟରା ନାହିଁ । ଲୁଗା କେଉଁଠୁ ଆସିବ ? ଏଇ ଗୋଟିକ ଶାଢୀ ମୋର ଅଛି । ତାକୁ ଧୋଇବ କିମିତି ? ମହାତ୍ମାଜୀଙ୍କୁ କହ ମୋତେ ଆଉ ଗୋଟିଏ ଶାଢୀ ଦେବେ, ତେବେ ମୁଁ ରୋଜ ଗାଧୋଇ ରୋଜ ଲୁଗା ଧୋଇବାକୁ ଜବାବ ଦେବି ।" ଏମିତି ଗୋଟିଏ ନୁହେଁ ଭାରତର ଅନେକ ଗାଁରେ ଅନେକ ଘର ଅଛି; ଭାରତର ଅସଂଖ୍ୟ ଘରେ ଲୋକଙ୍କର କୌଣସି ଆସବାବ ନାହିଁ, ବଦଳାଇବାକୁ ଅଧିକା ଲୁଗା ନାହିଁ, ଲଜ୍ଜା ନିବାରଣ ପାଇଁ ଖଣ୍ଡେ ଖଣ୍ଡେ କନା ପିନ୍ଧି ଚଳୁଛନ୍ତି ।"

ଏହି ସମୟରେ ବିହାର ସରକାରଙ୍କଠାରୁ ହଠାତ୍ ଥରେ ଗାନ୍ଧୀ ଖଣ୍ଡେ ଚିଠି ପାଇଲେ । ଚିଠିର ମର୍ମ ଥିଲା—"ଆପଣଙ୍କ ଅନୁସନ୍ଧାନ ବହୁତ ଦିନ ଲାଗିଲାଣି । ଏବେ ଶୀଘ୍ର ସାରିଦେଇ ବିହାରରୁ ଆପଣ ବିଦାୟ ନେବେ ନାହିଁ କି ?" ଚିଠିଟି ବଡ଼ ଭଦ୍ରଭାଷାରେ ଲେଖା ହୋଇଥିଲା । ଗାନ୍ଧୀ ଜବାବ ଦେଇଥିଲେ ଯେ ଏ ଭଳି ଅନୁସନ୍ଧାନ ଡେରି ହେବାର କଥା ଏବଂ ଏହା ଫଳରେ ଲୋକଙ୍କ

ଦୁଃଖ ଦୂର ନ ହେଲେ ସେ ବହାର ଛାଡ଼ି ଯିବେ ନାହିଁ । ସରକାର ଗୃହାକ୍ରାନ୍ତ ଲୋକଙ୍କ ଦୁଃଖ ଦୂର କରନ୍ତୁ କମ୍ବା ପ୍ରଜାଙ୍କ ଦୁଃଖ କଷ୍ଟ ସତ୍ୟ ବୋଲି ଯଦ ସେମାନେ ସାବ୍ୟସ୍ତ କଲେଣି, ତେବେ ସରକାର ଏକ ତଦନ୍ତ କମିଟି ମୁକରର କରନ୍ତୁ ।

ସେତେବେଳେ ବହାରର ଲାଟ ଗେଟ୍‌ସାହେବ ବଡ଼ ଭଲଲୋକ ଥିଲେ । ସେ ଗୋଟିଏ ସରକାରୀ ତଦନ୍ତ କମିଟି ମୁକରର କରିଥିଲେ ଓ ଗାନ୍ଧୀଙ୍କୁ ସେଥିରେ ଜଣେ ସଭ୍ୟ ରଖିଥିଲେ । ତନକାଠିଆ ଆଇନ ରଦ୍ କରିବାକୁ ଏ କମିଟି ସୁପାରସ୍ କରିଥିଲେ । ଗୋଟିଏ ନୂଆ ଆଇନ ଗଢ଼ା ହେଲା, ପୁରୁଣା ଆଇନ ଉଠିଗଲା । ନୀଳବଉର କଳଙ୍କ ଧୋଇ ଯାଇ କାଳ କାଳକୁ ସଫା ହୋଇଗଲା ।

ଏହି ଚମ୍ପାରଣ ସତ୍ୟାଗ୍ରହରେ ଗାନ୍ଧୀ ସତ୍ୟ, ଅହିଂସା ଓ ଭଗବାନଙ୍କ ଦର୍ଶନ କରିଥିଲେ । ଦେଶ ସବିନୟ ଆଇନ ଅମାନ୍ୟର ପ୍ରଥମ ଶିକ୍ଷା ପାଇଥିଲା । ଏ କଥା ଗାନ୍ଧୀ ସବୁଦିନେ କହୁଥାନ୍ତି । ୧୯୪୨ ରେ ଆମେରିକାର ଜଣେ ସାମ୍ବାଦିକଙ୍କ ସଙ୍ଗେ କଥାବାର୍ତ୍ତା ହେଉ ହେଉଁ କହିଲେ "...... ଏମିତ ଚମ୍ପାରଣରେ ଆଇନ ଅମାନ୍ୟ ଜିତଗଲା । ଏହି ବାଟରେ ଭାରତ ସ୍ୱାଧୀନ ହେବ, ଏହା ସାବ୍ୟସ୍ତ ହୋଇଗଲା । ଆଇନ ଅମାନ୍ୟ ଭାରତର ସ୍ୱାଧୀନତା ପ୍ରାପ୍ତିର ବାଟ ହୋଇଗଲା ।"

( ୨୨ )

ଅହମଦାବାଦରେ ଲଗା କଳମାନଙ୍କରେ ସେତେବେଳେ ବଡ଼ ଗୋଳମାଳ ଚାଲିଥାଏ । କଳର ମୂଲିଆମାନେ ଅନେକ ଦିନୁ ନାନା ପ୍ରକାର ଓଜର ଆପତ୍ତି କରୁଥାନ୍ତି । ମଜୁରି କମ୍ ଯୋଗୁଁ ସବୁଠାରୁ ବେଶୀ ଆପତ୍ତି ହେଉଥାଏ । ଗାନ୍ଧୀ ସେମାନଙ୍କ ପାଇଁ କିଛି କରିବେ ବୋଲି ଅନେକ ଦିନୁ ଇଚ୍ଛା କରିଥାନ୍ତି । ଚମ୍ପାରଣ

ସରକାରୀ କମିଟିର କାମ ସରି ନ ଥାଏ, ଅହମଦାବାଦରୁ ଚିଠି ପାଇଲେ ଯେ ଅହମଦାବାଦ୍ ମୂଲିଆଙ୍କର ଆନ୍ଦୋଳନ ତାଙ୍କ ସାହାଯ୍ୟ ଲୋଡ଼ୁଛି । ଗାନ୍ଧୀ ଅହମଦାବାଦ୍ ଗଲେ । ସେଠି ଏକ ମଜାର ଅବସ୍ଥା ସୃଷ୍ଟି ହୋଇଥାଏ । ମୂଲିଆଙ୍କ ନେତା ଥାନ୍ତି ଶ୍ରୀମତୀ ଅନୁସୂୟା ବେନ୍, ତାଙ୍କ ବିପକ୍ଷରେ କଳମାଲିକଙ୍କ ନେତା ଥାନ୍ତି ତାଙ୍କ ଭାଇ ଶ୍ରୀଯୁକ୍ତ ଅମ୍ବାଲାଲ ସାରାଭାଇ । ଏ ଭାଇ ଭଉଣୀ ପୁଣି ଉଭୟେ ଗାନ୍ଧଙ୍କର ନିକଟ ବନ୍ଧୁ ଥିଲେ ।

ମଜୁରୀଦାରଙ୍କର ମୂଲ ବଢ଼ାଇବା ବିଷୟକୁ ପଞ୍ଚାୟତରେ ନିଷ୍ପତ୍ତି କରିବା ପାଇଁ ଗାନ୍ଧୀ ମାଲିକମାନଙ୍କୁ ପରାମର୍ଶ ଦେଇଥିଲେ । ମାତ୍ର ମାଲିକମାନେ ଅଡ଼ି ବସିଥିଲେ । ସେମାନେ ଜିଦ୍ ଧରିଥାନ୍ତି ଯେ ମୂଲିଆଙ୍କ ସଙ୍ଗେ ମାଲିକଙ୍କର ଯେପରି ବାପ ପୁଅ ସମ୍ବନ୍ଧ ସେଥିରେ ବାହାରର ଲୋକେ କିପରି ହସ୍ତକ୍ଷେପ କରିବେ, ପଞ୍ଚାୟତ କିପରି ତା ହେବ ? ଗାନ୍ଧୀ ବାଧ୍ୟ ହୋଇ ମୂଲିଆମାନଙ୍କୁ ଧର୍ମଘଟ କରିବା ପାଇଁ ପରାମର୍ଶ ଦେଇଥିଲେ । ଏ ଭଳି ପରାମର୍ଶ ଦେବା ପୂର୍ବରୁ, ଗାନ୍ଧୀ ମୂଲିଆ ଓ ସେମାନଙ୍କ ନେତାମାନଙ୍କ ସଙ୍ଗେ ଖୁବ୍ ମିଳାମିଶା କରି ଧର୍ମଘଟ କଲେ କଣ କରିବାକୁ ହେବ ତାହା ବୁଝାଉଥିଲେ । ଧର୍ମଘଟର ସଫଳତା ପାଇଁ ଗାନ୍ଧୀ ନିମ୍ନଲିଖିତ କେତୋଟି ସର୍ତ୍ତ ଉପରେ ଜୋର ଦେଇଥିଲେ ।

୧—ଧର୍ମଘଟକାରୀମାନେ କେବେହେଁ ହିଂସା ଆଚରିବେ ନାହିଁ । ୨—ଯେଉଁମାନେ ଧର୍ମଘଟ କରି ପାରିବେ ନାହିଁ, ତାଙ୍କ ଉପରେ ଅନ୍ୟମାନେ କୌଣସି ଉପଦ୍ରବ କରିବେ ନାହିଁ । ୩—ଧର୍ମଘଟକାରୀମାନେ କେବେହେଁ କାହାରି ଦାନକୁ ଅନାଇ ବସିବେ ନାହିଁ । ୪—ଯେତେଦିନ ଲାଗୁ ପଛକେ ଶେଷ ପର୍ଯ୍ୟନ୍ତ ଟାଣ ରହିବେ ଏବଂ ଧର୍ମଘଟବେଳେ ନିଜେ ପରିଶ୍ରମ କରି କମେଇ ଖାଇବେ ।

ମୂଲିଆମାନେ ଭଲ ରକମ ବୁଝି ସୁଝି ଏ ପ୍ରତିଜ୍ଞା ଗ୍ରହଣ କରି-ଥିଲେ ଯେ ତାଙ୍କ ଦାବୀ ପୂରଣ ନ ହେବା ଯାଏ କିମ୍ବା କଳ ମାଷ୍ଟର ଏ ଇଁ ପଞ୍ଚାୟତକୁ ସୁପର୍ଦ୍ଦ ନ ହେବାଯାଏ ଧର୍ମଘଟ ଚାଲୁଥିବ । ମୂଲିଆ-ମାନେ ଶତକଡ଼ା ୫ ୩୫୯ ଅଧିକା ମଜୁରୀ ଦାବୀ କରୁଥିଲେ ।

ପ୍ରତ୍ୟହ ବଡ଼ ବଡ଼ ସଭାମାନ ହେଉଥାଏ । ହଜାର ହଜାର ମୂଲିଆ ଜମୁଥାନ୍ତି । ଗାନ୍ଧି ଗୁଜୁରାଟ ଭାଷାରେ ସେଠି ଗୀତେ ଗଣ୍ଡେ ପଢ଼ିକା ବାହାର କରୁଥାନ୍ତି । ସଭାରେ ତାହା ପଢ଼ି ବୁଝାଇ ଦିଆ ଯାଉଥାଏ । ପ୍ରତିଦିନ ସେମାନେ ପ୍ରତିଜ୍ଞା ପତ୍ରକୁ ଥରେ ଥରେ ଉଚ୍ଚାରି ନେଉଥାନ୍ତି । ଏମିତି ୧୫।୧୬ ଦିନ ଚାଲିଗଲା । ମୂଲିଆମାନେ ଦୃଢ଼ ଠାଣ ଓ ଶାନ୍ତ ଥାନ୍ତି । କିନ୍ତୁ କ୍ରମେ ଦୁର୍ବଳତା ଦେଖାଗଲା । ସେମାନଙ୍କ ମୁହଁରେ ନିରାଶା ଭାବ ଦେଖାଗଲା । ହିଂସା ପ୍ରବୃତ୍ତି ମନରେ ସ୍ଥାନ ପାଇଲା । ଗାନ୍ଧିଙ୍କର ବଡ଼ ଭାବନା ପଡ଼ିଗଲା । ଧର୍ମଘଟ କରାଇବାରେ ତାଙ୍କର ପୂରା ହାତ ଥାଏ । ତାଙ୍କର ଆଗରେ ସେମାନେ ଦିନ ଦିନ ଧରି ଆପଣାର ପ୍ରତିଜ୍ଞାକୁ ଦୋହରାଉଥାନ୍ତି । ଶେଷରେ ଦିନେ ସକାଳେ ସେହି ମୂଲିଆଙ୍କ ସଭାରେ ଗାନ୍ଧିଙ୍କୁ ବାଟ ସୁଝିଗଲା । ତାଙ୍କ ମୁହଁରୁ ହଠାତ୍ ବାହାରି ପଡ଼ିଲା "ଧର୍ମଘଟକାରୀମାନେ ଶେଷ ପର୍ଯ୍ୟନ୍ତ ଠାଣ ନ ରହିଲେ ମୁଁ ଉପବାସ କରିବି ।" ଏହାର ଫଳ ଦୂରୁ ଭଲ ହୋଇଥିଲା । ମୂଲିଆମାନେ ପୁଣି ଦୃଢ଼ ଓ ଶାନ୍ତ ହୋଇଗଲେ । ଏଣେ ତାଙ୍କ ପାଇଁ କାମ ଜୁଟାଇବାର ଆୟୋଜନ ହେଉଥାଏ । ବାଲି ବୋହିବା କାମ ମିଳି ଯାଇଥିଲା । ତା ଫଳରେ ସେମାନଙ୍କ ମନରେ ନୂତନ ଆଶା ଖେଳି ଯାଉଥିଲା ।

କିନ୍ତୁ ଗାନ୍ଧିଙ୍କ ଉପବାସରେ ଟିକିଏ ଦୋଷ ରହି ଯାଇଥିଲା, ତାହା ସେ ଏହିପରି ଭାବରେ ବୁଝାଇଛନ୍ତି, "ମିଲ୍ ମାଲିକଙ୍କ ସଙ୍ଗେ ମୋର ଘନିଷ୍ଠ ବନ୍ଧୁଭାବ ଥିଲା । ମୋର ଉପବାସର ପ୍ରଭାବ ନିଶ୍ଚୟ

ତାଙ୍କ ଉପରେ ପଡ଼ନ୍ତା । କିନ୍ତୁ ସତ୍ୟାଗ୍ରହ ନୀତରେ ତାଙ୍କ ବିରୁଦ୍ଧରେ ମୋର ଉପବାସ କରିବାର ନୁହେଁ, କେବଳ ମୂଲିଆଙ୍କ ଧର୍ମଘଟ ଦ୍ୱାରା ସେମାନଙ୍କୁ ପ୍ରଭାବିତ କରିବାର କଥା । ମାଲିକଙ୍କ ଦୋଷ ଯୋଗୁଁ ମୁଁ ଉପବାସ କରନ୍ତି ନାହିଁ । ବରଂ ମୂଲିଆଙ୍କ ଦୋଷ ଯୋଗୁଁ ସେଙ୍କର ପ୍ରତିନିଧି ଭଳି ମୁଁ ଉପବାସ କରିଥିଲି । ··· ··· ମୁଁ ନାଗୁର ହୋଇ ପଡ଼ିଥିଲି । ଉପବାସ କରିବା ମୋର କର୍ତ୍ତବ୍ୟ ବୋଲି ମୋତେ ସ୍ପଷ୍ଟ ଜଣା ପଡ଼ିଥିଲା ।”

ଯାହାହେଉ କ୍ରମେ ସମାଧାନର ବାତାବରଣ ସୃଷ୍ଟି ହେଲା । ଶ୍ରୀ ଆନନ୍ଦଶଙ୍କର ଧ୍ରୁବଙ୍କ ମଧ୍ୟସ୍ଥତାରେ ଧର୍ମଘଟ ଭାଙ୍ଗିଲା ଏବଂ ସେହି ପଞ୍ଚ ଯୁକ୍ତ ନିଯୁକ୍ତ ହେଲେ । ଗାନ୍ଧୀ ତିନି ଦିନ ଉପବାସ କଲାପରେ ଧର୍ମଘଟ ବନ୍ଦ ହୋଇଥିଲା । ମୋଟରେ ଏକୋଇଶ ଦିନ ଧର୍ମଘଟ ଚାଲିଥିଲା ।

ଭାରତବର୍ଷରେ ଯେଉଁଠି ଯେତେବେଳେ ଏ ଭଳି ଆନ୍ଦୋଳନ ହୋଇଛି ଗାନ୍ଧିଙ୍କୁ ନୂଆ ନୂଆ ସାଥୀ ଜୁଟି ଯାଇଛନ୍ତି । ଚମ୍ପାରଣ ଲଢ଼େଇବେଳେ ରାଜେନ୍ଦ୍ରବାବୁ ପ୍ରଭୃତିଙ୍କୁ ପାଇଥିଲେ । ଏ କୁଲିଙ୍କ-ଧର୍ମଘଟବେଳେ ସର୍ଦ୍ଦାର ବଲ୍ଲଭଭାଇ ଓ ଶଙ୍କରଲାଲ ବ୍ୟାଙ୍କରଙ୍କ ସଙ୍ଗେ ଗାଢ଼ ପରିଚୟ ହୋଇଥିଲା । ଏ ଭଳି ଯେତେକ ସାଥୀ ହେଉଥିଲେ ସେମାନେ ପ୍ରାୟ ଆଜୀବନ ଗାନ୍ଧିଙ୍କ ସହକର୍ମୀ ହୋଇଅଛନ୍ତି ।

( ୨୩ )

ଅହମଦାବାଦ ଧର୍ମଘଟ ପରେ ପରେ ଖେଡ଼ା ଗୃଷୀଙ୍କ ସତ୍ୟାଗ୍ରହ ଭିତରେ ଗାନ୍ଧୀ ପଡ଼ିଯାଇଥିଲେ । ଖେଡ଼ା ଗୁଜରାଟର ଗୋଟିଏ ଜିଲ୍ଲା । ସେ ବର୍ଷ ଫସଲ ହାନି ଯୋଗୁଁ ସେଠାରେ ଦୁର୍ଭିକ୍ଷ ଅବସ୍ଥା ଜନ୍ମିଥାଏ । ଖେଡ଼ା ପ୍ରଜାମାନେ ସେ ବର୍ଷ ରାଜସ୍ୱ ମକୁବ ରଖିବାପାଇଁ ଆନ୍ଦୋଳନ କରୁଥାଆନ୍ତି । ଶ୍ରୀ ଅମୃତଲାଲ ଠକ୍କର (ଠକ୍କରବାପା) ଏ ବିଷୟ ତଦନ୍ତ

କରି ବହୁତ ଦେଇଥାନ୍ତି ଏବଂ ନାନା କମିଶନରଙ୍କ ସଙ୍ଗେ କଥାବାର୍ତ୍ତା ମଧ୍ୟ କରିଥାନ୍ତି । ବମ୍ବେଇ ଲୋକସଭାରେ ଏହି ସମ୍ପର୍କରେ ବହୁତ୍ ଜୋର ଆନ୍ଦୋଳନ ହୋଇ ସାରିଥାଏ । ସେତେବେଳେ ଗାନ୍ଧୀ 'ଗୁଜରାଟ ସଭାର' ସଭାପତି ଥାନ୍ତି । ସଭା ତରଫରୁ ସରକାରଙ୍କୁ ଦରଖାସ୍ତ, ତାର ପ୍ରଭୃତି ବହୁତ ପଠାଯାଇଥିଲା । କମିଶନରଙ୍କ ଠାରୁ ନାନା ଧମକ ଓ ଅପମାନ ସହିବାକୁ ପଡ଼ିଥିଲା । ସେତେବେଳେ ସ୍ଥାନୀୟ ସରକାରୀ କର୍ମଚାରୀଙ୍କ ଢଙ୍ଗଢାଙ୍ଗ ଅତି ହାସ୍ୟାସ୍ପଦ ଥିଲା ।

ରାଜସ୍ୱ ଆଇନ ଅନୁସାରେ, ଫସଲ ଚାରିଅଣା ବା ତା ଠାରୁ କମ୍ ହେଲେ ପ୍ରଜାମାନଙ୍କ ରାଜସ୍ୱ ବର୍ଷକ ପାଇଁ ପୂରା ପୂରି ମକୁବ ରହିବ । ସରକାରୀ ହିସାବରେ ଫସଲ ଚାରିଅଣା ଠାରୁ ବେଶୀ ହୋଇଥିଲା । କିନ୍ତୁ ଚାରିଅଣା ଠାରୁ କମ୍ ବୋଲି ପ୍ରଜାଙ୍କର ଆପତ୍ତି ହେଉଥାଏ । ସରକାର ପ୍ରଜାଙ୍କ ଗୁହାରିରେ କାନ ଦେଲେ ନାହିଁ । ଶେଷରେ ଗାନ୍ଧୀ ଖଜଣା-ବନ୍ଦ ସତ୍ୟାଗ୍ରହ କରିବାକୁ ପରାମର୍ଶ ଦେଇଥିଲେ ।

ଏହି ଆନ୍ଦୋଳନରେ ଶ୍ରୀ ବଲ୍ଲଭଭାଇ ପଟେଲ, ଶ୍ରୀ ଶଙ୍କରଲାଲ ବ୍ୟାଙ୍କର, ମହାଦେବ ଦେଶାଇ, ଶ୍ରୀ ଇନ୍ଦୁଲାଲ ଯାଜ୍ଞିକ ପ୍ରଭୃତି ଗାନ୍ଧୀଙ୍କର ସାଥୀ ହୋଇଥିଲେ । ଏହି ସମୟରୁ ବଲ୍ଲଭଭାଇ ତାଙ୍କର ଓକିଲାତି ପେଶା ଯେ ଛାଡ଼ିଛନ୍ତି ଆଜ ସେଥିରେ ପଶି ନାହାନ୍ତି ।

ସତ୍ୟାଗ୍ରହୀମାନେ ନିମ୍ନଲିଖିତ ପ୍ରତିଜ୍ଞା ପତ୍ର ସ୍ୱାକ୍ଷର କରୁଥିଲେ, "ଆମ ଗ୍ରାମର ଫସଲ ଚାରିଅଣାରୁ କମ୍ ହୋଇଥିବାର ଜାଣି ଆମେ ସରକାରଙ୍କୁ ନିବେଦନ କରିଥିଲୁ ଯେ ଆସନ୍ତା ବର୍ଷ ଆମର ରାଜସ୍ୱ ଆଦାୟ ବନ୍ଦ ରଖାଯାଉ । କିନ୍ତୁ ସରକାର ଆମ ପ୍ରାର୍ଥନା ଶୁଣି ନାହାନ୍ତି । ଅତଏବ ଆମେ ନିମ୍ନ ସ୍ୱାକ୍ଷରକାରୀମାନେ ଏତଦ୍ୱାରା ପ୍ରତିଜ୍ଞା କରୁଛୁ ଯେ ଆମେ ଏ ବର୍ଷର ପୂରାରାଜସ୍ୱ ବା ବାକୀଥିବା ରାଜସ୍ୱ

ସ୍ୱେଚ୍ଛାରେ ଦାଖଲ କରିବୁ ନାହିଁ । ସରକାର ଅଇନ ଅନୁସାରେ ପାପ୍ୟା କରିବାର କରିବେ ଏବଂ ଆମେ ଖଜଣା ବନ୍ଦର ପରିଣାମ ସବୁ ସହିବାକୁ ପ୍ରସ୍ତୁତ ଅଛୁଁ । ବରଂ ଆମ ଜମି ସବୁ ଖାସ୍ ହୋଇଯିବ କିନ୍ତୁ ଆମେ କେବେହେଁ ସ୍ୱେଚ୍ଛାରେ ଖଜଣା ଦାଖଲ କରି ଆମ ଦାବୀକୁ ମିଛ କରିବୁ ନାହିଁ କିମ୍ବା ନିଜର ଆତ୍ମସମ୍ମାନ ହରାଇବୁ ନାହିଁ । ତଥାପି ସରକାର ଯଦି ଜିଲ୍ଲା ତମାମ ଦ୍ୱିତୀୟ କିସ୍ତି ଆଦାୟ କରିବା ବନ୍ଦ ରଖିବେ ତେବେ ଆମ ଭିତରୁ ଯେଉଁମାନେ ଦେବାକୁ ସମର୍ଥ ସେମାନେ ଛାଡ଼ା ପୂର୍ବ କିମ୍ବା ଯାହା ତାଙ୍କ ଉପରେ ବାକୀ ଥିବ ତାହା ଦେଇଦେବେ । ଯେଉଁମାନେ ଦେବାକୁ ସକ୍ଷମ ସେମାନେ ମୂଳରୁ କାହିଁକି ଦେଇ ନାହାନ୍ତି ତାହାର କାରଣ ଏୟା ଯେ ସେମାନେ ଦେଇଦେଲେ, ଗରିବ ପ୍ରଜାମାନେ ଘାବରାଇ ଯାଇ କିଛି ଜିନିଷ ବିକି ବା ବନ୍ଧା ପକାଇ ଖଜଣା ଦାଖଲ କରିଦେବେ ଏବଂ ତା ଫଳରେ ବିଶେଷ ଦୁଃଖୀ ଭୋଗିବେ । ଏପରି ଅବସ୍ଥାରେ ଗରିବଙ୍କ ଦୃଷ୍ଟିରୁ ସକ୍ଷମ ଲୋକେ ମଧ୍ୟ ଖଜଣା ବନ୍ଦ ରଖିବା ଅପାରର କର୍ତ୍ତବ୍ୟ ବିଚାରୁଛନ୍ତି ।"

ଚମ୍ପାରଣ ଭାରତବର୍ଷର ଗୋଟିଏ କୋଣରେ ଅଛି ଏବଂ ଖାସ୍ କରି ସେଠାକୁ ଯିବାକୁ ଖବର କାଗଜବାଲାଙ୍କୁ ମନା ହୋଇଥିଲା ମାତ୍ର ଖେଡ଼ା ବେଳକୁ ସେ ଭଳି ମନା ନ ଥିବାରୁ ଖବରକାଗଜରେ ସବୁ ସମ୍ବାଦ ସଙ୍ଗେ ସଙ୍ଗେ ବାହାରୁଥିଲା । ସତ୍ୟାଗ୍ରହ ପୁଣି ପଇସାରେ ଚଳେ ନାହିଁ, ଏ କଥାଟି ଗୁଜୁରାଟୀ ଲୋକେ ବୁଝି ନ ଥିଲେ । ନୂଆ କଥାଟିଏ ହୋଇଥିବାରୁ ଗୁଜରାଟୀ ଲୋକେ ଗୁରୁଆଡ଼ୁ ଟଙ୍କା ପଇସା ଅକାଡ଼ି ଦେଇଥିଲେ । ସତ୍ୟାଗ୍ରହୀ ନେତା ଓ କର୍ମୀମାନେ ସାଦାସିଧା ସରଳ ଜୀବନଯାପନ କରିବା କଥା ଶିଖିଥିଲେ । ଗୃହୀମାନଙ୍କୁ ଏଭଳି ଲଢ଼େଇ ଏକ ନୂଆ କଥା ଥିଲା । ଗାନ୍ଧୀ ଗାଁକୁ ଗାଁ ବୁଲି ସେମାନଙ୍କୁ

ସତ୍ୟାଗ୍ରହର ରହସ୍ୟ ବୁଝାଉଥିଲେ । ଗାନ୍ଧିଙ୍କ ଭାଷାରେ "ପ୍ରଧାନ କାମ ଥିଲା, ଋଷୀଙ୍କ ଡର ଛଡ଼େଇବା । ବିଶେଷକରି ହାକିମମାନେ ଲୋକଙ୍କର ମାଲିକ ନୁହନ୍ତି ବରଂ ଓଲଟା ସେମାନଙ୍କର ଚାକର, ଲୋକଙ୍କ ଖଜଣା ପଇସାରୁ ଦରମା ପାଉଛନ୍ତି ଏତିକି ପ୍ରଜାଙ୍କୁ ବୁଝାଇ ତାଙ୍କ ମନରୁ ହାକିମ୍ ଡର ଛଡ଼େଇବା । କିନ୍ତୁ ସବୁଠାରୁ ଅଡୁଆ କାମ ଥିଲା ଋଷୀମାନଙ୍କ ଡର ଛଡ଼େଇବା ସଙ୍ଗେ ସଙ୍ଗେ ତାଙ୍କୁ ବିନୟ ବା ନମ୍ରତା ଶିଖେଇବା । ଥରେ ଡର ଗୁଚିଗଲେ, ସରକାରୀ କର୍ମଚାରୀଙ୍କ ଅପମାନ ବଦଳରେ ତାଙ୍କୁ ଅପମାନ ଦେବା ପ୍ରବୃତ୍ତି ବାହାରି ପଡ଼ିଥାଏ । ମାତ୍ର ସେ ଭଳି ଅଭଦ୍ରତା କଲେ ସତ୍ୟାଗ୍ରହ ବିଗିଡ଼ି ଯାଇଥାଏ । ଦୁଧରେ ବୁନ୍ଦାଏ ଚୂନ ଅଗ ପଡ଼ିଲା ଭଳି ଏତେ ତ୍ୟାଗ କଷ୍ଟ କରି ଯଦି ବିନୟ ରଖି ନ ପାରୁ ସବୁ ବ୍ୟର୍ଥ ହୋଇଯିବ ।

ମୁଁ ଅଭିଜ୍ଞତାରୁ ଜାଣିଛି, ସତ୍ୟାଗ୍ରହରେ ସବୁଠାରୁ କଠିଣ କାମ ବିନୟ ରକ୍ଷା କରିବା । କଥାବାର୍ତ୍ତାରେ ବାହାର ଭଦ୍ରତା ଦେଖେଇବାକୁ ବିନୟ କହନ୍ତି ନାହିଁ । ସତ୍ୟାଗ୍ରହ ପାଇଁ ଭିତରେ ଭଦ୍ରତା ଲୋଡ଼ା । ପ୍ରତିପକ୍ଷର ମଙ୍ଗଳ କରିବା ପ୍ରବୃତ୍ତି ଆବଶ୍ୟକ । ସତ୍ୟାଗ୍ରହୀର ପ୍ରତ୍ୟେକ କାମରେ ବିନୟ ଫୁଟି ଦିଶିବା ଆବଶ୍ୟକ ।"

( ୨୪ )

ପ୍ରଥମେ ପ୍ରଥମେ ସରକାର କୌଣସି ଜୁଲମ କରି ନ ଥିଲେ, ଲୋକଙ୍କୁ ଭୁଲେଇଥିଲେ ଓ ମେଳ ଭାଙ୍ଗିବା ଉଦ୍ୟମ କରୁଥିଲେ । କିନ୍ତୁ ପ୍ରଜାମାନଙ୍କର ଟାଣ ମେଳ ଦେଖି ସରକାର ଜୁଲମ ଆରମ୍ଭ କଲେ । ଛୋଟ-ହାକିମମାନେ ଲୋକଙ୍କ ଗୋରୁ ଗାଈ ଚଲନ୍ତି ଧନ୍ଦା ନୀଳାମ କରିବାକୁ ଆରମ୍ଭ କରିଥିଲେ । କିଆରୀରେ ଫସଲ କ୍ରୋକ ହେଲା । ଲୋକେ ଟିକିଏ ଘାବରେଇ ଗଲେ । କେହି କେହି ଖଜଣା ଦାଖଲ କରିଦେଲେ, କେହି କେହି କ୍ରୋକବାଲାଙ୍କ ହାତରେ

ସଙ୍କଟରେ ପଡ଼ିଯିବ ବୋଲି ଚଳନ୍ତି ସମ୍ପତ୍ତିକୁ ବାହାରେ ଥୋଇ ଦେଉଥାନ୍ତି । ଏହିପରି ଦୁର୍ବଳତା ଦେଖାଯାଇଥିଲା । କିନ୍ତୁ ଅଧିକାଂଶ କୃଷକ ଶେଷ ପର୍ଯ୍ୟନ୍ତ ଲଢ଼ିବାକୁ ପ୍ରସ୍ତୁତ ଥିଲେ ।

ଶ୍ରୀ ଶଙ୍କରଲାଲ ପାରିଖ ଏ ଆନ୍ଦୋଳନରେ ଜଣେ ନେତା ଥିଲେ । ତାଙ୍କର କେତେକ ଜମିର ଖଜଣା ତାଙ୍କର କେତେକ ଭାଗଚାଷୀ ଦାଖଲ କରି ଦେଇଥିଲେ । ଏଥିରେ ଚହଳ ପଡ଼ିଗଲା । ସାଙ୍ଗେ ସାଙ୍ଗେ ପାରିଖ ମହାଶୟ ଏ ଭୁଲକୁ ସୁଧାରିବା ପାଇଁ ସେହି ଜମିକୁ ଦେବତ୍ର କରି ଦେଇଥିଲେ । ଗାନ୍ଧୀ ଆଜି ଏହି ଘଟଣା ଉଲ୍ଲେଖ କରିଛନ୍ତି । “ଖଣ୍ଡେ ପିଆଜ କିଆରୀ କ୍ରୋକ ହୋଇଥାଏ । ଲୋକଙ୍କ ଡର ଭାଙ୍ଗିବା ପାଇଁ ମୁଁ ଶ୍ରୀ ମୋହନଲାଲ ପାଣ୍ଡ୍ୟାଙ୍କୁ କହିଲି ‘ସେ ପିଆଜତକ ଖୋଳି ନେଇଆସ’ ମୋର ବିଚାରରେ ସେ କ୍ରୋକ ଅନ୍ୟାୟ କ୍ରୋକ ଥିଲା । ଏହା ମୋ ମତରେ ଆଇନ ଅମାନ୍ୟ ନ ଥିଲା । ସରକାରୀ କ୍ରୋକ ଆଇନ ଅନୁସାରେ କରାଯାଇଥିଲେ ମଧ୍ୟ ନୀତି ଦୃଷ୍ଟିରେ ଏହା ଅନ୍ୟାୟ ଥିଲା । ଏହା ଏକ ପ୍ରକାର ଲୁଟତରାଜ ଥିଲା । ତେଣୁ ମୁଁ ପରାମର୍ଶ ଦେଇଥିଲି ଯେ କ୍ରୋକସତ୍ତ୍ୱେ ସେ ପିଆଜ ଖୋଳି ଆଣିବା ଲୋକଙ୍କର କର୍ତ୍ତବ୍ୟ ଥିଲା ।” ଶ୍ରୀ ମୋହନଲାଲ ପାଣ୍ଡ୍ୟା ପାଞ୍ଚ ସାତ ଜଣଙ୍କୁ ସଙ୍ଗରେ ନେଇ ଆନନ୍ଦରେ ଏ କାମଟି କରିଥିଲେ । ଜୋରିମାନା ଦେବାକୁ ବା ଜେଲ ଭୋଗିବାକୁ ତାଙ୍କ ମନ ଉଚ୍ଛୁଳି ଉଠୁଥିବା, ତାଙ୍କୁ ଏ ସୁଯୋଗ ମିଳିଯାଇଥିଲା, ସେ ଧରା ହୋଇଥିଲେ ଲୋକଙ୍କ ଉତ୍ସାହ ବଢ଼ିଥିଲା । ଡର ବି ଭାଙ୍ଗି ଯାଇଥିଲା । ମକଦ୍ଦମା ଶୁଣାଣି ଦିନ ହଜାର ହଜାର ଚାଷୀ ପାଇଁ କଚେରୀରେ ଜମା ହୋଇଥିଲେ ।

ଏ ଆନ୍ଦୋଳନ ହଠାତ୍ ସରି ଯାଇଥିଲା । ହାକିମମାନେ ଲିଖିତ ହୁକୁମ ଦେଲେ ଯେ ଗରିବଙ୍କୁ ଛାଡ଼ ମିଳିଯିବ । ସକ୍ଷମ ଲୋକେ

ଦେଇ ଦିଅନ୍ତୁ । କଲେକ୍ଟର ଲେଖି ପଠାଇଲେ ଯେ ସ୍ୱଳସ୍ୱ ଅଦାୟ ବର୍ଷକ ପାଇଁ ମୁଲତବୀ ରଖିବା ସକାଶେ ହୁକୁମ ଦିଅ ସନ୍ତୁ । ଏତକ ପ୍ରଜାଙ୍କ ପ୍ରତିଜ୍ଞା ଅନୁସାରେ ପୂରଣ ହୋଇ ଯାଇଥିଲା ସତ କିନ୍ତୁ ଟିକିଏ କେଁ ରହି ଯାଇଥିଲା । ଗରିବ କିଏ ସେ କଥା କିଏ ଠିକ୍ କରି କହିବ ? ଗାନ୍ଧିଙ୍କ ବିଚାରରେ ଏତକ କ୍ଷମତା ଲୋକଙ୍କ ହାତରେ ରହିବା ଉଚିତ ଥିଲା, ଏତକ ହୋଇଥିଲେ ସତ୍ୟାଗ୍ରହର ପୂର୍ଣ୍ଣ ଜୟ ହୋଇଥାନ୍ତା । ତଥାପି ଗାନ୍ଧୀ ଏତିକରେ ସନ୍ତୁଷ୍ଟ ହୋଇ ଯାଇଥିଲେ, କାରଣ ଲୋକେ ଥକି ପଡ଼ିଥିଲେ । ଯେ ଝୋକ ଠାଣି ଥିଲେ ତାଙ୍କର ଏକଦମ୍ ସର୍ବନାଶ କରି ଛାଡ଼ିବା ଗାନ୍ଧିଙ୍କର ଇଚ୍ଛା ନ ଥିଲା । ଯେତିକି ମିଳିଲା ସେତିକିରେ ଭଲରେ ଭଲରେ ଆନ୍ଦୋଳନ ବନ୍ଦ କରାଯାଇଥିଲା ।

ଏ ଆନ୍ଦୋଳନ ଫଳରେ କୃଷୀ ଆପଣା ବଳ ଜାଣି ନେଇ ପାରିଥିଲା । ସାଧାରଣ ଲୋକେ ଭଲ ରକମ ବୁଝିଗଲେ ଯେ ଆପଣା ମୁକ୍ତି ଆପଣା ହାତରେ, ଆପଣା ଦୁଃଖ କଷ୍ଟ ସହିବା ଶକ୍ତି ଉପରେ ନିର୍ଭର କରୁଥିଲା । ଏହାରି ଫଳରେ ଗୁଜରାଟରେ ସତ୍ୟାଗ୍ରହର ଚେର ମାଡ଼ିଥିଲା । ଏହି ଆନ୍ଦୋଳନ ଫଳରେ ଶ୍ରୀ ବଲ୍ଲଭଭାଇ ପଟେଲ ଆପଣା ଶକ୍ତି ବୁଝିପାରିଥିଲେ ଏବଂ ଦେଶ ତାଙ୍କୁ ପୁରାପୁରି ଦେଶସେବକରୂପେ ପାଇଥିଲା । ଶିକ୍ଷିତ କର୍ମୀମାନେ ବୁଝିଥିଲେ ଯେ ଗରିବଙ୍କ ସଙ୍ଗେ ଏକରସ ହେବା ତାଙ୍କର ପ୍ରଧାନ କାମ । କିନ୍ତୁ ଗାନ୍ଧିଙ୍କ ମନରେ ପୂର୍ଣ୍ଣ ସନ୍ତୋଷ ହୋଇ ନ ଥିଲା କାରଣ ଛଗାକୁଳ ସତ୍ୟାଗ୍ରହି ଅସ୍ତ୍ରକୁ ସିନା ଚିହ୍ନି ପାଇଥିଲେ, ତାକୁ କିପରି ବ୍ୟବହାର କରିବାକୁ ହେବ ତାହା ଭଲକରି ଶିଖି ନ ଥିଲେ, ତାର ମର୍ମ ବୁଝି ନ ଥିଲେ । ପରେ ମଧ୍ୟ ସେ କଥା ଅକ୍ଷରେ ଅକ୍ଷରେ ସତ ବୋଲି ଜଣା ପଡ଼ିଥିଲା ।

ଏତ ୧୯୧୭ର କଥା । ସେତେବେଳକୁ ଇଉରୋପରେ ପ୍ରଥମ ମହାସମର ଧମାଧୋଡ଼୍ ଲାଗି ଯାଇଛି । ଭାରତବର୍ଷରେ ସରକାର ମଧ୍ୟ ଭାରତ ରକ୍ଷା ନୀତିରେ ଦେଶସେବକମାନଙ୍କୁ ଅଟକବନ୍ଦୀ କରି ତାଙ୍କ ଗତିବିଧିରେ କଟକଣା କରୁଥାଆନ୍ତି । ମୌଲାନା ମହମଦ ଅଲ୍ଲୀ ଓ ମୌଲାନା ଶୌକତ ଅଲ୍ଲୀଙ୍କୁ ସରକାର ଅଟକବନ୍ଦୀ କରି ଥାଆନ୍ତି । ଲୋକମାନ୍ୟ ତିଲକଙ୍କୁ ଦିଲ୍ଲୀ ଯାଡ଼କୁ ଆସିବା ମନା ହୋଇଥାଏ । ଗାନ୍ଧି ସରକାରଙ୍କ ଅନୁମତି ନେଇ ଅଲ୍ଲୀ ଭାଇମାନଙ୍କ ସଙ୍ଗେ ଚିଠିପତ୍ର ଚଳାଇଥାନ୍ତି ।

ମୁସଲମାନ ସେବକମାନଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରିବାକୁ ଗାନ୍ଧୀ ସବୁବେଳେ ସଚେଷ୍ଟ ଥାଆନ୍ତି, କାରଣ ହିନ୍ଦୁ ଓ ମୁସଲମାନ ଦୁଇ ଧର୍ମାବଲମ୍ବୀ ଭିତରେ ଏକତା ଓ ମୈତ୍ରୀ ସ୍ୱରାଜ୍ୟ ପାଇଁ ଏକାନ୍ତ ଲୋଡ଼ା, ଏକଥା ଗାନ୍ଧୀ ହୃଦୟଙ୍ଗମ କରି ସାରିଥିଲେ ।

( ୨୭ )

ଏତିକି ବେଳେ ବଡ଼ ଲାଟ ଏକ ଯୁଦ୍ଧ ସମ୍ମିଳନୀ ଡକାଇଥିଲ ଗାନ୍ଧୀଙ୍କୁ ନିମନ୍ତ୍ରଣ ଆସିଥିଲା । ଅନେକ ଭାବିବା ଚିନ୍ତିବା ପରେ ଓ ବଡ଼ଲାଟଙ୍କ ସଙ୍ଗେ ଚିଠି ଲେଖା ଲେଖି ପରେ ସେ ସମ୍ମିଳନୀରେ ଯୋଗ ଦେଇଥିଲେ । ସମ୍ମିଳନୀର ଯୁଦ୍ଧ ସାହାଯ୍ୟ ପ୍ରସ୍ତାବକୁ ସେ ସମର୍ଥନ କରିଥିଲେ । ଗାନ୍ଧୀ ତାଙ୍କର ବକ୍ତବ୍ୟ ହିନ୍ଦି ଭାଷାରେ କହିଥିଲେ । ବଡ଼ ଲାଟଙ୍କ ଆଗରେ ଏ ଭଳି ସମ୍ମିଳନୀରେ ହିନ୍ଦିରେ କହିବା ଏହା ପ୍ରଥମ ଥିଲା ।

ସମ୍ମିଳନୀ ପରେ ପରେ ଗାନ୍ଧୀ ବଡ଼ଲାଟଙ୍କୁ ଖଣ୍ଡିଏ ଚିଠି ଲେଖିଥିଲେ । "...... ଆମ ଘର କଳି ବନ୍ଦ ରଖିବାକୁ ଆପଣ ନିବେଦନ କରିଛନ୍ତି, ଏହାର ଅର୍ଥ ଯଦି ହୁଏ କି ଆମେ ସରକାରଙ୍କର ଅନ୍ୟାୟ ଅତ୍ୟାଚାର ସହିଯିବୁ, ତେବେ ମୁଁ ତାହା କରିବାକୁ ଅକ୍ଷମ,

ମୁଁ ମୋର ପାରୁପର୍ଯ୍ୟନ୍ତ ସଂଗଠିତ ସତ୍ୟାଗ୍ରହର ପ୍ରତିରୋଧ କରିବି । ସେ କର୍ମଚାରୀମାନଙ୍କୁ ଆପଣ ନିବେଦନ କରନ୍ତୁ ଯେ ସେମାନେ ଯେପରି ଜଣେ ହେଲେ ତାହାର ପ୍ରତି ଦୁର୍ବ୍ୟବହାର ନ କରନ୍ତି ଓ ଲୋକମତକୁ ବୁଝି ମାନି ଚଳନ୍ତି । ଏହା ସେମାନେ ଆଗରୁ କରି ନାହାନ୍ତି । ଚମ୍ପାରଣରେ ଏକ ଯୁଗବ୍ୟାପୀ ସତ୍ୟାଗ୍ରହର ବିରୋଧ ମୁଁ କରିଛି । ତାହା ଫଳରେ ଇଂରାଜୀ ନ୍ୟାୟର ପ୍ରାଧାନ୍ୟ ପ୍ରମାଣ କରି ଦେଇଛି । ଖେଡ଼ାରେ ଲୋକେ ସରକାରଙ୍କୁ ଗାଳି ଦେଉଥିଲେ । ଏବେ ସେମାନେ ବୁଝୁଛନ୍ତି ଯେ ଯଦି ସତ୍ୟ ପାଇଁ କଷ୍ଟ ସହିବାକୁ ସେମାନେ ବାହାରି ପଡ଼ିବେ ତେବେ କ୍ଷମତା ତାଙ୍କ ହାତକୁ ଆସିଯିବ, ସରକାର ହାତରେ ଆଉ ନ ଥିବ ।......ଏ ସବୁ ଦିଗରେ ମୋର କାମ ବନ୍ଦ କରିବାକୁ ଆପଣ କହିବେ ତ ତାହାର ଅର୍ଥ ହେବ ମୋର ପ୍ରାଣବାୟୁ ରୁନ୍ଧିଦେବା । ଏ ଆଧ୍ୟାତ୍ମିକ ବଳର ଅନ୍ୟ ନାମ ପ୍ରେମର ବଳ ! ପଶୁବଳ ପରିବର୍ତ୍ତେ ଏହାକୁ ଯଦି ଭାରତରେ ମୁଁ ଲୋକପ୍ରିୟ କରି ପାରିବି ତେବେ ମୁଁ ଆପଣଙ୍କୁ ଏପରି ଏକ ଭାରତବର୍ଷ ଉପହାର ଦେବି ଯାହା କି ସମଗ୍ର ଦୁନିଆର ଜୁଲୁମ ବିରୁଦ୍ଧରେ ଠିଆ ହୋଇ ପାରିବ ।" ଗାନ୍ଧୀ ଯୁଦ୍ଧରେ ସାହାଯ୍ୟ କରିବା ପ୍ରସ୍ତାବକୁ ସମର୍ଥନ କରି ଚୁପ ହୋଇ ବସିବା ଲୋକ ନ ଥିଲେ । ସେ ସଙ୍ଗେ ସଙ୍ଗେ ସୈନ୍ୟ ସଂଗ୍ରହ କାମରେ ବାହାରି ପଡ଼ିଥିଲେ । ପ୍ରଥମେ ଆପଣା ସାଥୀମାନଙ୍କ ସଙ୍ଗେ ପରାମର୍ଶ କରିଥିଲେ; ଅନେକେ କଥାଟାକୁ ପସନ୍ଦ କରି ନ ଥିଲେ । ଯାହାହେଉ ଗାନ୍ଧୀ ସୈନ୍ୟ ସଂଗ୍ରହ ପାଇଁ ଖେଡ଼ା ଅଞ୍ଚଳ ବାଛିଥିଲେ । କାମକୁ ତ ବାହାରି ପଡ଼ିଥିଲେ ସତ କିନ୍ତୁ ତାଙ୍କ ଆଖି ଶୀଘ୍ର ଫିଟି ଯାଇଥିଲା । ଖଜଣା ବନ୍ଦ ଆନ୍ଦୋଳନବେଳେ ଯେଉଁ ସହଯୋଗ ପାଉଥିଲେ, ଏବେ ତାହାର ନାମ ଗନ୍ଧ ନ ଥିଲା । ସେତେବେଳେ ବଳଦ ଗାଡ଼ି ନାଁ ଧରିଲାକ୍ଷଣି ଦୁଇ ଗୃହସ୍ଥ ଆସି ଠିଆ

ହୋଇ ଯାଉଥିଲେ । ଜଣେ ସ୍ୱେଚ୍ଛାସେବକ ଖୋଜିଲେ ଗୃହ ପାଞ୍ଚ ଜଣ ବାହାର ପଡ଼ୁଥିଲେ । କିନ୍ତୁ ଏତେବେଳେ ଗୋଟିଏର ସୁଦ୍ଧା ଦେଖା ମିଳୁ ନ ଥିଲା । ଗାନ୍ଧୀ ଗୋଡ଼ରେ ଚାଲି ଚାଲି ଗାଁକୁ ଗାଁ ବୁଲୁଥିଲେ । ଆପଣା ଖାଇବା ଖୋରାକ ସାଙ୍ଗେ ସାଙ୍ଗେ ନେଇ ଯାଉଥିଲେ । ସଭା ସମିତି କରୁଥିଲେ । ଲୋକେ କାନ୍ଦୁ ନାନା ରକମ ପ୍ରଶ୍ନ ପଚାରୁ ଥାନ୍ତି—ତମେ ତ ଅହିଂସାକୁ ମାନ, ତମେ କମିତି ଯୁଦ୍ଧ କରିବାକୁ କହୁଛ ? ସରକାର ଆମର କଣ କରନ୍ତି ଯେ ଆମେ ତା ସଙ୍ଗେ ସହଯୋଗ କରିବୁ ? ଇତ୍ୟାଦି, ଇତ୍ୟାଦି । ଯାହାହେଉ ଗାନ୍ଧୀଙ୍କ ଲାଗିପଡ଼ିବା ଫଳରେ ଅନେକ ଲୋକ ଯୋଗ ଦେଇଥିଲେ ।

ଏହାପରେ କଠିନ ପରିଶ୍ରମ ଫଳରେ ଗାନ୍ଧୀଙ୍କ ସ୍ୱାସ୍ଥ୍ୟ ଖରାପ ହୋଇ ଯାଇଥିଲା; ଆମାଶୟ ରୋଗରେ ପଡ଼ି ଯାଇଥିଲେ । ରୋଗ ସାଂଘାତିକ ହୋଇ ତାଙ୍କର ବଞ୍ଚିବାର ଆଶା ନ ଥିଲା । ଏତେ ବେମାର ପଡ଼ି ସୁଦ୍ଧା ଗାନ୍ଧୀ କୌଣସି ପ୍ରକାରେ ଆପଣାର ପ୍ରତିଜ୍ଞା ଭାଙ୍ଗି ନ ଥିଲେ । ମାଂସ ଅଣ୍ଡା ପ୍ରଭୃତି ଖାଇବାକୁ ଅନେକ ଡାକ୍ତର ପରାମର୍ଶ ଦେଉଥାନ୍ତି; ଗାନ୍ଧୀ ସମସ୍ତଙ୍କୁ ଏକା ପଦେ 'ନାଁ' ଜବାବ ଦେଉଥିଲେ । ସେ ବହୁତ ଦିନୁ ଦୁଧ ଖାଇବା ଛାଡ଼ି ଦେଇଥାନ୍ତି । ଦୁଧ ମନୁଷ୍ୟର ସ୍ୱାଭାବିକ ଖାଦ୍ୟ ନୁହେଁ ଏବଂ ଲୋକେ ଗାଈ, ମଇଁଷିଙ୍କୁ ବେଶି କଦର୍ଯ୍ୟ ଭାବରେ ଫୁଙ୍କା ବସାଇ ଦୁହାଁନ୍ତି, ଏହିସବୁ କାରଣରୁ ସେ ଦୁଧ ଖାଇବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଏହି ବେମାରିରେ ସେ ଆତ୍ମୀୟ ସ୍ୱଜନଙ୍କର କଥାରେ ପଡ଼ି ଛେଳି ଦୁଧ ଖାଇବାକୁ ଆରମ୍ଭ କରିଥିଲେ । କିନ୍ତୁ ଏହାଦ୍ୱାରା ତାଙ୍କର ବ୍ରତ ଅକ୍ଷରେ ଅକ୍ଷରେ ରହିଗଲେ ସୁଦ୍ଧା, ବ୍ରତର ଭାବକୁ ମାରି ଦିଆଯାଇଥିଲା ବୋଲି ଗାନ୍ଧୀଙ୍କର ମନରେ ଏକ ଗ୍ଳାନି ରହି ଯାଇଥିଲା ଏବଂ ସେ ଛେଳି ଦୁଧ ଛାଡ଼ିଦେବାକୁ ସବୁବେଳେ ଚେଷ୍ଟା କରୁଥିଲେ । ସେ କହୁଥାନ୍ତି

"ସେବା କରିବା ପାଇଁ ଯେ ତୀବ୍ର ବାସନା ତାହା ଅତି ସୂକ୍ଷ୍ମ ହେଲେ ମଧ୍ୟ ବଡ଼ ଶକ୍ତିଶାଳୀ ପ୍ରଲୋଭନ ଏବଂ ସେ ପ୍ରଲୋଭନରୁ ମୁଁ ମୁକ୍ତ ହୋଇ ପାରୁନାହିଁ ।" ଗାନ୍ଧୀ ଆରୋଗ୍ୟ ଲାଭ କରି ସୁସ୍ଥ ସବଳ ହେଉଁ ହେଉଁ ୧୯୧୮ ପ୍ରାୟ ଶେଷ ହୋଇ ଆସିଥିଲା ।

( ୨୭ )

ଏହି ସମୟ ଭିତରେ ଖଦୀର ଜନ୍ମ ହୋଇଥିଲା । ଗାନ୍ଧୀ ଆଶ୍ରମ ଗଢ଼ିବା ପରେ ପରେ ଅରଟକୁ ଖୋଜି ବୁଲୁଥିଲେ । ୧୯୦୮ରେ ସେ ଯେତେବେଳେ ହିନ୍ଦ-ସ୍ୱରାଜ ବହି ଖଣ୍ଡି ଲେଖନ୍ତି ସେତେବେଳେ ସେ ମାନସ ଚକ୍ଷୁରେ ଦେଖିପାରିଥିଲେ ଯେ ଭାରତର ଗାଁ ଗଣ୍ଡାରେ ଘରେ ଘରେ ହାତରେ ସୂତାକଟା ଓ ଲୁଗାବୁଣା ନ ହେଲେ ଭାରତର ମୁକ୍ତି ହେବ ନାହିଁ । କେଉଁଠି ଅରଟ ଚୁଲୁଛି ବୋଲି ଶୁଣିଲେ ଲୋକ ପଠାଇ ସୂତାକଟା ଶିଖି ଆସିବାକୁ କହୁଥାନ୍ତି । ଶେଷରେ ୧୯୧୭ରେ ଗାନ୍ଧୀ ଗୋଧରାଠାରେ ଏକ ଶିକ୍ଷା ସମ୍ମିଳନୀରେ ସଭାପତି ହୋଇଥିଲେ । ସେଠାରେ ଜଣେ ଦେଶସେବିକାଙ୍କ ସଙ୍ଗେ ପରିଚୟ ହେଲା । ତାଙ୍କ ନାମ ଥିଲା ଗଙ୍ଗାବେନ୍ ମଜମୁନ୍ଦାର, ସେ ବିଧବା ଥିଲେ । ଲେଖା ପଢ଼ା ସେମିତି ଜାଣି ନ ଥିଲେ । କିନ୍ତୁ ସାହସ ଓ ସାଧାରଣ ବୁଦ୍ଧିରେ ଶିକ୍ଷିତା ମହିଳାଙ୍କଠାରୁ ତେର ଉଚ୍ଚ ଦରର ଲୋକ ଥିଲେ । ସେ ଗ୍ରାମାଞ୍ଚଳେ ବୁଲି ଅସ୍ପୃଶ୍ୟ ଓ ଅତ୍ୟାଚାରିତ ଲୋକମାନଙ୍କର ସେବା କରୁଥିଲେ । ସେମାନଙ୍କୁ ଛୁଇଁବା ବାଛୁ ନ ଥିଲେ । ଗାନ୍ଧୀ ଅରଟ ସମ୍ବନ୍ଧରେ ନିଜର ମନର ଦୁଃଖ ତାଙ୍କୁ ଶୁଣାଇଥିଲେ ଏବଂ ସେହି ମହିଳା ଅରଟକୁ ଖୋଜି ବାହାର କରିବେ ବୋଲି ଜବାବ ଦେଇଥିଲେ ।

ଗାନ୍ଧୀ କେମିତି ଖୋଜି ଖୋଜି ଅରଟ ପାଇଥିଲେ ତାହା ସେ ଅନେକ ଜାଗାରେ କହୁଥାନ୍ତି । ଥରେ ୧୯୨୭ରେ ମାନ୍ଦ୍ରାଜଠାରେ ସୌରାଷ୍ଟ୍ର ଛାତ୍ରମାନଙ୍କ ସଭାରେ କହୁଁ କହୁଁ ନିଜର ଇତିହାସ

କହିବାକୁ ଆରମ୍ଭ କରିଥିଲେ । "......ମୁଁ ତମକୁ ଜଣାଇ ଦଏଁ—ତେମେ ଏ କଥା ଜାଣି ନ ଥିବ, ଭାରତରେ ବହୁତ କମ୍ ଲୋକେ ଏ କଥା ଜାଣିଥିବେ—ତେମେମାନେ ଆଜ ଯାହା କରୁଛ ମୁଁ ସେଇଆ କରି ଭାରତରେ କାମ ଆରମ୍ଭ କରିଥିଲି । ୧୯୧୫ରେ ମୁଁ ପ୍ରଥମେ ତନ୍ତ ହୋଇଥିଲି । ମୁଁ ପ୍ରଥମେ ତନ୍ତ ତା.ଧରେ କଣ୍ଠାଳୀ ହୋଇଥିଲି । ମୁଁ ଏହି ହାତରେ ବିଦେଶୀ ଓ ଦେଶୀ କଳସୂତାରେ ଲୁଗା ବୁଣିଛି । ଏହି ବ୍ୟବସାୟର ରହସ୍ୟ ମୁଁ ତମମାନଙ୍କଠାରୁ ବେଶୀ ଜାଣେ । ଏତେ ବଡ଼ ଦାବୀ କରୁଛି ବୋଲି ମୋତେ କ୍ଷମା କରିବେ । ମୁଁ ଲୁଗା ବୁଣିଲା ବେଳେ ଯେଉଁ ଜାଗାରେ ବସୁଥିଲି, ତାହା ଆଜ ମୁଁ ଦେଖାଇ ଦେଇ ପାରିବ । ମୁଁ ତମପରି ଭଲ ଲୁଗା ବୁଣିପାରୁ ନ ଥିଲି ସତ, କିନ୍ତୁ ତନ୍ତରେ ବସିଲାବେଳେ ମୁଁ ଭାବୁଥିଲି ଯେ ମିଲ୍‌ମାନେ ଯଦି ଏମିତି ଲୁଗା ବୁଣିବେ ତେବେ ମୁଁ କଅଣ କରିବ ? ଲକ୍ଷ ଲକ୍ଷ ତନ୍ତ କଅଣ କରିବେ ? ଏହି କଥା ଚିନ୍ତିଲା ବେଳେ ଆମର ଗାଁ ଗଣ୍ଡାରେ ଭିକ ଉପାସରେ ରହୁଥିବା ସେହି ଗରିବ ଭଉଣୀମାନଙ୍କ କଥା ଅନ୍ତରରେ ଜାଗି ଉଠିଥିଲା......ମୋ ମନ ବଡ଼ ଖରାପ ହେଲା, ମନ କେଉଁଥିରେ ଲାଗିଲା ନାହିଁ । ସାଥୀମାନଙ୍କୁ ସାଙ୍ଗରେ ନେଇ ଜଣେ ସୂତାକଣ୍ଠାଳୀ ଖୋଜି ବୁଲିଲି, ଯେ କି ଆମକୁ ସୂତାକଣ୍ଠା ଶିଖେଇ ଦଅନ୍ତା । ସୂତାକଣ୍ଠା ଚଳୁଥିବ, ଏ ଭଳି ଗାଁଟିଏ ଯଦି ମିଳିଯାଏ ସେଥିପାଇଁ ଗାଁ ବ ଖୋଜି ବୁଲୁଥିଲି । ପଞ୍ଜାବରେ ଅନେକ ଭଉଣୀ ସୂତା କାଟନ୍ତି ବୋଲି ମୋତେ ସେତେବେଳକୁ ଜଣା ନ ଥିଲା । ନିରାଶା ମୋତେ ଘେରି ଗଲାବେଳକୁ ମୁଁ ଏକ ସାହସୀ ବିଧବା ରମଣୀର ଆଶ୍ରୟ ପାଇଥିଲି ।"

ଶେଷରେ ସେହି ରମଣୀ ଅରଟ ଖୋଜି ବାହାର କରିଥିଲେ । ବରୋଦା ରାଜ୍ୟର ବିଜାପୁରଠାରେ କେତେ ଜଣ ମୁସଲମାନଙ୍କ ଘରେ

ଅରଟ ଥିଲ । ବଳଣା ନିୟମିତ ଯୋଗାଇଲେ ସେମାନେ କାଟିବାକୁ ପ୍ରସ୍ତୁତ ଥିଲେ । ଅରଟଯ଼ାଙ୍କ ସଙ୍ଗରେ ପଡ଼ିଥିଲ । ଗାନ୍ଧୀ ଏ ଖବର ପାଇ ବଳଣା ଖୋଜଥିଲେ । ପ୍ରଥମେ ମିଲ୍ ବଳଣା ପଠା ଯାଇଥିଲ । ପରେ ଅନେକ ଟଙ୍କା ଦେଇ ତୂଳାଭଣାଳୀ ରଖି ବଳଣା ତିଆର ହେଲ । ସ୍ୱର୍ଗୀୟ ମଗନଲଲ୍ ଗାନ୍ଧୀ କଲକବ୍‌ଜା ବିଷୟରେ ବଡ଼ ଦକ୍ଷ ଥିଲେ । ସେ ନିଜେ ଅତି ଶୀଘ୍ର ଅରଟ ପ୍ରସ୍ତୁତ ତିଆର କରେଇ ଅନେକଙ୍କୁ ସୂତାକଟା ଶିଖେଇଥିଲେ । ସେତେବେଳକୁ ବମ୍ବେଠାରେ ଗାନ୍ଧୀ ବେମାରିରୁ ଉଠୁଥାନ୍ତି । ତାଙ୍କର କେତେକ ବନ୍ଧୁ ସୂତାକଟା ଶିଖି ତାଙ୍କ ପାଖରେ ସୂତା କାଟୁଥାନ୍ତି । ଗାନ୍ଧୀ ଲେଖିଛନ୍ତି, "ଅରଟର 'ଘୁଁ, ଘୁଁ' ଶବ୍ଦ ମୋ ସ୍ୱାସ୍ଥ୍ୟ ଫେରେଇ ଆଣିବାରେ ଯଥେଷ୍ଟ ସାହାଯ୍ୟ କରିଥିଲି, ଏ କଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହାର ପ୍ରଭାବ ମୋ ଦେହଠାରୁ ମୋ ମନ ଉପରେ ବେଶୀ ପଡ଼ିଥିଲ ଏବଂ ମନ ଶରୀର ଉପରେ କିପରି ପ୍ରଭାବ ପକାଏ ତାହା ଏଠାରେ ସ୍ପଷ୍ଟ ପ୍ରମାଣିତ ହୋଇଥିଲ ।" ସେତେବେଳେ ଖଦୀ ମୋଟା ଓ ଅଳ୍ପ ଓସାରର ହେଉଥାଏ । ତାହାର ଦାମ୍ ଗଜ ସତରଅଣା ପଡ଼ୁଥାଏ । ଗାନ୍ଧୀଙ୍କ ବନ୍ଧୁମାନେ ଆନନ୍ଦରେ କିଣି ନେଉଥାନ୍ତି ।

ଗାନ୍ଧୀଙ୍କର "ସ୍ୱଦେଶୀ" ଭାବନା ଜଣାଶୁଣା । ଆଗରୁ ତାଙ୍କ "ସ୍ୱଦେଶୀ"ର ଅର୍ଥ ବୁଝେଇ ଦିଆଯାଇଛି । ସେହି ଭାବନାରୁ ଅରଟ ତଥା କପଡ଼ ତାଙ୍କ ମନକୁ ଆସିଥିଲ, ତାହା ସେ ନିଜେ ବର୍ଣ୍ଣନା କରିଛନ୍ତି, "ଯଦି ଆମେ ସ୍ୱଦେଶୀ ନୀତି ମାନି ଚଳିବା ତେବେ ଆମର କର୍ତ୍ତବ୍ୟ ହେବ ଯେ ଏପରି ପଡ଼ୋଶୀ ଖୋଜି ବାହାର କରିବା ଯେ କି ଆମର ଅଭାବ ପୂରଣ କରିବେ, ଆମର ଦରକାରୀ ଦ୍ରବ୍ୟ ଯୋଗାଇ ପାରିବେ । ଯଦି ଦେଖିବା ତାଙ୍କୁ କୌଣସି ଭଲ ଧନ୍ଦା ମିଳୁ ନାହିଁ ଏବଂ ସେ ମଧ୍ୟ ଆମର ଦରକାରୀ ଜିନିଷ ତିଆରି କରି ଜାଣନ୍ତି

ନାହିଁ, ଆମେ ତାଙ୍କୁ ସେ ଜିନିଷ ତିଆରି କରିବା ଶିଖେଇ ଦେବା । ତା ହେଲେ ଭାରତର ପ୍ରତ୍ୟେକ ଗାଁ ଆପଣା ଉପରେ ନିର୍ଭର କରି ଚଳିବ । କେବଳ ଯାହା ସେ ତିଆରି କରି ପାରିବେ ନାହିଁ ସେଇଥି ପାଇଁ ବଦଳେଇବାକୁ ଗାଁ ବାହାରକୁ ଯିବେ ।"

ଗାନ୍ଧୀ ଅନ୍ୟତ୍ର ପୁଣି ଲେଖିଛନ୍ତି, "ମୁଁ ଏହିପରି ସ୍ୱଦେଶୀ କଥା ଚିନ୍ତା କରୁଁ କରୁଁ ଏବଂ ସ୍ୱଦେଶୀ ନୀତିକୁ ସମାଜରେ ଖଟେଇଲେ କଅଣ ନହେବ ତାହା ବିଚାରୁ ବିଚାରୁ ମୋ ଆଖିକୁ ଖଦଡ଼ ଦିଶି ଯାଇଥିଲା । ମୁଁ ନିଜକୁ ନିଜେ ପଚାରିଥିଲି, "ଆଜି ଭାରତବର୍ଷର ଲକ୍ଷ ଲକ୍ଷ ଲୋକେ ମୋ ଠାରୁ କେଉଁ ସେବା ବେଶୀ ଲୋଡ଼ୁଛନ୍ତି ? ସେ ସେବା ପୁଣି ଏ ଭଳି ହୋଇଥିବ ସମସ୍ତେ ଯାହାକୁ ବୁଝି ପାରିବେ, ସମସ୍ତେ ପସନ୍ଦ କରି ପାରିବେ, ଯାହା କି ସହଜରେ କରି ହେବ ଏବଂ ଆମର ଯେଉଁ କୋଟି କୋଟି ଦେଶବାସୀ ଅଧାପେଟ ଖାଇ ମରିବାକୁ ବସିଛନ୍ତି ତାଙ୍କୁ ଯେଉଁ ସେବା ବଞ୍ଚେଇ ଦେବ, ସେପରି ସେବା କଣ ହୋଇପାରେ ? ମୋ ଭିତରୁ ମୋତେ ଜବାବ ମିଳିଥିଲା ଯେ ଖଦଡ଼ ବା ଅରଟକୁ ଗୃହଅଡ଼େ ଚଳେଇ ପାରିଲେ ଏ ସମସ୍ତ ଉଦ୍ଦେଶ୍ୟ ସିଦ୍ଧ ହୋଇ ପାରିବ ।"

ଆଉ ଥରେ ଜଣଙ୍କ ଚିଠିର ଜବାବରେ ଲେଖିଛନ୍ତି, "ମୋର ବିଶ୍ୱାସ, ମୋର ସବୁ କାମ ଭିତରେ ଅରଟହିଁ ସବୁଠାରୁ ବେଶୀ ଉପକାରୀ ଏବଂ ସବୁଠାରୁ ବେଶୀ ସ୍ଥାୟୀ । ଏହି ଅରଟଦ୍ୱାରା ଭାରତର କୋଟି କୋଟି କୁଟୀରରେ ଅଭାବ କଷ୍ଟ ଦୂର ହେବ ତଥା ଏହାରି ଦ୍ୱାରା ଭବିଷ୍ୟତରେ ଦୁର୍ଭିକ୍ଷ ନିବାରିତ ହେବ । ମୋର ଏ ଦାବୀକୁ ସମର୍ଥନ କରିବାକୁ ମୋତେ ପ୍ରଚୁର ପ୍ରମାଣ ମିଳି ସାରିଲାଣି ।"

( ୨୮ )

ଦେଶରେ ମଝେ ମଝେ ସଂନ୍ତ୍ରାସବାଦ ଦେଖା ଦେଉଥାଏ । ଡରେଇ ଧମକେଇ ସରକାରଙ୍କଠାରୁ କ୍ଷମତା ହାସଲ କରିବାର ଉଦ୍ୟମ ହେଉଥାଏ । କେତେବେଳେ କେମିତି ସରକାରୀ କର୍ମଚାରୀଙ୍କ ଉପରେ ଗୁପ୍ତ ଆକ୍ରମଣ କରୁଥାନ୍ତି; ବୋମା ପକେଇ ବା ଗୁଳି ଚଳେଇ ମାରି ଦେବାର ଚେଷ୍ଟା କରୁଥାନ୍ତି । ସରକାର ଏଥିରେ ଟିକିଏ ଡରିଯାଇ ଗୋଟିଏ କମିଟି ବସେଇ ଏ ବିଷୟ ତଦନ୍ତ କରେଇଥିଲେ । କମିଟିଙ୍କ ସୂଚନାନୁସାରେ, ଏ ଲୁଗ୍ଗୁଚୋରିବା କାମ ବନ୍ଦ କରେଇବା ପାଇଁ ଏକ ନୂଆ ଆଇନ ଗଠା କରେଇଥିଲେ । ସେଥିରେ ପୁଲିସକୁ ବହୁତ କ୍ଷମତା ଦିଆହୋଇଥିଲା; ସାମାନ୍ୟ ସନ୍ଦେହରେ ଲୋକଙ୍କର ଜୁଲମ ହେବାର ବାଟ ଖୋଲି ଦିଆଯାଇଥିଲା । ସେ କମିଟିର ସଭାପତି ରାଉଲାଟ ସାହେବ ଥିବାରୁ ସେ ଆଇନକୁ ସାଧାରଣରେ ରାଉଲାଟ ଆଇନ ବୋଲି କହୁଥିଲେ । ଏ ଆଇନ ବଡ଼ଲାଟ ସଭାରେ ମଞ୍ଜୁର ନ ହେଲେ ସୁଦ୍ଧା ସରକାର ତାକୁ ଜବରଦସ୍ତ ଚଳେଇବାକୁ ଜିଦ୍ ଧରିଥିଲେ ।

ଏତିକିବେଳେ ଗାନ୍ଧୀ ବେମାରରୁ ଉଠି ଟିକିଏ ସୁସ୍ଥ ହେଉଥାନ୍ତି; ଏହା ୧୯୧୮ର କଥା । ଖବରକାଗଜରେ ଗାନ୍ଧୀ ରାଉଲାଟ ଆଇନ କଥା ପଢ଼ିଲେ । ସେହି ସମୟରେ ଶଙ୍କରଲାଲ ବ୍ୟାଙ୍କର ପ୍ରଭୃତି କେତେକ ବନ୍ଧୁ ଏ ଆଇନ ବିରୁଦ୍ଧରେ କିଛି କରିବା ପାଇଁ ଗାନ୍ଧୀଙ୍କୁ ଧରି ବସିଥିଲେ । ଗାନ୍ଧୀ କହିଥିଲେ, "ଅଳ୍ପ ମୁଷ୍ଟିମେୟ ଲୋକ ଯଦି ବାହାରି ସତ୍ୟାଗ୍ରହ ପ୍ରତିଜ୍ଞା ଗ୍ରହଣ କରନ୍ତି ତେବେ ଆଇନ ଜାରି ହେବା ସଙ୍ଗେ ସଙ୍ଗେ ଆମେ ସତ୍ୟାଗ୍ରହ ଆରମ୍ଭ କରି ଦିଅନ୍ତେ । ମୁଁ ଏପରି ବେମାର ପଡ଼ିଛି, ଭଲ ଥିଲେ କେହି ସାଥୀ ନ ମିଳିଲେ ବି ମୁଁ ଏକା ସତ୍ୟାଗ୍ରହ କରନ୍ତି ।"

ଡଣକେତେ ବନ୍ଧୁଙ୍କର ଏକ ବୈଠକ ବସିଥିଲା । ସତ୍ୟାଗ୍ରହ ପ୍ରତିଜ୍ଞାର ଗୋଟିଏ ଖଡା ହୋଇଥିଲା । ଉପସ୍ଥିତ ଥିବା ଲୋକେ ସମସ୍ତେ ଦସ୍ତଖତ କରିଥିଲେ । କୌଣସି ପୁରୁଣା ଅନୁଷ୍ଠାନ ଦ୍ୱାରା ଏ ସତ୍ୟାଗ୍ରହ ଚଳାଇବାର କୌଣସି ଆଶା ଦେଖାଯାଇ ନ ଥିବାରୁ, ଗୋଟିଏ ନୂଆ ସମିତି ଗଢ଼ା ଯାଇଥିଲା । ନାଁ ରଖା ଯାଇଥିଲା 'ସତ୍ୟାଗ୍ରହ ସଭା' । ଖବରକାଗଜରେ ଲେଖା ଲେଖି ଚାଲିଲା । ଚାରିଆଡ଼େ ସଭା ସମିତି ହେବାକୁ ଲାଗିଥିଲା ।

ଗାନ୍ଧୀ ସେ ସତ୍ୟାଗ୍ରହ ସଭାର ସଭାପତି ହୋଇଥିଲେ ସତ କିନ୍ତୁ ତାଙ୍କ ମତ ସଙ୍ଗେ ଅନ୍ୟ 'ହୋମ୍‌ରୁଲ' ସଭ୍ୟମାନଙ୍କର ମତ ଖାପ ଖାଉ ନ ଥିଲା । ତାଙ୍କ କାମ କରିବା ଢଙ୍ଗ ସଭ୍ୟମାନଙ୍କୁ ପସନ୍ଦ ହୋଉ ନ ଥାଏ । ସଭାର କାର୍ଯ୍ୟ ଗୁଜୁରାଟୀ ଭାଷାରେ ଚଳାଇବାଟା ସେମାନଙ୍କ ମନକୁ ପାଉ ନ ଥିଲା । ଗାନ୍ଧୀ ସତ୍ୟ ଅହିଂସା ଉପରେ ଯେଉଁ ଜୋର ଦେଉଥିଲେ ତାହା ମଧ୍ୟ କେତେକ ସଭ୍ୟ ପସନ୍ଦ କରୁ ନ ଥିଲେ ।

ଏ ଆନ୍ଦୋଳନ ଯେତିକି ବଢ଼ିଲା, ସରକାରଙ୍କ ଜିଦ୍ ସେତିକି ବଢ଼ିଲା । ବଡ଼ଲାଟ ସଭାରେ ଏ ଆଇନ ପଢ଼ାହେଲାବେଳେ ଯେ ବୈଠକ ହୋଇଥିଲା, ସେଥିରେ ଗାନ୍ଧୀ ଉପସ୍ଥିତ ଥିଲେ । ତାଙ୍କ ଜୀବନରେ ଏଇଥରକ ସେ ବଡ଼ଲାଟ ସଭାରେ ଯୋଗ ଦେଇଅଛନ୍ତି । ସଭାରେ ବହୁତ ବିରୋଧ ହେଲା, କିନ୍ତୁ କଅଣ ହେବ, ଯେ ଜାଣି ଶୋଇବ ତାକୁ ଉଠାଇବ କିଏ ? ବଡ଼ଲାଟ ଅଟଳ ରହିଲେ । ଗାନ୍ଧୀ ମଧ୍ୟ ଅନେକ ଚିଠିପତ୍ର ବଡ଼ଲାଟଙ୍କୁ ଲେଖିଥିଲେ, କାହିଁରେ କିଛି ହେଲା ନାହିଁ । ଗେଜେଟରେ ଆଇନଟି ବାହାରି ନ ଥାଏ, ଗାନ୍ଧୀ ନିମନ୍ତ୍ରଣ ପାଇ ମାନ୍ଦ୍ରାଜକୁ ଯାଇଥିଲେ । ସେଠାରେ ରାଜା-ଗୋପାଳାଚାରୀଙ୍କ ସଙ୍ଗେ ପ୍ରଥମ ପରିଚୟ ହେଲା । ମାନ୍ଦ୍ରାଜଠାରେ

ତାଙ୍କର ଘରେ ଗାନ୍ଧୀ ରହୁଥାନ୍ତି, ସତ୍ୟାଗ୍ରହ କେବେ ଆରମ୍ଭ ହେବ; କେଉଁ କେଉଁ ଆଇନ ଭାଙ୍ଗିବାକୁ ହେବ ଇତ୍ୟାଦି ବିଷୟ ତାଙ୍କ ସଙ୍ଗେ ଓ ଅନ୍ୟ ବନ୍ଧୁମାନଙ୍କ ସଙ୍ଗେ ଚର୍ଚ୍ଚା ହେଉଥାଏ । ସ୍ୱର୍ଗୀୟ ବିଜୟରାଘବାଚାରିଆ ମଧ୍ୟ ଏ ସମ୍ପର୍କରେ ବିଶେଷ ଆଗ୍ରହ ଦେଖାଉଥାନ୍ତି । ଏହି ସମୟରେ ସରକାରୀ ଗେଜେଟ୍‌ରେ ଆଇନଟି ପ୍ରକାଶିତ ହେଲା, ଅର୍ଥାତ୍ ସେହି ସମୟରୁ ଆଇନ ଜାରି ହେଲା । ଦିନେ ଏହିସବୁ ବିଷୟ ଚିନ୍ତା କରୁଁ କରୁଁ ରାତିରେ ଗାନ୍ଧୀ ଶୋଇ ପଡ଼ିଲେ । ସେ ରାତିରେ କ'ଣ ଘଟିଲା ଏବଂ ଭବିଷ୍ୟତ୍ କାର୍ଯ୍ୟକ୍ରମ ଉପରେ କ'ଣ ଠିକ୍ ହେଲା ତାହା ଗାନ୍ଧୀ ନିଜେ ଲେଖିଛନ୍ତି, "ସେହି ପ୍ରଶ୍ନ ବିଚାରୁ ବିଚାରୁ ମତେ ତ ନିଦ ଲାଗିଯାଇଥିଲା । ସେ ଦିନ ପାହାନ୍ତାରେ ମୋ ନିଦ ଟିକିଏ ଆଗରୁ ଭାଙ୍ଗି ଯାଇଥିଲା । ନିଦ ଭାଙ୍ଗିଥାଏ ଅଥଚ ପୂରା ଚେଇଁ ନ ଥାଏ, ଏହିଭଳି ମଝି ମଝିକିଆ ଅବସ୍ଥାରେ ସେ କଥାଟା ମୋ ମନରେ ହଠାତ୍ ସ୍ଫୁରି ଉଠିଥିଲା, ସତେ ଯେମିତି ସ୍ୱପ୍ନ ଦେଖିଥିଲି । ବଡ଼ ସକାଳୁ ମୁଁ ରାଜଗୋପାଳାଚାରୀଙ୍କୁ ସବୁ କଥା କହିଥିଲି, ଏକ ସାଧାରଣ ହରତାଳ ପାଳିବାକୁ ଦେଶକୁ ଡାକ ଦେବା,—ଏ ଧାରଣା ମୋ ମନକୁ କାଲି ରାତିରେ ସ୍ୱପ୍ନଭଳି ଆସିଛି । ସତ୍ୟାଗ୍ରହ ଆତ୍ମଶୁଦ୍ଧିର ଗୋଟିଏ ପ୍ରକ୍ରିୟା; ଆମର ଲଢ଼େଇ ମଧ୍ୟ ଏକ ଧର୍ମ ଯୁଦ୍ଧ ଏବଂ ତାହା ଆତ୍ମଶୁଦ୍ଧି କାମରୁ ଆରମ୍ଭ ହେବା ଉଚିତ ହେବ । ଅତଏବ ଭାରତର ଲୋକେ ସେ ଦିନ ଆପଣା ଆପଣା କାମଧନ୍ଦା ବନ୍ଦ କରନ୍ତୁ ଏବଂ ସେ ଦିନ ଉପାସ କରି ପ୍ରାର୍ଥନାରେ କଟାନ୍ତୁ । ମୁସଲମାନ୍ ଭାଇମାନେ ଦିନକଠାରୁ ବେଶୀ ଉପବାସ କରିବେ ନାହିଁ, ତେଣୁ ସର୍ବସାଧାରଣ ଚବିଶ ଘଣ୍ଟା ଉପବାସ ପାଳିବେ । ସବୁ ପ୍ରଦେଶରେ ଆମର ନିବେଦନ ଅନୁସାରେ କାମ କରିବେ କି ନାହିଁ ମୁଁ କହି ପାରୁନାହିଁ; ତେବେ ବମ୍ବେ, ମାନ୍ଦ୍ରାଜ, ବିହାର ଓ ସିନ୍ଧୁ ଏଥିରେ

ନିଶ୍ଚୟ ଯୋଗ ଦେବେ ବୋଲି ମୋର ମନେ ହେଉଛି" ।.........
ଗାନ୍ଧୀଜୀଙ୍କ ମନକୁ ଏ ପ୍ରସ୍ତାବ ପସନ୍ଦ ହୋଇଥିଲା । ପରେ ଅନ୍ୟ ନେତାମାନେ ତାହା ଶୁଣିବାରୁ ତାହାକୁ ସ୍ୱାଗତ କରିଥିଲେ । ମୁଁ ଗୋଟିଏ ଛୋଟିଆ ନିବେଦନ ରଚନା କରିଥିଲି । ପହିଲେ ୧୯୧୮ ମାର୍ଚ୍ଚ ୩୦ ତାରିଖକୁ ହରତାଳ ଦିନ ଧାର୍ଯ୍ୟ ହୋଇଥିଲା । କିନ୍ତୁ ପରେ ୬ ତାରିଖ ଏପ୍ରିଲକୁ ଘୁଞ୍ଚାଇ ଦିଆଯାଇଥିଲା । ଲୋକଙ୍କୁ ଅଳ୍ପ ସମୟ ମିଳିଥିଲା । କିନ୍ତୁ କାମ ଶୀଘ୍ର ଆରମ୍ଭ କରିବାର କଥା, ବେଶୀ ଦିନ ଆଗରୁ ଜଣାଇବା ସମ୍ଭବପର ନ ଥିଲା । ଏ ସବୁ କିମିତି ଘଟିଗଲା ତାହା କିଏ ଜାଣେ ? ଭାରତବର୍ଷ ତମାମ୍ ସବୁ ଗାଁରେ, ସବୁ ସହରରେ, ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ସବୁଆଡ଼େ ସେ ଦିନ ସମ୍ପୂର୍ଣ୍ଣ ହରତାଳ ପାଳିଥିଲେ । ତାହା ଏକ ଅଦ୍ଭୁତ ରକମର ଦୃଶ୍ୟ ଥିଲା ।

( ୨୯ )

୬ ତାରିଖ ଏପ୍ରିଲକୁ ହରତାଳ ଦିନ ଘୁଞ୍ଚିଯିବା ଖବର ଦିଲ୍ଲୀରେ ଡେରିରେ ପହଞ୍ଚିଥିଲା । ମାର୍ଚ୍ଚ ମାସ ୩୦ ତାରିଖରେ ସେଠି ହରତାଳ ହୋଇଥିଲା । ଏପରି ହରତାଳ କେବେହେଁ ଦିଲ୍ଲୀରେ ଦେଖା ନ ଥିଲା । ସ୍ୱାମୀ ଶ୍ରଦ୍ଧାନନ୍ଦ ଓ ହକାମ୍ ଅଜମଲ୍ ଖାଁଙ୍କ କଥାକୁ ଲୋକେ ବେଦବାକ୍ୟ ଭଳି ମାନୁଥିଲେ । ମୁସଲମାନ୍‌ମାନେ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କୁ ଡାକି ନେଇ ଜୁମ୍ମା ମସ୍‌ଜିଦ୍‌ରେ ସଭା କରାଇଥିଲେ । ସ୍ୱାମୀଜୀ ସେଠି ବକ୍ତୃତା ଦେଇଥିଲେ । ସେଠା ସରକାରୀ ହାକିମ-ମାନେ ଏ ସବୁ କଥା ସହି ନ ପାରି, ହରତାଳ ଶୋଭାଯାତ୍ରାକୁ ବାଟରେ ଅଟକାଇ ଥିଲେ । ଲୋକେ ନ ମାନିବାରୁ ଗୁଳି ଚାଲିଥିଲା ଏବଂ କେତେ ଜଣ ମରିଥିଲେ ଓ କେତେ ଜଣ ଖଣ୍ଡିଆ ହୋଇଥିଲେ ।

ତା ପଛକୁ ଦମନ ନୀତି ଆରମ୍ଭ ହୋଇ ଯାଇଥିଲା । ପଞ୍ଜାବ, ଲାହୋର, ଅମୃତସହର ପ୍ରଭୃତି ସ୍ଥାନରେ ସେହିଭଳି ଘଟଣାମାନ ଘଟିଥିଲା ।

ଗାନ୍ଧୀ ୬ ତାରିଖ ଏପ୍ରେଲରେ ବମ୍ବେଠାରେ ରହିବାର ଠିକ୍ କରିଥିବାରୁ ଦିଲ୍ଲୀ ଓ ପଞ୍ଜାବରୁ ତାର ଖବର ଆସିଥିଲେ ସୁଦ୍ଧା ସେ ୬ ତାରିଖ ପରେ ଯିବେ ବୋଲି ଜବାବ ଦେଇଥିଲେ । ବମ୍ବେଠାରେ ସେହି ଦିନ ସତ୍ୟାଗ୍ରହ ଆରମ୍ଭ ହେବାର ଧାର୍ଯ୍ୟ ହୋଇଥାଏ । ହଜାର ହଜାର ଲୋକେ ସମୁଦ୍ରରେ ଗାଧୋଇ ଶୋଭାଯାତ୍ରା କରି ବୁଲି ଥିଲେ । ଶ୍ରୀମତୀ ସରୋଜିନୀ ନାଇଡୁ ଓ ଗାନ୍ଧୀଙ୍କୁ ମୁସଲମାନ୍‌ମାନେ ଡାକନେଇ ମସ୍‌ଜୀଦ୍‌ରେ ବକ୍ତୃତା ଦିଆଇଥିଲେ । ଆଇନ ଅମାନ୍ୟ ପାଇଁ ଦୁଇଟି ବିଷୟ ସ୍ଥିର ହୋଇଥାଏ । ଏକରେ, ଘରେ ଘରେ ଲୁଣ ପାଣି ନେଇ ଲୁଣ ମାରିବେ । ଲୁଣକର ବିରୁଦ୍ଧରେ ସେତେବେଳକୁ ଏକ ଆନ୍ଦୋଳନ ଚାଲିଥାଏ । ଦୁଇରେ, ଗାନ୍ଧୀଙ୍କର କେତେ ଖଣ୍ଡି ବହି, 'ହିନ୍ଦ୍ ସ୍ୱରାଜ' ଓ 'ସର୍ବୋଦୟ' ସରକାର ବେଆଇନ୍ କରିଥାନ୍ତି; ସେହି ସବୁ ବହିକୁ ପୁଣି ଛପାଇ ସାଧାରଣରେ ବିକ୍ରି କରାଯିବ । ଗାନ୍ଧୀ ଓ ସରୋଜିନୀ ଦେବୀ ଦୁହେଁ ମଠରରେ ବୁଲି ଏ ବହି ବିକି ଆଇନ୍ ଅମାନ୍ୟ କରିଥିଲେ, କିନ୍ତୁ ସରକାର କାହାରିକୁ ଧରି ନ ଥିଲେ । ପରେ ଶୁଣାଗଲା, ସରକାର ଏକ ବାହାନାରେ ଚୁପ୍ ରହିଗଲେ, ସେ କହିଲେ ଯେ ସେ ସବୁ ବହି ଛପାଇବା ବା ନୂଆ ଛାପି ବିକିବା ମନା ନ ଥିଲା । କେବଳ ବହିର ସେହି ଗୋଟିକ ସଂସ୍କରଣ ବେଆଇନ୍ କରାଯାଇଥିଲା ।

ତହୁଁ ପରଦିନ ସ୍ୱଦେଶୀ ପ୍ରତିଜ୍ଞା ନେବା ପାଇଁ ଏକ ସଭା ହୋଇଥିଲା । କିନ୍ତୁ ଏ ସଭାକୁ ଖୁବ୍ କମ୍ ଲୋକ ଆସିଥିଲେ । ଗାନ୍ଧୀ ଲେଖିଛନ୍ତି "ମୁଁ ସ୍ୱଦେଶୀ ପ୍ରତିଜ୍ଞା ଓ ହିନ୍ଦୁ ମୁସଲମାନ୍

ଏକଟା ପ୍ରତିକ୍ରିୟାଶୀଳ ଶକ୍ତି ବୋଲି ଅପଣ ନେଇଥିଲି । ମୁଁ ଲୋକଙ୍କୁ ସବୁ ବୁଝାଇ ଦେଇଥିଲି । ଅନ୍ୟ ଲୋକ ଦେଖି ମୋର ଦୁଃଖ ବା ଆଶ୍ଚର୍ଯ୍ୟ ହୋଇ ନ ଥିଲା । ଲୋକଙ୍କ ମତ ଗତିରେ ମୁଁ ଏତେବେଳେ ତାରତମ୍ୟ ଦେଖି ଅଛିଛି ଯେ ଉତ୍ତେଜନା ମିଳିବା କାମ ପ୍ରତି ଅଗ୍ରହ ଥାଏ, ଏବଂ ଶାନ୍ତ ଗଠନମୂଳକ କାମ ପ୍ରତି ବୈରାଗ୍ୟ ଦେଖା ଯାଇଥାଏ । ଏ ତାରତମ୍ୟ ଅଛି ଯାଏ ବି ରହୁଛି ।" (୧୯୨୮)

ଏପ୍ରେଲ ୭ ତାରିଖରେ ଗାନ୍ଧୀ ଦିଲ୍ଲୀ ଆଡ଼େ ବାହାରିଥିଲେ । ୮ ତାରିଖ ଦିନ ବାହାରେ ଗୋଟିଏ ଛୋଟିଆ ଷ୍ଟେସନରେ "ପଞ୍ଜାବକୁ ଯାଇ ପାରିବେ ନାହିଁ" ବୋଲି ଗାନ୍ଧୀଙ୍କ ଉପରେ ଏକ ହୁକୁମନାମା ଜାରୀ ହୋଇଥିଲା । ସେ ତାହା ମାନିବାକୁ ରାଜି ନ ହେବାରୁ ତାଙ୍କୁ ପର ଷ୍ଟେସନରେ ଗିରଫ୍ କରି ପୁଲିସ୍ ଜିମାରେ ବମ୍ବେକୁ ଫେରି ଦିଆ ଯାଇଥିଲା । ତାଙ୍କ ନାଁରେ ମକଦମା ନ କରି, ତାଙ୍କୁ ବମ୍ବେ ସହର ପାଖ ଗୋଟିଏ ଷ୍ଟେସନରେ ଛାଡ଼ି ଦେଇଥିଲେ । ଗାନ୍ଧୀଙ୍କ ଗିରଫ ଖବର ପାଇ ସେତେବେଳକୁ ବମ୍ବେରେ ହୁଲସ୍ଥୂଲ ପଡ଼ିଯାଇଥାଏ । ହଜାର ହଜାର ଲୋକ ଶୋଭାଯାତ୍ରା କରି ବାହାରୁ ଥାନ୍ତି । ପୁଲିସ୍ ସେମାନଙ୍କୁ ଗୋଟାଏ ଆଡ଼େ ଛାଡ଼ୁ ନ ଥାଏ । ପୁଲିସ ଘୋଡ଼ା ଦୌଡ଼େଇ ଲୋକଙ୍କ ଭିଡ଼ ଛିନ୍ନଛତ୍ର କରି ଦେଉଥିଲା । ମାଡ଼ ଖାଇ କେତେ ଲୋକ ଆହତ ହୋଇ ଛତ୍ରଭଙ୍ଗ ହୋଇ ଯାଉଥିଲେ । ଏହି ସମୟରେ ଗାନ୍ଧୀ ଫେରି ଆସି ସହରରେ ପହଞ୍ଚିଥିଲେ । ଚଉପାଟୀ ସମୁଦ୍ର କୂଳରେ ଗାନ୍ଧୀ ଏକ ବିରାଟ ଜନସଭାରେ, ଅହିଂସା ଓ ଶାନ୍ତିରକ୍ଷା କଥା ବୁଝାଇ ଅବସ୍ଥା ସମ୍ଭାଳି ନେଇଥିଲେ ।

ସେତେବେଳକୁ ଅହମଦାବାଦ୍, ଖେଡ଼ା, ନଡ଼ିୟାଦ ପ୍ରଭୃତି ଜାଗାରେ ଲୋକେ ହିଂସା ଆଚରଣ କରି ପୁଲିସଙ୍କୁ ମାଡ଼ ଦେଇଥିବାର ଖବର ଆସି ପହଞ୍ଚି ଥାଏ । ସେଠାରେ ସାମରିକ ଆଇନ୍ ଜାରୀ

ହୋଇଥାଏ । ଗାନ୍ଧୀ ସଙ୍ଗେ ସଙ୍ଗେ ଅହମଦାବାଦ୍ ଯାଇଥିଲେ ।
ସେଠା ପୁଲିସ୍ ସାହେବଙ୍କୁ ବୁଝାଇ ସୁଝାଇ ତାଙ୍କ ଅନୁମତି ନେଇ
ଗାନ୍ଧୀ ଗୋଟିଏ ସଭା କରୁଥିଲେ । ଗାନ୍ଧୀ ଲୋକଙ୍କୁ ଶାନ୍ତ
କରିଥିଲେ । ଯେଉଁମାନେ ହିଂସା କରିଛନ୍ତି, ପୁଲିସଙ୍କୁ ମାରିଛନ୍ତି
ସେମାନେ ଧରା ଦିଅନ୍ତୁ ବୋଲି ଗାନ୍ଧୀ ସଭାରେ ଅନୁରୋଧ କରିଥିଲେ।
ନିଜେ ମଧ୍ୟ ତିନିଦିନ ଉପବାସ ରହି ପ୍ରାୟଶ୍ଚିତ୍ତ କରିବେ ବୋଲି
ଜଣାଇ ଦେଇଥିଲେ । ଲୋକଙ୍କୁ ମଧ୍ୟ ଦିନେ ଉପାସ କରିବାକୁ
ପରାମର୍ଶ ଦେଇଥିଲେ । ଏହା ପରେ ସେଠାରୁ ସାମରିକ ଆଇନ୍
ଉଠାଇ ଦିଆଯାଇ ଥିଲା ।

( ୩୦ )

ଅହମଦାବାଦରୁ ଗାନ୍ଧୀ ଖେଡ଼ା ଜିଲାର ନଦିୟାଦ୍ ଅଞ୍ଚଳ
ଯାଇଥିଲେ । ସେଠାରେ ବି ଲୋକେ ହିଂସା ଆଚରଣ କରିଥିଲେ ।
ଯେଉଁ ଅହମଦାବାଦର ମୂଲିଆ ଓ ଖେଡ଼ାର ଗୃହୀଙ୍କ ଭିତରେ
ଗାନ୍ଧୀ ଆଗରୁ ସତ୍ୟାଗ୍ରହ କଥା ପ୍ରଚାର କରିଥିଲେ, ସେହିମାନେ
ଏଭଳି ଶାନ୍ତ ଭଙ୍ଗ କରିବେ ଏହା ଦେଖି ଗାନ୍ଧୀ ନିଜର ଏକ ଭୁଲ୍
ହୋଇଥିବାର ଜାଣି ପାରିଥିଲେ । ସେ ନିଜେ ଲେଖିଛନ୍ତି, "ଗୋଟିଏ
ସଭାରେ ବକ୍ତୃତା ଦେଉଥିଲି । ହଠାତ୍ ମତେ ଲାଗିଲା ଯେ ମୁଁ ବଡ଼
ବିଷମ ଭୁଲ କରି ପକାଇଛି—ଆଗରୁ ଶିକ୍ଷା ନ ଦେଇ ଆଇନ
ଅମାନ୍ୟ କରିବାକୁ ଲୋକଙ୍କୁ ଡାକ ଦେଇଛି । ଏ ଦୋଷ ସ୍ୱୀକାର
କରିବାରୁ ସମସ୍ତେ ମତେ ଥଟ୍ଟା କରିଥିଲେ । କିନ୍ତୁ ସେଥିରେ ମୋର
ଦୁଃଖ ହୋଇ ନାହିଁ । କାରଣ ଆପଣା ଦୋଷକୁ ସବୁବେଳେ ବଡ଼
କରି ଦେଖିବା ଏବଂ ପରର ଦୋଷକୁ ଛୋଟ କରି ଦେଖିବା, ଏ
ନୀତି ନିୟମକୁ ସତ୍ୟାଗ୍ରହୀର ସୂକ୍ଷ୍ମ ଭାବରେ ବୁଝି ବିଚାରି ପାଳନ
କରିବା ଉଚିତ ।.........ହିମାଳୟ ଭଳି ସେହି ପ୍ରକାଣ୍ଡ ଭୁଲଟା

କଣ ଥିଲ ତାହା ବିଚାର କରୁଥାଉ । କେହି ସବିନୟ ଆଇନ ଅମାନ୍ୟ
ପାଇଁ ଉପଯୁକ୍ତ ହେବା ପୂର୍ବରୁ ପ୍ରଥମେ ରାଜ୍ୟର ଆଇନକୁ ସ୍ୱେଚ୍ଛାରେ
ସମ୍ମାନର ସହିତ ମାନିବା ଆବଶ୍ୟକ । ଆଇନ ଭାଙ୍ଗିଲେ ଶାସ୍ତି
ମିଳିବ, ଏହି ଶାସ୍ତି ଡରରେ ଆମେ ଅଧିକାଂଶ ସ୍ଥଳରେ ଆଇନ-
ଗୁଡ଼ିକୁ ମାନିଥାଉ । ଯେଉଁ ଆଇନରେ ନୀତି ବିରୁଦ୍ଧ ବିଷୟ କିଛି
ନ ଥାଏ ସେ ଆଇନ ସମ୍ବନ୍ଧରେ ଏ ଡର ଥାଏ । ଚୋରି ବିରୁଦ୍ଧରେ
ଆଇନ ଥାଉ ବା ନ ଥାଉ, ଜଣେ ସାଧୁ ସଚ୍ଚରିତ୍ର ଲୋକ କେବେହେଁ
ହଠାତ୍ ଚୋରି କରିବ ନାହିଁ, କିନ୍ତୁ ଅନ୍ଧାରରେ ଆଲୁଅ ନ ନେଇ
ସାଇକଲ୍ ଚଢ଼ିବାର ନୁହେଁ, ଏ ନିୟମ ଜାଣି ଥିବା ସତ୍ତ୍ୱେ ସେହି
ଭଦ୍ରଲୋକ ବିନା ଆଲୁଅରେ ସାଇକଲ୍ ଚଢ଼ି ଯିବାକୁ ମନରେ
ହୁଏ ତ ଟିକିଏ ହେଲେ ଅନୁତାପ କରିବ ନାହିଁ ।.........କିନ୍ତୁ
ଜଣେ ସତ୍ୟାଗ୍ରହୀ ସମାଜର ଆଇନକୁ ମାନିବା ନିଜର ପବିତ୍ର
କର୍ତ୍ତବ୍ୟ ସ୍ୱରୂପ ବିଚାରି ଥାଏ ଏବଂ ତେଣୁ ସ୍ୱେଚ୍ଛାରେ ବୁଦ୍ଧିର ସହିତ
ସବୁ ଆଇନକୁ ସେ ମାନି ଚାଲିଥାଏ । ଯେତେବେଳେ ଯାଇ ସେ
ବୁଝିପାରେ କେଉଁ ଆଇନଟା ଭଲ ଓ ନ୍ୟାୟଯୁକ୍ତ ଏବଂ କେଉଁ
ଆଇନଟା ମନ୍ଦ ଓ ଅନ୍ୟାୟ ସେତେବେଳେ ଯାଇ ସୁନିର୍ଦ୍ଦିଷ୍ଟ ସୀମା
ଭିତରେ ଆଇନ ଅମାନ୍ୟ କରିବାରେ ତାହାର ଅଧିକାର ଜନ୍ମିଥାଏ ।
ମୋର ଭୁଲ ସେହିଠାରେ ହୋଇଥିଲା । ଲୋକେ ସେଥିପାଇଁ ଉପଯୁକ୍ତ
ହେବା ପୂର୍ବରୁ ଆଇନ ଅମାନ୍ୟ କରିବାକୁ ମୁଁ ତାଙ୍କୁ ଡାକ ଦେଇଥିଲି ।
ଏପରି ଅବସ୍ଥାରେ, ପୁଣି ସମୂହ ଆଇନ ଅମାନ୍ୟ ଆରମ୍ଭ କରିବା
ପୂର୍ବରୁ ଦଳେ ଶୁଦ୍ଧ ହୃଦୟ ଓ ସୁପରୀକ୍ଷିତ ସ୍ୱେଚ୍ଛାସେବକ ଗଢ଼ିବା
ଆବଶ୍ୟକ । ସେମାନେ ସତ୍ୟାଗ୍ରହର ସବୁ ବଡ଼ ନିୟମଯାକ ଭଲ
ରକମ ବୁଝିଥିବେ ଏବଂ ଲୋକଙ୍କୁ ନିୟମମାନ ବୁଝାଇ ପାରୁଥିବେ ।
ସେହିମାନେ ସବୁବେଳେ ଜାଗ୍ରତ ରହି ଲୋକଙ୍କୁ ଠିକ୍ ବାଟରେ
ରଖିବେ ।”

ଏଇନ ଅମାନ୍ୟ ବନ୍ଦ କରିବା ପରେ ପରେ ଗାନ୍ଧୀ ସତ୍ୟାଗ୍ରହ ସଭା ଜରିଆରେ ସ୍ୱେଚ୍ଛାସେବକ ସଂଗ୍ରହ କରି ସେମାନଙ୍କୁ ତାଲିମ ଦେବାକୁ ଆରମ୍ଭ କରିଥିଲେ । କିନ୍ତୁ ଏ ଦିଗରେ ଲୋକଙ୍କର ଆଗ୍ରହ ଉତ୍ସାହ କମ୍ ହେବାକୁ ଲାଗିଥିଲା ଏବଂ ସତ୍ୟାଗ୍ରହର ଶାନ୍ତିପୂର୍ଣ୍ଣ କାମ ଦିଗରେ ଲୋକଙ୍କର ମନ ଲଗେଇବା ବଡ଼ କଠିନ ଜଣା ପଡ଼ୁଥିଲା ।

ଏହି ସମୟରେ ପଞ୍ଜାବରୁ ଦମନ ନୀତିର କରୁଣ କାହାଣୀ-ମାନ ଗାନ୍ଧୀଙ୍କ କାନରେ ଆସି ପଡ଼ୁଥାଏ । ସେଠି ସାମରିକ ଆଇନ ଜାରି ହୋଇ ନାନା ଉପାୟରେ ଲୋକଙ୍କୁ ଅପମାନ ଦିଆ ଯାଉଥାଏ । ଅମୃତସରଠାରେ ଭଦ୍ରଲୋକଙ୍କୁ, ଭଦ୍ରମହିଳାଙ୍କୁ ପେଟରେ ଘୁଷୁରି ଘୁଷୁରି ଯିବାକୁ ବାଧ କରାଯାଉଥିଲା । ଜାଲିୟାନ୍‌ୱାଲାବାଗ୍‌ରେ ଯେ ହତ୍ୟାକାଣ୍ଡ ଘଟିଥିଲା ତାହା ବି ଏ ସବୁ ଅପମାନ ଆଗରେ ଅତି ତୁଚ୍ଛ ଜଣା ପଡ଼ୁଥିଲା । ପଞ୍ଜାବରୁ ଗାନ୍ଧୀଙ୍କୁ ଡକରା ଆସୁଥାଏ କିନ୍ତୁ ବିନା ଅନୁମତିରେ ବା ଆଇନ ଅମାନ୍ୟ କରି ସେଠାକୁ ଯିବା ଉଚିତ ହେବ ନାହିଁ ବୋଲି ସେ ପଞ୍ଜାବ ଯାଇ ନ ଥିଲେ । ଅସହାୟ ଅବସ୍ଥାରେ ଦୁଃଖ ଅପମାନର ସବୁକଥା ଶୁଣି ହଜମ କରିବା ଛଡ଼ା ତାଙ୍କର ଆଉ ଅନ୍ୟ ଗତି ନ ଥିଲା । ଏତିକିବେଳେ ବମ୍ବେର ବକ୍ଷିତ୍ମ ସାମ୍ବାଦିକ ହର୍ଣ୍ଣିମ୍ୟାନ୍ ସାହେବଙ୍କୁ ସରକାର ବନ୍ଦକରି ନେଇ ରଖିଲେ ଏବଂ ତାଙ୍କର ଖବରକାଗଜକୁ ବନ୍ଦ କରି ଦେଲେ । ଦରକାର ପଡ଼ିବାରୁ ଗାନ୍ଧୀ ଦୁଇଟି ଖବରକାଗଜର ସମ୍ପାଦକ ହୋଇଥିଲେ, ଇଂରାଜୀ 'ୟଙ୍ଗ୍ ଇଣ୍ଡିଆ' ଓ ଗୁଜୁରାଟୀ 'ନବଜୀବନ' । ଦୁଇଟିଯାକ ସାପ୍ତାହିକ । ଏମାନଙ୍କ ଜରିଆରେ ଗାନ୍ଧୀ ଲୋକଙ୍କୁ ସତ୍ୟାଗ୍ରହର ରହସ୍ୟ ବୁଝାଉଥିଲେ । କାଗଜ ଦୁଇଟିର ଗ୍ରାହକ ବହୁତ ବଢ଼ିଗଲେ । ପ୍ରତ୍ୟେକର ଗ୍ରାହକ ସଂଖ୍ୟା ଚାଳିଶ ହଜାର ଯାଏ ହୋଇ

ଯାଇଥିଲେ । ଏହି ଖବରକାଗଜ ସାହାଯ୍ୟରେ ପଞ୍ଜାବର ଅତ୍ୟାଚାରିତ ଭାଇମାନଙ୍କର ଦୁଃଖ ଯନ୍ତ୍ରଣାର ଲାଘବ ହୋଇଥିଲା ।

ପଞ୍ଜାବକୁ ଯିବାପାଇଁ ଗାନ୍ଧୀ ବଡ଼ଲାଟଙ୍କୁ ବାରମ୍ବାର ଅନୁମତି ମାଗୁଥାନ୍ତି, କିନ୍ତୁ ପ୍ରତିଥର ବଡ଼ଲାଟ 'ବେଳ ହୋଇ ନାହିଁ' ବୋଲି ମନା କରୁଥାନ୍ତି । ଇତି ମଧ୍ୟରେ ପଞ୍ଜାବ ଅତ୍ୟାଚାରର ତଦନ୍ତ ପାଇଁ ଏକ ସରକାରୀ କମିଟି ନିଯୁକ୍ତ ହୋଇଥିଲା । ଆଣ୍ଡ୍ରୁଜ ସାହେବ ଆଗ ପଞ୍ଜାବ ଯାଇଥିଲେ ଏବଂ ସେ ଯେଉଁ ସବୁ ବିବରଣ ପଠାଉ ଥାଆନ୍ତି, ସେଥିରୁ ଅବସ୍ଥା ଅତି ଖରାପ ବୋଲି ଜଣା ଯାଉଥାଏ । ମାଳବ୍ୟଜୀ ମଧ୍ୟ ପଞ୍ଜାବ ଯିବାପାଇଁ ଗାନ୍ଧୀଙ୍କୁ ତାର କଲେ । ଏବେ ଗାନ୍ଧୀ ବଡ଼ଲାଟଙ୍କ ଠାରୁ ଅନୁମତି ପାଇଲେ । ଅକ୍ଟୋବର ୧୭ ତାରିଖ ପରେ ପଞ୍ଜାବ ଯିବାକୁ ଅନୁମତି ମିଳିଥିଲା । ପଞ୍ଜାବରେ ପହଞ୍ଚିଲା କ୍ଷଣି ଲାହୋରଠାରେ ଗାନ୍ଧୀଙ୍କୁ ଏକ ନାହିଁ ନ ଥିବା ଅଭ୍ୟର୍ଥନା ମିଳିଥିଲା । ସହରର ସମସ୍ତେ ରେଲ ଷ୍ଟେସନରେ ଜମା ହୋଇ ଯାଇଥିଲେ, ଯେପରି ଜଣେ ପ୍ରିୟଜନ ବନ୍ଧୁଙ୍କୁ ବହୁତ ଦିନ ବିଚ୍ଛେଦ ପରେ ଦେଖିବାକୁ ଆସିଛନ୍ତି । ଆନନ୍ଦର ସୀମା ରହି ନ ଥିଲା । ପଞ୍ଜାବର ନେତାମାନେ ସେତେବେଳକୁ ଜେଲରେ । ମାଳବ୍ୟଜୀ, ମୋତିଲାଲଜୀ, ସ୍ୱାମୀ ଶ୍ରଦ୍ଧାନନ୍ଦ ପ୍ରଭୃତି ଏଣୁ ଯାଇ ସବୁ ବୁଝା ସୁଝା କରୁଥିଲେ । ଗାନ୍ଧୀ ପ୍ରଭୃତି ସମସ୍ତେ ଏକମତ ହୋଇ ସରକାରୀ କମିଟି ସଙ୍ଗେ ସହଯୋଗ କରିବାକୁ ମନା କରି ଦେଇଥିଲେ । କଂଗ୍ରେସ ତରଫରୁ ଏକ ବେସରକାରୀ କମିଟି ଦ୍ୱାରା ସ୍ୱତନ୍ତ୍ର ତଦନ୍ତ ସ୍ଥିର ହୋଇଥିଲା; ଏ ତଦନ୍ତ ଚଳାଇବାର ବୋଝ ଗାନ୍ଧୀଙ୍କ ଉପରେ ପଡ଼ିଥିଲା । ସେ ଗସ୍ତ କରି ବେଶୀ ଭାଗ ସାକ୍ଷୀ ପ୍ରମାଣ ସଂଗ୍ରହ କରିଥିଲେ । ଶେଷରେ ତଦନ୍ତ ରିପୋର୍ଟ

ଗାନ୍ଧୀ ଗଠା କରୁଥିଲେ । ସେ ରିପୋର୍ଟରୁ ଅତ୍ୟାଚାରର ସବୁ କାହାଣୀ ମିଳବ ସେଥିରେ ଠିକଏ ହେଲେ ବଢ଼େଇଲେଖା ହୋଇନାହିଁ, ବିନା ପ୍ରମାଣରେ ପଦେ ହେଲେ ଅଭିଯୋଗ କରାଯାଇ ନାହିଁ ।

( ୩୧ )

୧୯୧୭ ରେ ଜୱାହରଲାଲଙ୍କ ସଙ୍ଗେ ଗାନ୍ଧୀଙ୍କର ପ୍ରଥମ ପରିଚୟ ହୁଏ । ରୌଲଟ ଆଇନ ସତ୍ୟାଗ୍ରହରେ ଯୋଗଦେବାକୁ ଜୱାହରଙ୍କ ମନ ଭାରି ଛଟପଟ ହେଉଥିଲା । ସେହି ସମୟରେ ଗାନ୍ଧୀ ଥରେ ଏହ୍ଲାବାଦ୍ ଯାଇଥିଲେ । ପଣ୍ଡିତ ମୋତିଲାଲଙ୍କ ସଙ୍ଗେ ଦେଖା ସାକ୍ଷାତ୍ କଥାବାର୍ତ୍ତା ପରେ ଗାନ୍ଧୀ ଜୱାହରଲାଲଙ୍କୁ କହିଥିଲେ 'ବାପାଙ୍କୁ ବିରକ୍ତ କର କଷ୍ଟ କର ନାହିଁ ।' ବେସରକାରୀ ତଦନ୍ତରେ ଜୱାହର ଲାଲ କମିଟିଙ୍କୁ ସାହାଯ୍ୟ କରିବାକୁ ଆସିଥିଲେ । ଏହି ସମୟରେ ତାଙ୍କ ସହିତ ଗାନ୍ଧୀଙ୍କର ଘନିଷ୍ଠ ପରିଚୟ ହୋଇଥିଲା । ଗାନ୍ଧୀଙ୍କର ରାଜନୈତିକ ଦୂର ଦୃଷ୍ଟିରେ ଜୱାହରଲାଲଙ୍କ ଗଭୀର ବିଶ୍ୱାସ ଏହି ସମୟରୁ ଜନ୍ମି ଯାଇଛି ବୋଲି ଜୱାହର ଲାଲ ତାଙ୍କ ଜୀବନୀରେ ଲେଖିଛନ୍ତି । ସେ ଲେଖିଛନ୍ତି "ଗାନ୍ଧୀଙ୍କ ପ୍ରସ୍ତାବମାନ ଅଧିକାଂଶ ସମୟରେ କମିଟିର ସଭ୍ୟମାନଙ୍କୁ ନୂଆ ନୂଆ ଲାଗିଥାଏ ; କମିଟି ପ୍ରଥମେ ତାହା ପସନ୍ଦ କରି ନ ଥାନ୍ତି । ମାତ୍ର ଗାନ୍ଧୀ ଯୁକ୍ତି କରି ସେମାନଙ୍କୁ ରାଜି କରାଇଥାନ୍ତି । ପରବର୍ତ୍ତୀ ଘଟଣାବଳୀରୁ ଗାନ୍ଧୀଙ୍କ ବୁଦ୍ଧି ଓ ପରାମର୍ଶ ଠିକ୍ ବୋଲି ପ୍ରମାଣିତ ହୋଇଥାଏ ।" ଏହି ରୌଲଟ ଆଇନ ଆନ୍ଦୋଳନକୁ ପ୍ରଥମ ନିଖିଳ ଭାରତୀୟ ଆନ୍ଦୋଳନ ବୋଲି ଜୱାହରଲାଲ ମାନନ୍ତି ।

ପଞ୍ଜାବର ଗାଁ ଗହଳରେ ବୁଲି ଲୋକଙ୍କର ପ୍ରକୃତ ଅବସ୍ଥା ଦେଖିବାର ଅପୂର୍ବ ସୁଯୋଗ ଗାନ୍ଧୀଙ୍କୁ ମିଳିଯାଇଥିଲା । ପଞ୍ଜାବରେ

ବହୁତ ଅରଟ ଓ ସୂତାକଟାଳୀ ଦେଖି ତାଙ୍କର ବିଶେଷ ଆନନ୍ଦ ହୋଇ-ଥିଲା । ତାଙ୍କର ୟଂ ଇଣ୍ଡିଆ ଖବର କାଗଜରେ 'ସ୍ୱଦେଶୀରେ ସ୍ୱରାଜ' ନାଁ ରେ ଏକ ଲେଖା ବାହାର କରିଥିଲେ । ବିଲାତି ଲୁଗାରେ ଦେଶରୁ ଷାଠିଏ କୋଟି ଟଙ୍କା ଯାଉଛି, ଦେଶର ତନ୍ତୀ କଟାଳୀ କାମ ନ ପାଇ ବେକାର ମରୁଛନ୍ତି, ଦେଶର ଦଶ ଭାଗରୁ ଭାଗେ ଲୋକ ଅଧପେଟ ଖାଇ ରହୁଛନ୍ତି ଏବଂ ବାକିତକଙ୍କ ଭିତରୁ ଅଧିକାଂଶ ପୁଷ୍ଟି ଖୋରାକ ପାଉ ନାହାନ୍ତି, ପିଲାଙ୍କୁ ଦୁଧ ମିଳୁନାହିଁ ଇତ୍ୟାଦି କଥା କହି ସେ ଲେଖିଛନ୍ତି "ଦେଶ ଆଗରେ ବର୍ତ୍ତମାନ ପ୍ରଶ୍ନ ଦେଶର ଶାସନ ଚଳାଇବା ନୁହେଁ, ପ୍ରଶ୍ନ ହେଉଛି ଅପଣାକୁ ଖୁଆଇବା ଓ ଲୁଗା ପିନ୍ଧାଇବା ପ୍ରଶ୍ନ । ଯେତେ ଭଲ ଶାସନ-ସଂସ୍କାର ଆଇନ ସରକାର ଦିଅନ୍ତୁ ନା କାହିଁକି, ତାହାଦ୍ୱାରା ଆମର ଏ ପ୍ରଶ୍ନର ସମାଧାନ ନିକଟ ଭବିଷ୍ୟତରେ ହେବ ନାହିଁ । କିନ୍ତୁ ସ୍ୱଦେଶୀ ବର୍ତ୍ତମାନ ସଙ୍ଗେ ସଙ୍ଗେ ସେହି ପ୍ରଶ୍ନର ସମାଧାନ କରିପାରିବ ।

"ପଞ୍ଜାବର ଅନୁଭୂତି ସେ ସମାଧାନକୁ ମତେ ଅଧିକ ସ୍ପଷ୍ଟ କରିଦେଇଛି । ଭଗବାନଙ୍କ କୃପାରୁ ପଞ୍ଜାବର ସୁନ୍ଦର ରମଣୀମାନେ ଏପର୍ଯ୍ୟନ୍ତ ତାଙ୍କ ହାତର କଳା କୌଶଳ ହରେଇ ନାହାନ୍ତି । ବଡ଼ ଘରର ହୁଅନ୍ତୁ ବା ଗରିବ ଘରର ହୁଅନ୍ତୁ ସେମାନେ ସମସ୍ତେ ସୂତା-କଟା କଳା ଜାଣନ୍ତି । ଅନେକ ଗୁଜୁରାଟି ସ୍ତ୍ରୀଲୋକ ତାଙ୍କର ଅରଟକୁ ଯେମିତି ପୋଡ଼ି ପକେଇଛନ୍ତି, ପଞ୍ଜାବର ମହିଳାମାନେ ଅରଟକୁ ଜଳେଇ ନାହାନ୍ତି । ସେମାନେ ମୋ କୋଳରେ ସୂତା ମୁଣ୍ଡାମାନ ଅଜାଡ଼ି ପକେଇଛନ୍ତି, ସେଥିରେ ମୋର ଭାରି ଆନନ୍ଦ ହୋଇଛି । ସୂତା କାଟିବାକୁ ତାଙ୍କର ବେଳ ଅଛି ବୋଲି ସେମାନେ ମାନୁଛନ୍ତି । ସେମାନେ କହନ୍ତି ଯେ ତାଙ୍କର ହାତକଟା ସୂତାର ଖଦୀ କଳସୂତା ଲୁଗାଠାରୁ ଢେର୍ ଭଲ । ଆମର ପୂର୍ବପୁରୁଷମାନେ ବିଦେଶରୁ

ନ କରି, ଅଳ୍ପ ଶ୍ରମରେ ବେଶ୍ ଅବସରରେ ଆପଣାର ଲୁଗା କରି ନେଉଥିଲେ ।

"ବେଲ ଥାଉଁ ଥାଉଁ ଆମେ ଚେଇଁ ନ ଉଠିଲେ ଏ ସବୁଜ ସୁନ୍ଦର କଳାଟି ବୁଡ଼ି ଯିବାର ଆଶଙ୍କା ଅଛି । ସେ ଦାଗରେ ଯେ ବହୁତ କଷ୍ଟ କରି ହେବ ତାହାର ପ୍ରମାଣ ପଞ୍ଜାବରୁ ମିଳୁଛି । କିନ୍ତୁ ପଞ୍ଜାବରୁ ମଧ୍ୟ ଖଦୀର ପ୍ରଭାବ କମି ଯାଉଛି । ପ୍ରତିବର୍ଷ ହାତକଟା ସୂତାର ପରିମାଣ କମି କମି ଯାଉଛି । ଫଳରେ ଗାଁ ଗହଳରେ ଅଧିକ ଦାରିଦ୍ର୍ୟ ଅଧିକ ଆଳସ୍ୟ ବଢ଼ୁଛି । ଯେ ସ୍ତ୍ରୀ ଲୋକ ସୂତାକଟା ଛାଡ଼ୁଛନ୍ତି ସେମାନେ ସେ ସମୟର ସଦ୍‌ବ୍ୟବହାର କରୁ ନାହାନ୍ତି, ଗଳ୍ପ କରି କଟେଇବା ଛଡ଼ା ଆଉ କିଛି ଭଲ ବାଟ ତାଙ୍କୁ ମିଳୁ ନାହିଁ ।........

"ଗୋଟିଏ କୁଟୀର ଶିଳ୍ପ ନ ରହିଲେ ଭାରତର ଗୃଷୀର ସର୍ବନାଶ ସୁନିଶ୍ଚିତ । କେବଳ ଜମିର ଉତ୍ପନ୍ନରୁ ସେ ଆପଣାକୁ ପୋଷି ପାରିବ ନାହିଁ । ତାହାର ଅଭାବ ପୂରଣପାଇଁ ଗୋଟିଏ ଧନ୍ଦା ଦରକାର । ସୂତାକଟା ସବୁଠାରୁ ସହଜ, ସବୁଠାରୁ ଶସ୍ତା ଓ ସବୁଠାରୁ ଭଲ । ମୁଁ ଜାଣେ ଏଥିପାଇଁ ଆମର ଦୃଷ୍ଟିକୋଣରେ ଏକ ବିପ୍ଳବ ଦରକାର । ଏଥିରେ ବିପ୍ଳବ ଅଛି ବୋଲି ମୁଁ ଦାବୀ କରି କହେ ଯେ ସ୍ୱଦେଶୀ ବାଟରେ ସ୍ୱରାଜ ମିଳିବ ।"

ପଞ୍ଜାବର ଭଦନ୍ତ ଗୃଲିଥାଏ, ହଠାତ୍ ଗୋଟିଏ ଖିଲାଫତ୍ ସମ୍ମିଳନୀକୁ ଗାନ୍ଧୀଙ୍କ ନିମନ୍ତ୍ରଣ ଆସିଥିଲା । ସେତେବେଳକୁ ୧୯୧୪ର ଯୁଦ୍ଧ ସରିଗଲାଣି, ସନ୍ଧିର କଥା ଗୃଲିଥାଏ । ଯୁଦ୍ଧବେଳେ ଇଂରେଜ-ମାନେ ମୁସଲମାନମାନଙ୍କୁ ଜବାବ ଦେଇଥିଲେ ଯେ ତୁର୍କି ପ୍ରଭୃତି ମୁସଲମାନମାନଙ୍କ ରାଜ୍ୟ ବିରୁଦ୍ଧରେ କିଛି ଅନ୍ୟାୟ କରାଯିବ ନାହିଁ, କିନ୍ତୁ ଯୁଦ୍ଧ ପରେ ଇଂରେଜ ସରକାରଙ୍କର ଗତି ବଦଳିଲା

ଇଣ୍ଣା ପଡୁଥିଲା ଯେ ତାଙ୍କର ଜବାବ ସେ ରଖିବେ ନାହିଁ । ଫଳରେ ମୁସଲମାନ ଜଗତରେ ଏକ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେହି ଆନ୍ଦୋଳନ ନାମ ଥିଲା ଖିଲାଫତ୍ ଆନ୍ଦୋଳନ ।

ଗାନ୍ଧୀଙ୍କର ମତ ଥିଲା ଯେ ଭାରତର ମୁସଲମାନମାନଙ୍କର ଧର୍ମ ଉପରେ ହସ୍ତକ୍ଷେପ ହେଲାବେଳେ ଭାରତର ଅନ୍ୟ ସମସ୍ତଙ୍କର ସେ ଆନ୍ଦୋଳନରେ ଯୋଗ ଦେବା ଉଚିତ । ସାହି ପଡ଼ଶା ଭଳି ଆମେ ପରସ୍ପରର ସମୟ ଅସମୟରେ ପରସ୍ପରକୁ ସାହାଯ୍ୟ କରିବା ଆମର ଧର୍ମ । ତା ୨୪।୧୧।୧୯୧୯ ରେ ଖିଲାଫତ୍ ସମ୍ମିଳନୀରେ ଗାନ୍ଧୀ ସଭାପତି ହୋଇଥିଲେ ।

ପ୍ରଥମରୁ କେତେକ ମୁସଲମାନ ଭାଇ କଥା ଉଠେଇଥାନ୍ତି ଯେ ହିନ୍ଦୁଙ୍କ ସଙ୍ଗେ ସହଯୋଗ ବଢ଼ାଇବା ପାଇଁ; ଏ ସମ୍ମିଳନୀରେ ଗୋରକ୍ଷା କଥା ପଡ଼ିବ ଓ ଗୋବଧ ବନ୍ଦ କରିବାକୁ ମୁସଲମାନମାନଙ୍କୁ କୁହାଯିବ; କିନ୍ତୁ ଗାନ୍ଧୀଙ୍କ ମତରେ ଖିଲାଫତ୍ ସଙ୍ଗେ ଗୋରକ୍ଷା କଥା ଯୋଡ଼ିଦେବା ଗୋଟାଏ ଚୁକ୍ତି କଲା ଭଳି, ତୁ ଅମୁକ କରିବୁ, ମୁଁ ଅମୁକ କରିବି, ଏହିଭଳି କଥାଟା ସୁନ୍ଦର ହେବ ନାହିଁ ବୋଲି ସେ ପେଶ୍ କରିଥିଲେ । ସାହି ପଡ଼ଶା ଭଳି ମୁସଲମାନମାନଙ୍କ ବିପଦରେ ସାହାଯ୍ୟ କରିବା ସମସ୍ତଙ୍କର ଧର୍ମ ବୋଲି ସେ ବୁଝାଇଥିଲେ । ଏ ଯୁକ୍ତି ଭାରତର ରାଜନୀତି କ୍ଷେତ୍ରରେ ନୂଆ ହେଲେ ସୁଦ୍ଧା ସେଥିରେ ସମସ୍ତେ ରାଜି ହୋଇଥିଲେ । ଏ ସମ୍ମିଳନୀରେ ଗାନ୍ଧୀଙ୍କ ପରାମର୍ଶ ଅନୁସାରେ ବିଦେଶୀ ବସ୍ତ୍ର ବର୍ଜନ ଓ ସ୍ୱଦେଶୀ ବ୍ରତ ଗ୍ରହଣ ପ୍ରସ୍ତାବ ମଧ୍ୟ ଗୃହୀତ ହୋଇଥିଲା । କିନ୍ତୁ ହସରତ୍ ମୋହାନୀଙ୍କ ଭଳି ଗରମ୍ ନେତାମାନେ କହୁଥିଲେ 'ସଙ୍ଗେ ସଙ୍ଗେ ଫଳପ୍ରଦ ହେବ, ଏହିଭଳି କିଛି ଉପାୟ ବତାନ୍ତୁ, ଏ ସ୍ୱଦେଶୀ ଓ ବସ୍ତ୍ର ବର୍ଜନ ଫଳ ବହୁତ ଡେରିରେ ହେବ' । ଗାନ୍ଧୀଙ୍କ ମନରେ ସେତେବେଳଯାଏ ଖଦଡ଼

ଆନ୍ଦୋଳନର ରଙ୍ଗ ଜମି ନ ଥାଏ । ହଠାତ୍ ସେହି ସଭାରେ ତାଙ୍କୁ ଏକ ନୂଆକଥା ଦିଶି ଯାଇଥିଲା । ସେତେବେଳେ ସିନା ସେ କଥା ନୂଆ ଥିଲା, ଏବେ ତାହା ନିତାନ୍ତ ପୁରୁଣା ଦହଘଟିଆ ହୋଇଗଲାଣି । "ଲୋକେ ଯେତେବେଳେ ନାନାପ୍ରକାର ନାନାକଥାରେ ସରକାରଙ୍କ ସଙ୍ଗେ ସହଯୋଗ କରୁଛନ୍ତି, ତେବେ ଅହିଂସା ବାଟରେ ଆଉ କ'ଣ ପ୍ରତିରୋଧ ବା ବିରୋଧ କରି ପାରିବେ ? ଆଗ ସରକାର ସଙ୍ଗେ ସହଯୋଗ ଛାଡ଼ିଲେ ସିନା ସରକାରର ବିରୋଧ ସଫଳ ହେବ ?" ଏହିଭଳି ଯୁକ୍ତିକରି ଗାନ୍ଧୀଙ୍କୁ ହଠାତ୍ 'ଅସହଯୋଗର' ଇଂରାଜୀ ଶବ୍ଦଟି—'ନନ୍ କୋ-ଅପରେସନ୍' ପଇଠି ଯାଇଥିଲା । ସେତେବେଳେ-ଯାଏ ତାର ହିନ୍ଦି ବା ଉର୍ଦ୍ଦୁ ଶବ୍ଦ କାହାରିକୁ ସୁଝି ନ ଥାଏ । ଗାନ୍ଧୀ କହିଥିଲେ "ମୁସଲମାନମାନେ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରସ୍ତାବ ଗ୍ରହଣ କରିଛନ୍ତି । ଭଗବାନ ନ କରନ୍ତୁ ସନ୍ଧି ସର୍ତ୍ତରେ ଯଦି ମୁସଲମାନ-ମାନଙ୍କ ପ୍ରତି ଅନ୍ୟାୟ ହେବ, ସେମାନେ ସରକାରଙ୍କ ସଙ୍ଗେ ସବୁ ସହଯୋଗ ବନ୍ଦ କରିଦେବେ ।

ଏ ଭଳି ଅସହଯୋଗ କରିବା ଜନ-ସାଧାରଣଙ୍କର ଏକ ମୌଳିକ ଅଧିକାର । ସରକାରୀ ସମ୍ମାନ, ସରକାରୀ ପଦ-ପଦବୀ ଆମେମାନେ ରଖିବାକୁ ଚାହୁଁ ନାହୁଁ; ସରକାରୀ ଚାକିରୀ ରହିବାକୁ ମଧ୍ୟ ବାଧ୍ୟ ନୋହୁଁ; ସେତେବେଳେ ଏହି ଅସହଯୋଗ ସେତିକରେ ବକ୍ତୃତାରେ ରହି ଯାଇଥିଲା । ସରକାର ଜବାବ୍ ଭାଙ୍ଗିଲେ ସେ କଥା ଉଠିବ, ଏତିକରେ ଛଅମାସ ଗଡ଼ି ଯାଇଥିଲା ।

( ୩୨ )

ଏହି ସମୟରେ ୟଂ ଇଣ୍ଡିଆ ଖବର କାଗଜରେ 'ଖିଲଫତ୍ ଦିବସ' ସମ୍ବନ୍ଧରେ ଗାନ୍ଧୀ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ଅକ୍ଟୋବର ୧୭ ତାରିଖ ଦିନ ଭାରତବର୍ଷରେ ଖିଲଫତ୍ ଦିବସ ପାଳିତ

ହୋଇଥିଲା । ଗାନ୍ଧୀ ଲେଖିଥିଲେ, "୧୬ ତାରିଖର କାର୍ଯ୍ୟକ୍ରମ ଭଳି ଏତେ ବଡ଼ କାମଟା ସୁରୁଖୁରୁରେ ହୋଇଗଲା ଏହା ଉଦ୍ୟୋକ୍ତାମାନଙ୍କର ବାହାଦୁରୀ କହିବାକୁ ହେବ । ଏହା ସତ୍ୟାଗ୍ରହର ମଧ୍ୟ ଗୋଟିଏ ବିଜୟ । ଲୋକେ ବୁଝି ଆସିଲେଣି ଯେ ବଡ଼ ବଡ଼ କାମ ହିଂସାଦ୍ୱାରା ହେବ ନାହିଁ । ତାହା କେବଳ ଶାନ୍ତିପୂର୍ଣ୍ଣ ନିଷ୍ଠାଦ୍ୱାରା ସମ୍ଭବ ହେବ । ଲୋକେ ଜୋର୍ ଜବରଦସ୍ତିରେ ଡରିଯିବା ଛାଡ଼ିଦେଲେ ସରକାରଙ୍କର ଡରାଇବା ଆଉ ଚାଲିବ ନାହିଁ । ଯେପର୍ଯ୍ୟନ୍ତ ସରକାର ଲୋକଙ୍କର ଇଚ୍ଛା ଉପରେ ତିଷ୍ଠି ଥାଏ, ସେ ପର୍ଯ୍ୟନ୍ତ ସେହି ସରକାର ସେବାର ଏକ ସାଧନ ଥାଏ । ମାତ୍ର ସରକାର ହାତିଆର ଦେଖାଇ ଚପେଇ ରଖିଲେ ତାହା ପୀଡ଼ାର ଏକ ସାଧନ ହୋଇଥାଏ । ତେଣୁ ଲୋକେ ଯେତେବେଳେ ଗୁଳିଗୋଳାର ଡର ଛାଡ଼ି ଦିଅନ୍ତି, ସେତେବେଳେ ପ୍ରଜାପୀଡ଼ନ ବନ୍ଦ ହୋଇଯାଏ । ଏହାହିଁ ସତ୍ୟାଗ୍ରହ, ଅର୍ଥାତ୍ ଭୟଙ୍କର ବାଧାବିଘ୍ନ ସତ୍ତ୍ୱେ ସତ୍ୟକୁ ଧରି ରହିବା—ସେ ବିଘ୍ନ ଯେ କୌଣସି ଆକାରରେ ଆସୁ ନା କାହିଁକି, ସରକାରୀ ଜୁଲମ ହେଉ, ଯୁକ୍ତିହୀନ କୁସଂସ୍କାର ହେଉ କିମ୍ବା କୌଣସି ଜାତଭାଇଙ୍କର ଛୋଟିଆ ବାସନ୍ଦ ଜୁଲମ ହେଉ ।"

୧୯୧୯ ଶେଷକୁ କଂଗ୍ରେସର ବୈଠକ ଦିନ ଆସିଗଲା । ସେଥର କଂଗ୍ରେସ ପଞ୍ଜାବ ପ୍ରଦେଶର ଅମୃତସରଠାରେ ବସୁଥାଏ । ସ୍ୱର୍ଗୀୟ ପଣ୍ଡିତ ମୋତିଲାଲ ତାଙ୍କର ଓକିଲାତି ମାରିକରି ପଞ୍ଜାବ ତଦନ୍ତରେ ବହୁତ ସମୟ ଦେଇଥିବାରୁ ପଞ୍ଜାବ ଲୋକଙ୍କର ପ୍ରିୟ ହୋଇଥାନ୍ତି । ସେ ବର୍ଷ ସେ କଂଗ୍ରେସର ସଭାପତି ହୋଇଥିଲେ । କଂଗ୍ରେସର ବୈଠକ ପୂର୍ବରୁ ପଞ୍ଜାବର ନେତାମାନଙ୍କୁ ଜେଲରୁ ଛାଡ଼ିଦିଆ ହୋଇଥିଲା । ଆଲିଭାଇମାନେ ନଜରବନ୍ଦୀରୁ ମୁକ୍ତ ହୋଇ କଂଗ୍ରେସରେ ଆସି ପହଞ୍ଚିଥିଲେ । ମାଲବ୍ୟଜୀ, ତିଲକ, ଚିତ୍ତରଞ୍ଜନ

ପ୍ରଭୃତି ବଡ଼ ବଡ଼ ନେତାମାନେ ସମସ୍ତେ ଥିଲେ । କିନ୍ତୁ ଲୋକେ ଚାହୁଁଥିଲେ ଗାନ୍ଧୀଙ୍କୁ । ଅଧିକାଂଶ ପ୍ରତିନିଧି ଚାହୁଁଥିଲେ ଗାନ୍ଧୀଙ୍କ ନେତୃତ୍ୱ । ଗାଉଁଲି ଲୋକେ ବହୁତ ପରିମାଣରେ କଂଗ୍ରେସକୁ ଆସିଥାନ୍ତି । "ମହାତ୍ମା ଗାନ୍ଧୀକି ଜୟ"ର ଆରମ୍ଭ ଏହି କଂଗ୍ରେସରେ ହୋଇଥିଲା । ଜବାହରଲାଲ କହନ୍ତି ଅମୃତସର କଂଗ୍ରେସ ପ୍ରଥମ ଗାନ୍ଧୀ କଂଗ୍ରେସ ।

କଂଗ୍ରେସ ବୈଠକରେ ଗୋଟିଏ ବିଷୟରେ ବଡ଼ ବଡ଼ ନେତାମାନଙ୍କର ମତଭେଦ ହୋଇଥିଲା । ସେତିକିବେଳକୁ ବିଲାତରୁ ସରକାରୀ ଘୋଷଣା ବାହାରିଥାଏ, ନୂଆ ଶାସନ ସଂସ୍କାର ଆଇନ ଗଢ଼ା ହେବାର ସୂଚନା ଦିଆ ହୋଇଥାଏ । ଲୋକମାନ୍ୟ ତିଳକ, ଦେଶବନ୍ଧୁ ଚିତ୍ତରଞ୍ଜନ ପ୍ରଭୃତି ବଡ଼ ବଡ଼ ନେତାମାନେ ସେ ସଂସ୍କାର ଆଇନକୁ ବର୍ଜନ କରିବା ପକ୍ଷରେ ଥାନ୍ତି, କିନ୍ତୁ ଗାନ୍ଧୀଙ୍କ ଇଚ୍ଛା ତାହା ନ ଥାଏ । ଯଦ୍ୟପି ଅସହଯୋଗ ତାଙ୍କ ମୁଣ୍ଡରେ ଥାଏ ତଥାପି ସେ ଅପେକ୍ଷା କରିବାକୁ ଚାହୁଁଥାନ୍ତି—ସଂସ୍କାର ଆଇନକୁ ଥରେ ପରଖି ଦେଖିବାକୁ ତାଙ୍କର ମନ ଥାଏ । ଏଣେ ବଡ଼ ବଡ଼ ପୁରୁଣା ନେତାମାନଙ୍କର କଂଗ୍ରେସ ମଣ୍ଡପରେ ଖୋଲା ଖୋଲି ବିରୋଧ କରିବାକୁ ତାଙ୍କର ମନ ନ ଥାଏ, ସେଥିପାଇଁ କଂଗ୍ରେସର ବାକୀ ଦିନ କେତୋଟି ବୈଠକରେ ଅନୁପସ୍ଥିତ ରହିବାକୁ ସେ ଇଚ୍ଛା କରିଥିଲେ । କିନ୍ତୁ ପଞ୍ଜାବର ଲୋକେ ତାଙ୍କୁ କୁଆଡ଼ୁ ଛାଡ଼ ଦଅନ୍ତେ ? ସେତେବେଳକୁ 'କଂଗ୍ରେସ ଗାନ୍ଧୀ, ଗାନ୍ଧୀ କଂଗ୍ରେସ' ଏହା ଚୂଡ଼ାନ୍ତରୁ ଚଳି ନ ଥିଲେ ମଧ୍ୟ ଗାନ୍ଧୀଙ୍କୁ ଛାଡ଼ କଂଗ୍ରେସ କମିତି ହେବ ମହା ଅଡୁଆ ପଡ଼ ଯାଇଥିଲା ।

ପଞ୍ଜାବ ନେତାମାନେ ବ୍ୟସ୍ତ ହୋଇ ପଡ଼ିଥିଲେ । ଗାନ୍ଧୀ ସମସ୍ତଙ୍କ ସଙ୍ଗେ କଥାବାର୍ତ୍ତା କରି ସମସ୍ତଙ୍କୁ ଏକମତ କରିବା ପାଇଁ

ଯଥାସାଧ୍ୟ ଉଦ୍ୟମ କରୁଥିଲେ । କିନ୍ତୁ ଶେଷରେ ବାଧ୍ୟ ହୋଇ ତାଙ୍କର ନିଜ ପ୍ରସ୍ତାବ ଅଗତ କରିବାକୁ ସ୍ଥିର କରିଥିଲେ । କଂଗ୍ରେସ ସଭାବେଳେ ବି ସାଲିସର ଉଦ୍ୟମ ଚାଲିଥାଏ । ଶେଷରେ ଶ୍ରୀ ଜୟରାମ ଦାସଙ୍କର ସଂଶୋଧନ ପ୍ରସ୍ତାବରେ ଉଭୟ ଦଳ ରାଜି ହୋଇଥିଲେ । ସାଧାରଣ ଲୋକେ ବି ଭାରି ଖୁସି ହୋଇଥିଲେ । ଏହି କଂଗ୍ରେସ ବୈଠକରେ ଗାନ୍ଧୀ କଂଗ୍ରେସଦୀକ୍ଷା ଗ୍ରହଣ କରିଛନ୍ତି ବୋଲି ସେ ନିଜେ କହିଥାନ୍ତି । ତୁଇଟି କାମରେ ଗାନ୍ଧୀଙ୍କର ଯୋଗ୍ୟତାର ପରିଚୟ ପାଇ ତାଙ୍କୁ ସେହି ସେହି କାମର ଭାର ଦିଆ ଯାଇଥିଲା । ଏହି କଂଗ୍ରେସରେ ପଞ୍ଜାବର ଜାଲିଆଁୱାଲାବାଗ୍‌ରେ ହତ୍ୟାକାଣ୍ଡ ସ୍ମୃତିରକ୍ଷା ପାଇଁ ଏକ ପ୍ରସ୍ତାବ ହୋଇଥାଏ । ସେଥିପାଇଁ ପାଞ୍ଚଲକ୍ଷ ଟଙ୍କା ଯାଏ ଚାନ୍ଦା ସଂଗ୍ରହ କରିବାର ବିଚାର ହୋଇଥିଲା । ଗାନ୍ଧୀ ସେଥିରେ ଜଣେ ଟ୍ରଷ୍ଟୀ ହୋଇଥିଲେ । ଚାନ୍ଦା ଉଠାଇବାରେ ସେ ବଡ଼ ଓସ୍ତାଦ୍ ଥିଲେ । "ପଣ୍ଡିତ ମାଳବ୍ୟଙ୍କୁ ସାଧାରଣ ପାଣ୍ଠି ସଂଗ୍ରହ ସମ୍ବନ୍ଧରେ ଭିକାରୀଙ୍କ ରଜା ବୋଲି ସାଧାରଣରେ ମାନିଥାନ୍ତି, କିନ୍ତୁ ମୁଁ ସେ ଦିଗରେ ତାଙ୍କର ବହୁତ ପଛରେ ନ ଥିଲି ।"—ଏହିପରି ଭାଷାରେ ଗାନ୍ଧୀ ତାଙ୍କ ନିଜର ଚାନ୍ଦା ଅଦାୟ କରିବାର କ୍ଷମତା ବର୍ଣ୍ଣନା କରିଛନ୍ତି । ଅଳ୍ପଦିନ ଭିତରେ ଏତିକ ଟଙ୍କା ଉଠାଇ ଦେଇଥିଲେ ।

ଆଉ ଗୋଟିଏ କାମରେ ଗାନ୍ଧୀ ସିଦ୍ଧହସ୍ତ ଥିଲେ । ତାହା ଥିଲା—ଅନୁଷ୍ଠାନମାନଙ୍କର ବିଧିବିଧାନ ଗଠନ କରିବା । କଂଗ୍ରେସର ବିଧିବିଧାନରେ କେତେକ ପରିବର୍ତ୍ତନ ଦରକାର ବୋଲି ସେ ଉପଲବ୍ଧି କରିଥିଲେ । କଂଗ୍ରେସର କାମ ସବୁଦିନେ ଚଳେଇବାକୁ କୌଣସି ବ୍ୟବସ୍ଥା ସେତେବେଳଯାଏ ନ ଥିଲା; ବର୍ଷକରେ ଥରେ ବସନ୍ତି, ତା ପରେ ଆଉ କିଛି କାମ ନ ଥାଏ । ପୁଣି ପରବର୍ଷକୁ

ବୈଠକ ଏହିପରି ଚାଲୁଥାଏ । ବର୍ଷ ଭିତରେ ହଠାତ୍ ଅବସ୍ଥାର କୌଣସି ପରିବର୍ତ୍ତନ ହେଲେ, ତାହାର ବ୍ୟବସ୍ଥା ପାଇଁ କୌଣସି ବିଧାନ ନ ଥିଲା । ଅଧିକନ୍ତୁ କଂଗ୍ରେସ ବୈଠକଟା ଗୋଟାଏ ହଉଚି ଗୋଳ ବ୍ୟାପାର ହେଉଥିଲା । କେଉଁ ପ୍ରଦେଶରୁ କେତେ ପ୍ରତିନିଧି ଆସିବେ ଓ ମୋଟ କେତେ ଆସିବେ ସେଥିର କୌଣସି କଟକଣା ନ ଥିଲା । ଏହି ଦିଗରେ କେତେକ ପରିବର୍ତ୍ତନ କରି ନୂଆ ନିୟମାବଳୀ ଗଠନ କରିବା ଭାର ଗାନ୍ଧୀ ନେଇଥିଲେ ।

ଏହି କଂଗ୍ରେସରେ ଗାନ୍ଧୀ ତାଙ୍କର ସତ୍ୟାଗ୍ରହ ନୀତିକୁ ଲୋକଙ୍କ ଆଗରେ ରଖିବା ପାଇଁ ଚେଷ୍ଟା କରିଥିଲେ । ପଞ୍ଜାବ ହତ୍ୟାକାଣ୍ଡ ପାଇଁ ସରକାରଙ୍କୁ ନିନ୍ଦା କରି ପ୍ରସ୍ତାବ ଗ୍ରହଣ କରିବା ସଙ୍ଗେ ସଙ୍ଗେ, ଲୋକଙ୍କଦ୍ୱାରା ହୋଇଥିବା ହିଂସାକୁ ନିନ୍ଦା କରି ଆଉ ଏକ ପ୍ରସ୍ତାବ ଗାନ୍ଧୀ ଆଗତ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ନେତାମାନେ ସେଥିରେ ଅସଙ୍ଗ ହୋଇଥିଲେ । ଆପଣା ଦୋଷକୁ ପ୍ରକାଶ କରି-ଦେଇ ନିଜକୁ ସୁଧାରିବା ଉଦ୍ୟମ କରିବା କଥାଟା ଦେଶ ଆଗରେ ନୂଆ ଥିଲା । ତା ଉପରେ ପୁଣି ହିଂସାଠାରୁ ଅହିଂସାକୁ ଅଧିକ ପସନ୍ଦ କରିବା କଥା ନୂଆ ଥାଏ । ଗାନ୍ଧୀ କିନ୍ତୁ ଜିଦ୍‌ଧରି ବସିଥିଲେ ଏବଂ କଂଗ୍ରେସ ଏଭଳି ପ୍ରସ୍ତାବ କରି ସତ୍ୟ ଓ ଅହିଂସାର ସମର୍ଥନ ନ କଲେ ସେ କଂଗ୍ରେସରେ ରହି ପାରିବେ ନାହିଁ ବୋଲି ସାଫ ସାଫ ଜଣାଇ ଦେଇଥିଲେ । ତାଙ୍କର କଥା ରହିଥିଲା ଏବଂ ରଉଲଟ ଆଇନ ସତ୍ୟାଗ୍ରହ ସମ୍ପର୍କରେ ଲୋକେ ଯେଉଁ ହିଂସା କରିଥିଲେ କଂଗ୍ରେସ ତାହାର ନିନ୍ଦାବାଦ୍ କରିଥିଲା । ସେହି ପ୍ରସ୍ତାବ ଆଗତ କରି ଗାନ୍ଧୀ କହୁଁ କହୁଁ କହିଥିଲେ, "ସରକାର ଲୋକଙ୍କୁ ଉତ୍ତେଜିତ କରିବାକୁ ଯଥେଷ୍ଟ ଉତ୍ତେଜନାର କାରଣ ଦେଇଥିଲେ । ପ୍ରିୟ ନେତାମାନଙ୍କୁ ବିନା କାରଣରେ ଧରି ନେଇ ଯାଇଥିଲେ । ସରକାର ସେତେବେଳେ

ପାଗଳ ହୋଇଯାଇଥିଲେ; ଲୋକେ ବି ତାଙ୍କ ସାଙ୍ଗକୁ ପାଗଳ ହୋଇଗଲେ । କିନ୍ତୁ ପାଗଳାମିର ଜବାବ ପାଗଳାମିରେ ଦେବାର ନ ଥିଲା, ପାଗଳାମି ବଦଳରେ ଧୀରସ୍ଥିରମତ ଦେଖାଉଥିଲେ ଆଜି ସମସ୍ତ ଅବସ୍ଥା ଆମ ହାତରେ ଥାନ୍ତା ।" ଏହି କଂଗ୍ରେସରେ ଗଠନମୂଳକ କାମସମ୍ବନ୍ଧରେ ଏକ ପ୍ରସ୍ତାବ ଆସିଥିଲା । ସେଥିରେ ହାତକଲରେ ଲୁଗାବୁଣା ଓ ସୂତା କଟା, ଏ କୁଟୀର ଶିଳ୍ପମାନଙ୍କର ପୁନରୁଦ୍ଧାର କରିବା ପାଇଁ ଦେଶକୁ ଡାକ ଦିଆ ହୋଇଥିଲା । ତା ସଙ୍ଗେ ସଙ୍ଗେ ପ୍ରଦେଶମାନଙ୍କରେ ନିଶାଦ୍ରବ୍ୟ ଆଇନ ବଦଳାଇବା, ତୃତୀୟଶ୍ରେଣୀ ରେଲ୍ ଯାତ୍ରୀଙ୍କ ଅବସ୍ଥା ସୁଧାରିବା, ଦୁଧିଆଳଗାଈ ବିଦେଶକୁ ରପ୍ତାନି ବନ୍ଦ କରିବା ପ୍ରଭୃତି ବିଷୟରେ ପ୍ରସ୍ତାବମାନ ମଞ୍ଜୁର ହୋଇଥିଲା । କଂଗ୍ରେସ ଇତିହାସରେ ଡାକ୍ତର ପଟ୍ଟାଭି ଲେଖିଛନ୍ତି "ବହୁବର୍ଷ ପରେ କଂଗ୍ରେସ ଅମୃତସରଠାରେ ଚାଷୀଙ୍କ ଅବସ୍ଥା ଆଡ଼କୁ ଦୃଷ୍ଟି ଦେଇଥିଲା । କଳକାରଖାନାରେ କାମ କରୁଥିବା ମୂଲିଆମାନଙ୍କ ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲା ।"

( ୩୩ )

ଦେଶରେ ଖିଲାଫତ୍ ଆନ୍ଦୋଳନ ଜୋର ଚାଲିଥାଏ । ଅଲି-ଭାଇ ଦୁଇଜଣଯାକ ମନପ୍ରାଣ ଢାଳିଦେଇ ଲାଗିଥାନ୍ତି । ଗାନ୍ଧୀ ପରାମର୍ଶ-ଦାତା ହୋଇଥାନ୍ତି । ଖୁବ୍ ଲେଖାଲେଖି କରୁଥାନ୍ତି । ମୁସଲମାନଙ୍କ ଏ ଦୁଃଖରେ ହିନ୍ଦୁମାନଙ୍କର ପଡ଼ୋଶୀ ଭଳି ପୂର୍ଣ୍ଣ ସହଯୋଗ କରିବା ଉଚିତ ବୋଲି ହିନ୍ଦୁମାନଙ୍କୁ ବୁଝାଉଥାନ୍ତି । ଥରେ ଗାନ୍ଧୀ ଲେଖିଥିଲେ 'ଯଦି ମୁସଲମାନମାନଙ୍କ ଦାବି ଇଂଲଣ୍ଡ ବା ତାର ବନ୍ଧୁମାନେ ପୂରଣ ନ କରନ୍ତି' ତେବେ କି ଉଦ୍ୟମ କରାଯିବ ? ଏକ ଜଙ୍ଗଲୀ ଅସଭ୍ୟ ଉପାୟ ଅଛି—ଖୋଲଖୋଲି ହେଉ ବା ଲୁଚିଲୁଚି ହେଉ ହିଂସା ଯୁଦ୍ଧ । ଅନ୍ୟ କିଛି କାରଣ ଥାଉ ନ ଥାଉ ଏହା ସମ୍ଭବ ନୁହେଁ, ତେଣୁ

ସେ ବାଟ ଛାଡ଼ିବାକୁ ହେବ । ହିଂସା ସବୁବେଳେ ଫେଲ ଏତକ ଯଦି ମୁଁ ସମସ୍ତଙ୍କୁ ବୁଝାଇ ପାରନ୍ତି, ତେବେ ଆମର ନ୍ୟାଯ୍ୟ ଉଦ୍ଦେଶ୍ୟ ଆମେ ଖୁବ୍ ଶୀଘ୍ର ସାଧନ କରି ପାରନ୍ତେ । କିନ୍ତୁ ଅଜି ହିଂସା ବିରୁଦ୍ଧରେ ମୁଁ ଯେତେକ ଯୁକ୍ତି କରୁଛି ତାହା କେବଳ ବ୍ୟାବହାରିକ ଦୃଷ୍ଟିରୁ କରୁଛି, ଅର୍ଥାତ୍ ସେଥିରେ କିଛି ଫଳ ହେବ ନାହିଁ, ସେଭଳି ହିଂସା ଉଦ୍ୟମ ବୃଥା ହେବ । ଅତଏବ ଅସହଯୋଗହିଁ ଆମ ଆଗରେ ଏକମାତ୍ର ବାଟ । ଅସହଯୋଗ ହିଂସାରୁ ମୁକ୍ତ ହେଲେ ପୂର୍ଣ୍ଣ ଅହିଂସା ହେଲେ, ତାହା ସବୁଠାରୁଁ ସଫା ସୁତ୍ରବ ଅଥଚ ସବୁଠାରୁ ବେଶୀ ଫଳପ୍ରଦ ଉପାୟ ।”

ଏହିପରି ଲେଖୁଥାନ୍ତି; ମୁସଲମାନଙ୍କ ସଙ୍ଗେ ଆଲୋଚନା କରୁଥାନ୍ତି । ଅହିଂସ ଲଢ଼େଇ ବିଷୟରେ ମୁସଲମାନମାନଙ୍କ ଧର୍ମର ମତ କ'ଣ, ମୁସଲମାନମାନେ କେତେଦୂର ଅହିଂସା ପାଳିପାରିବେ ଇତ୍ୟାଦି ବିଷୟ ବଡ଼ ବଡ଼ ମୁସଲମାନ ଧର୍ମଶାସ୍ତ୍ରୀଙ୍କ ସଙ୍ଗେ ଗାନ୍ଧୀ ପରାମର୍ଶ କରୁଥିଲେ । ମୌଲନା ଅବୁଲ୍ କଲମ୍ ଅଜାଦ୍ ସେତେବେଳେ ମଧ୍ୟ ଗାନ୍ଧୀଙ୍କ ଅହିଂସା ନୀତିକୁ ଧର୍ମଗ୍ରନ୍ଥରୁ ପ୍ରମାଣ ଦେଖାଇ ସମର୍ଥନ କରୁଥାନ୍ତି । ଶେଷରେ ସ୍ଥିର ହେଲା ଯେ ଇସଲାମ୍ ଧର୍ମରେ ଅହିଂସା ଧର୍ମକୁ ଆଶ୍ରୟ କରିବାରେ ମନା ନାହିଁ; ଏବଂ ସେ ବାଟ ଧରିଲେ ମୁସଲମାନମାନେ ତାକୁ ପୁରାପୁରି ନିଷ୍ଠାର ସହିତ ଧରି ଚାଲିବାକୁ ବାଧ୍ୟ ।

ଏହି ସମୟରେ ଯୁଦ୍ଧର ସନ୍ଧି ସର୍ତ୍ତ ପ୍ରକାଶ ପାଇଥିଲା ଓ ସେଥିରେ ମୁସଲମାନଙ୍କ ରାଜ୍ୟ ପ୍ରତି ଅନ୍ୟାୟ କରାଯାଇଥିଲା । ଇଂଲଣ୍ଡ ତାର ଜବାବ ରଖି ପାରି ନ ଥିଲା । ଖିଲାଫତ୍ ସମ୍ମିଳନୀ ପୁଣି ବସିଲା । ବହୁତ ହିନ୍ଦୁନେତା ସେଥିରେ ଯୋଗଦେଲେ । ବିତ ବିତ ମନ୍ତ୍ରଣା ଚାଲିଲା । ଶେଷରେ ଅସହଯୋଗ ଗୃହୀତ ହେଲା । ହାକିମ୍ ଅଜମଲଖାଁ ମଧ୍ୟ ଏଥିରେ

ଏକମତ ହୋଇଥିଲେ । ଅସହଯୋଗକୁ ଚଳେଇବା ପାଇଁ ଏକ କମିଟି ଗଢ଼ା ହେଲା । ଗାନ୍ଧୀ ସେଥିରେ ଏକମାତ୍ର ହିନ୍ଦୁନେତା ସଭ୍ୟ ରହିଥିଲେ । ଗାନ୍ଧୀ ଲେଖିଛନ୍ତି "ମୁସଲମାନ ନେତାମାନେ ବାଟ ଦେଖାଇବେ; ସେହିମାନେ ଅସହଯୋଗ କରିବେ । ସେମାନେ ନିଜେ କଲେ ସାଧାରଣ ଲୋକେ ତାଙ୍କ ବାଟ ଧରିବେ । ଏ ଅସହଯୋଗ କଥା ପହିଲେ ମୋର ମୁଣ୍ଡରୁ ଦିଲ୍ଲୀ ସମ୍ମିଳନୀରେ ବାହାରି ଥିଲା । ମୁଁ ସେ ବିଷୟରେ ଅନେକ ପରୀକ୍ଷାରେ ସଫଳ ହୋଇଛି । ମୁଁ ଅସହଯୋଗର ଏକ ବିଶେଷଜ୍ଞ । ତେଣୁ ମୋତେ ସେ କମିଟିରେ ରଖିଛନ୍ତି; ହିନ୍ଦୁ ବୋଲି ମତେ ରଖି ନାହାନ୍ତି, ମତେ ଜଣେ ବିଶେଷଜ୍ଞ ପରାମର୍ଶଦାତା ପରି ରଖିଛନ୍ତି ।" ଏହାଲାବାଦ୍ ଠାରେ ଯେ କମିଟି ବସିଥିଲା, ସେଥିରେ ଗାନ୍ଧୀ କହିଥିଲେ "ଯୁଦ୍ଧ ବେଳେ ସାମରିକ ଆଇନ ଜାରି ହୋଇଥାଏ, ଆମର ଅହିଂସା ଯୁଦ୍ଧରେ ଆମ ଅଡୁ ସେମିତି ଗୋଟିଏ ହୁକୁମ୍, ଗୋଟିଏ ସାମରିକ ଆଇନ ଚଳିବା ଦରକାର । ତେବେଯାଇ ଆମେ ଜିତି ପାରିବା । ଯେତେଦିନ ମତେ ନେତା କରିଥିବେ, ମୋର କଡ଼ା ନିୟମକୁ ମାନିବେ । ପରେ ମତେ ମାରି ଦେଇ ପାରନ୍ତି, ମୋର ମୁଣ୍ଡିକାଟି କରି ପାରନ୍ତି ସେଥିରେ ମୋର ଆପତ୍ତି ନାହିଁ ।"

ଏ ତ ୧୯୨୦ ର କଥା । ଏହି ବର୍ଷ ଆରମ୍ଭରେ ଗିରମିଟିଆକୁଲି ସଂଗ୍ରହପ୍ରଥା ଏକଦମ୍ ରଦ୍ ହୋଇଥିଲା ଏବଂ ୧୯୨୦ ଜାନୁୟାରୀ ପହିଲାରୁ ଯେଉଁଠି ଯେତେ ଏଭଳି ଚୁକ୍ତିରେ ବନ୍ଧାଥିଲେ ସେମାନେ ସମସ୍ତେ ମୁକ୍ତ ହୋଇ ଯାଇଥିଲେ ।

୧୯ ତାରିଖ ମାର୍ଚ୍ଚରେ ଖିଲଫତ ସମ୍ମିଳନୀ ତରଫରୁ ଏକ ହରତାଳ ଦିବସ ପାଳିତ ହୋଇଥିଲା । ସେହିବର୍ଷ ଏପ୍ରେଲ ୬ ତାରିଖ ଠାରୁ ୧୩ ତାରିଖ ପର୍ଯ୍ୟନ୍ତ ସପ୍ତାହଟି ଜାତୀୟ ସପ୍ତାହ ରୂପେ ଦେଶରେ ପାଳିତ ହୋଇଥିଲା, ଏବଂ ସେହିବର୍ଷଠାରୁ ପ୍ରତିବର୍ଷ ଆଜିଯାଏ ପାଳିତ

ହୋଇ ଅସୁଅଛୁ । ଶ୍ରୀମତୀ ଆନିବେଶାନ୍ତ ଇଣ୍ଡିଆନ୍ ହୋମ୍ ରୁଲ୍ ଲିଗ୍ (ଭାରତ ସ୍ୱାୟତ୍ତ ଶାସନସଂଘ) ନାମକ ଅନୁଷ୍ଠାନର ସଭାପତି ଥିଲେ । ସେ ସେଥିରୁ ବାହାର ଯିବାରୁ ଗାନ୍ଧୀ ସେଥିରେ ସଭାପତି ହୋଇ-ଥିଲେ ଏବଂ ତାର ନାଁକୁ ସ୍ୱରାଜ୍ୟସଭା ବଦଳେଇ ଦେଇଥିଲେ । ସ୍ୱରାଜ୍ୟ ସଭାର ଉଦ୍ଦେଶ୍ୟ ଥିଲା ସ୍ୱଦେଶୀ ପ୍ରଚାର, ହିନ୍ଦୁ ମୁସଲମାନ ଏକତା ସ୍ଥାପନ, ହିନ୍ଦୁସ୍ଥାନୀକୁ ଭାରତର ରାଷ୍ଟ୍ର ଭାଷା କରିବା ଏବଂ ଭାଷା ସୂତ୍ରରେ ପ୍ରଦେଶର ଗଠନ ।

ଖିଲାଫତ ସମ୍ମିଳନୀର ପ୍ରସ୍ତାବ ଅନୁଯାୟୀରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବାପାଇଁ ଅଗଷ୍ଟ ପହିଲା ଧାର୍ଯ୍ୟ ହୋଇଥାଏ । ସେହିଦିନ ପାହାନ୍ତାରେ ବମ୍ବେଠାରେ ଲୋକମାନ୍ୟ ତିଲକଙ୍କର ମୃତ୍ୟୁ ହୁଏ । ସେହି ଦିନଠାରୁ ଗାନ୍ଧୀ ଓ ମୌଲନା ମହମ୍ମଦ ଅଲ୍ଲୀ ସାଙ୍ଗ ହୋଇ ଅସହଯୋଗ ପ୍ରଚାରରେ ବାହାରି ପଡ଼ିଥିଲେ । ପଞ୍ଜାବ ଗୋଲମାଲ ତଦନ୍ତ କରୁଥିବା ସରକାରୀ କମିଟି ତାଙ୍କ ରିପୋର୍ଟ ଦେଇ ସାରିଥାନ୍ତି । ସେ ରିପୋର୍ଟ ଯୋଗୁଁ ଦେଶରେ ଅସନ୍ତୋଷ ବଢ଼ିଥାଏ । ସେଥିରୁ ଗାନ୍ଧୀଙ୍କ ଅସହଯୋଗ ପ୍ରଚାରରେ ଅଧିକ ଜୋର୍ ମିଳିଯାଇଥିଲା । ଗାନ୍ଧୀ ମଧ୍ୟ କଂଗ୍ରେସରେ ଅସହଯୋଗ ପ୍ରସ୍ତାବ ଗୃହୀତ କରାଇବା ପାଇଁ ଲାଗି ପଡ଼ିଥାନ୍ତି । ଗୁଜୁରାଟର ପ୍ରାଦେଶିକ ରାଜନୈତିକ ସମ୍ମିଳନୀରେ ଗାନ୍ଧୀ ଅସହଯୋଗ ପ୍ରସ୍ତାବ ଆଣିଥିଲେ, ସେଠି ଆପତ୍ତି ଉଠିଥିଲା ଯେ, କଂଗ୍ରେସ ସେ ବିଷୟରେ କୌଣସି ନିଷ୍ପତ୍ତି କରିବା ପୂର୍ବରୁ ପ୍ରାଦେଶିକ ସମ୍ମିଳନୀମାନେ ଏ ଭଳି କିଛି କରି ପାରିବେ ନାହିଁ । ତାର ଜବାବରେ ଗାନ୍ଧୀ କହିଥିଲେ "ତଳ ଅନୁଷ୍ଠାନ ଆଗକୁ ମାଡ଼ିଯିବା ପାଇଁ ଆପଣା ଦାୟିତ୍ୱରେ ନୂଆ ପ୍ରସ୍ତାବ କରି ପାରେ; ତାହାଦ୍ୱାରା ଉପର ଅନୁଷ୍ଠାନର ପ୍ରତିଷ୍ଠା ବଢ଼ିବାର ସମ୍ଭାବନା. ସେଥିରେ ଅନୀତି କାହିଁକି ଲୋଡ଼ା ? ଯାହା

ହେଉ, ଆଲୋଚନା ପରେ ଗାନ୍ଧୀଙ୍କ ପ୍ରସ୍ତାବ ବହୁତ ଅଧିକ ମତରେ ଗୃହୀତ ହୋଇଥିଲା । ସେହି ସମ୍ମିଳନୀରେ ଶ୍ରୀ ବଲ୍ଲଭ ଭାଇ ପଟେଲ ସଭାପତି ଥିଲେ ।

ସେହି ଅଗଷ୍ଟମାସ ୧୧ ତାରିଖର ୟଂ ଇଣ୍ଡିଆ ଖବର କାଗଜରେ "ତରବାରର ନୀତି" ନାଁ ରେ ଗୋଟିଏ ପ୍ରବନ୍ଧରେ ଗାନ୍ଧି ଲେଖିଥିଲେ "ମୁଁ ଖାଲି ମନଗଢ଼ା କଥାଗୁଡ଼ାଏ କହେ ନାହିଁ । ମୁଁ ଆଦର୍ଶବାଦୀ ସତ, କିନ୍ତୁ ମୁଁ ଦାବୀକରେ, ମୁଁ ଜଣେ ବ୍ୟାବହାରିକ ଆଦର୍ଶବାଦୀ । ଅହିଂସାର ଧର୍ମ କେବଳ ମୁନି ଋଷି ସାଧୁସନ୍ଥଙ୍କ ପାଇଁ ହୋଇନାହିଁ । ଏହା ସାଧାରଣ ଲୋକଙ୍କ ପାଇଁ ହୋଇଛି । ଯେମିତି ପଶୁଜାତିର ଧର୍ମ ହିଂସା, ସେମିତି ଆମ ମନୁଷ୍ୟ ଜାତିର ଧର୍ମ ଅହିଂସା । ପଶୁଠାରେ ଆତ୍ମା ଶୋଇଥାଏ । ପଶୁ ଶରୀର ବଳ ଛଡ଼ା ଅନ୍ୟ ନିୟମ ଜାଣେ ନାହିଁ । ମଣିଷର ପ୍ରତିଷ୍ଠା ପାଇଁ ମଣିଷକୁ ଏକ ଉଚ୍ଚ ଧର୍ମ ମାନିବାକୁ ହେବ, ତାକୁ ଆତ୍ମବଳ ମାନିବାକୁ ହେବ ।

"ଯେଥିପାଇଁ ମୁଁ ଭାରତ ଆଗରେ ଏ ପୁରୁଣା ତ୍ୟାଗ ଧର୍ମର କଥା କହିବାକୁ ସାହସ କରୁଛି । କାରଣ, ଅସହଯୋଗ ଓ ସବିନୟ ପ୍ରତିରୋଧ ଏ ଦୁହେଁ ସତ୍ୟାଗ୍ରହର ଶାଖା ପ୍ରଶାଖା ଅଟନ୍ତି । ସତ୍ୟାଗ୍ରହ ଏବଂ ତାର ଏ ଶାଖା ପ୍ରଶାଖା ଦୁଇଟି ନୂଆ ନୁହନ୍ତି, ସେହି ପୁରୁଣା ତ୍ୟାଗ ଧର୍ମର, କଷ୍ଟ ସହିବା ନୀତିର ସେ ଦୁଇଟି ନୂଆ ନାମ ମାତ୍ର । ଯେଉଁ ଋଷିମାନେ ଏ ଜଗତର ହିଂସା ଭିତରେ ଅହିଂସା ଧର୍ମକୁ ଆବିଷ୍କାର କରିଥିଲେ, ସେମାନେ ବଡ଼ ଆବିଷ୍କାରକ ଥିଲେ । ସେମାନେ ବି ନିଜେ ବଡ଼ ବୀର ଯୋଦ୍ଧା ଥିଲେ । ସେମାନେ ଅସ୍ତ୍ରଶସ୍ତ୍ର ବ୍ୟବହାର ଜାଣିଥିଲେ ଏବଂ ସେ ସବୁର ବ୍ୟର୍ଥତା ବୁଝିପାରି ଯୁଦ୍ଧ କ୍ଳାନ୍ତ ଦୁନିଆକୁ ଶିଖାଇଥିଲେ ଦୁନିଆର ମୁକ୍ତି ହିଂସା ବାଟରେ ମିଳିବ ନାହିଁ, ଅହିଂସା ବାଟରେହିଁ ମିଳିବ ।

"ଅହିଂସାର କାର୍ଯ୍ୟକାରୀ ରୂପ ହେଉଛି ଜାଣି ଶୁଣି କଷ୍ଟ ସହିବା । ଏହାର ଅର୍ଥ ନୁହେଁ, ଅତ୍ୟାଚାରୀର ଇଚ୍ଛା ଆଗରେ ମୁଣ୍ଡ ନୁଆଇଁ ଦେବା; କିନ୍ତୁ ଏହାର ଅର୍ଥ ଅତ୍ୟାଚାରୀର ଇଚ୍ଛା ବିରୁଦ୍ଧରେ ଆପଣାର ସମସ୍ତ ଆତ୍ମଶକ୍ତିକୁ ପ୍ରୟୋଗ କରିବା । ଆମର ଜୀବନର ଏହି ଧର୍ମ ଅନୁସାରେ କାମ କରି ଜଣେ ଲୋକ ଆପଣାର ସମ୍ମାନ, ଆପଣାର ଧର୍ମ, ଆପଣାର ଆତ୍ମାକୁ ରକ୍ଷା କରିବା ପାଇଁ ଏ ଅନ୍ୟାୟ ସାମ୍ରାଜ୍ୟର ସମସ୍ତ ଶକ୍ତିର ବିରୋଧ କରି ପାରେ ଏବଂ ସେହି ସାମ୍ରାଜ୍ୟର ପତନ ବା ସଂସ୍କାରର ମୂଳଦୁଆ ପକେଇ ଦେଇପାରେ ।"

## ( ୩୪ )

କଲିକତା କଂଗ୍ରେସରେ ବହୁତ ଲୋକ ଜମା ହୋଇଥିଲେ । ଲାଲା ଲଜପତରାୟ ସଭାପତି ହୋଇଥାନ୍ତି । ବମ୍ବେଠାରୁ କଂଗ୍ରେସ-ଲୋକଙ୍କୁ କଲିକତା ନେବା ପାଇଁ ଖାସ୍ ରେଲଗାଡ଼ି ଯାଉଥାଏ । ଗାନ୍ଧି ତାଙ୍କର ଅସହଯୋଗ ପ୍ରସ୍ତାବ ସେହି ରେଲଗାଡ଼ିରେ ବସି ବସି ଠିକ୍ କରିଥିଲେ । ସେତେବେଳଯାଏ ଭିନ୍ନ ଭିନ୍ନ ଭାଷାରେ ଅସହ-ଯୋଗର ପ୍ରତିଶବ୍ଦ ବାହାରି ନ ଥାଏ । କଲିକତାରେ ପହଞ୍ଚି ଗାନ୍ଧି ଟିକିଏ ବିବ୍ରତ ହୋଇ ପଡ଼ିଥିଲେ । କାରଣ, କିଏ ତାଙ୍କ ପ୍ରସ୍ତାବ ସମର୍ଥନ କରିବେ କିଏ ବା ବିରୋଧ କରିବେ ତା ସେ ବୁଝି ପାରି ନ ଥିଲେ । ପଣ୍ଡିତ ମୋତିଲାଲ ପ୍ରଭୃତି କେତେ ଜଣ ଚାହିଁଥିଲେ ଯେ ପ୍ରସ୍ତାବରେ କେବଳ ପଞ୍ଜାବ ଓ ଖିଲାଫତ୍ର ଅନ୍ୟାୟ କଥା ନ ରହି ତା ସଙ୍ଗେ ସ୍ୱରାଜ୍ୟ କଥା ମଧ୍ୟ ଯୋଡ଼ି ଦିଆଯାଉ । "ଯଦି ଅସହ-ଯୋଗ କରିବାକୁ ହେବ ତେବେ ଗୋଟିଗୋଟିକିଆ ଅନ୍ୟାୟ ପାଇଁ କାହିଁକି କରିଯିବ ? ଆମର ସ୍ୱରାଜ୍ୟ ନାହିଁ ତାହାହିଁ ଆମଠାରେ ପ୍ରତି ସବୁଠାରୁ ବଡ଼ ଅନ୍ୟାୟ; ତାହାର ବିରୁଦ୍ଧରେ ଅସହଯୋ

କରିବାକୁ ହେବ ।" ସେମାନେ ଏହି ଯୁକ୍ତି ବାଢ଼ିଥିଲେ । ଗାନ୍ଧୀ ଯନ୍ଧରେ ଏ କଥା ମାନି ନେଇ ଥିଲେ । ଚିତ୍ତରଞ୍ଜନ, ଲାଲଜୀ ପ୍ରଭୃତି ବଡ଼ ବଡ଼ ନେତାମାନେ ଏ ପ୍ରସ୍ତାବ ବିରୁଦ୍ଧରେ ଥିଲେ । କିନ୍ତୁ କ'ଣ ହେଲା କେହି ବୁଝି ପାରିଲେ ନାହିଁ । ସତେ ଯେମିତି ଏ ନୂଆ ଲୋକଟିର ଇଙ୍ଗିତକୁ ହଜାର ହଜାର ଦେଶବାସୀ ଅନେଇଁ ବସିଥିଲେ । ସୁଅ ଆଗରେ ସବୁ ବିରୋଧ ଉଭେଇ ଯାଇଥିଲା । ଅସହଯୋଗ ପ୍ରସ୍ତାବ ବହୁମତରେ ଗୃହୀତ ହୋଇଥିଲା । ପଣ୍ଡିତ ମୋତିଲାଲ ପ୍ରଥମେ ଏହି ଆନ୍ଦୋଳନକୁ ଡେଇଁ ପଡ଼ିଥିଲେ । ଜଓ୍ୱାହରଲାଲ ଲେଖିଛନ୍ତି 'କଂଗ୍ରେସ ରାଜନୀତିରେ ଗାନ୍ଧୀ ଯୁଗ ଏହି କଲିକତା ବୈଠକରୁ ଆରମ୍ଭ ହୋଇଥିଲା । ସବୁଆଡ଼ୁ କଂଗ୍ରେସ ଦୃଷ୍ଟି ବଦଳି ଯାଇଥିଲା । ସାହେବୀ ପୋଷାକ କୁଆଡ଼େ ଉଭେଇ ଯାଇଥିଲା, ଖଦଡ଼ ପୋଷାକ ଆଖିରେ ପଡ଼ିବାକୁ ଲାଗିଥିଲା । ନୂଆ ପ୍ରକାର ପ୍ରତିନିଧି ଆସିଲେ । ନିମ୍ନତମ ମଧ୍ୟବିତ୍ତ ଶ୍ରେଣୀରୁ ବେଶୀ କଂଗ୍ରେସ ଲୋକେ ବାହାରିଲେ । ଭାଷା ଅଧିକ ହିନ୍ଦି କିମ୍ବା ପ୍ରଦେଶର ଭାଷା ଚାଲିଲା । କାରଣ, ପ୍ରତିନିଧିମାନେ ଇଂରାଜୀ ବୁଝୁ ନ ଥିଲେ । ଏହି ନୂଆଭାବ ନୂଆ ଉତ୍ସାହ କଂଗ୍ରେସ ବୈଠକରେ ଦେଖାଯାଇଥିଲା ।"

କଲିକତା ବିଶେଷ କଂଗ୍ରେସ ବୈଠକରେ ଯେ ପ୍ରସ୍ତାବ ମଞ୍ଜୁର ହୋଇଥିଲା ତାହା ନାଗପୁରର ସାଧାରଣ ବୈଠକରେ ପୁଣି ମଞ୍ଜୁର ହେବାର କଥା । ନାଗପୁରକୁ ମଧ୍ୟ ବହୁତ ପ୍ରତିନିଧି ଯାଇଥିଲେ । ଚଉଦ ହଜାର ଉପରେ ପ୍ରତିନିଧି ଯୋଗ ଦେଇଥିଲେ । ସେତେ-ବେଳେ କଂଗ୍ରେସର ପ୍ରତିନିଧି ସଂଖ୍ୟାର ସୀମା କିଛି ନ ଥାଏ । ମୁସଲମାନ ପ୍ରତିନିଧି ହଜାରକ ଉପରେ ଯାଇଥାନ୍ତି, ଶହକ ଉପରେ ସ୍ତ୍ରୀ ଲୋକ ଯୋଗ ଦେଇଥିଲେ । ସ୍ୱର୍ଗୀୟ ଚିତ୍ତରଞ୍ଜନ କେତେ ହଜାର ଟଙ୍କା ଖର୍ଚ୍ଚ କରି କେବଳ ବଙ୍ଗଳାରୁ ବହୁ ସଂଖ୍ୟକ ପ୍ରତିନିଧି ନେଇ

ଥାଇଥିଲେ । ଗାନ୍ଧୀ ଏ ସୁଅ ବିରୁଦ୍ଧରେ ଠିଆ ହେବାପାଇଁ ଅନେକ ଚଳନା କଳନା କରି ଯାଇଥିଲେ, କିନ୍ତୁ ସେଠି ଚିତ୍ତରଞ୍ଜନ ଓ ଲାଲାଜୀ ଉଭୟ ଏ ଲୋକ ଜାଗରଣର ପ୍ରଭାବରେ ବଦଳି ଯାଇଥିଲେ । ସାମାନ୍ୟ ଛୋଟିଆ ସଂଶୋଧନ ସହିତ ସେହି ଅସହଯୋଗ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ସେ ପ୍ରସ୍ତାବର ମର୍ମ ମୋଟାମୋଟି ଏଇଆ ଥିଲା :—

—"ପଞ୍ଜାବ ଅତ୍ୟାଚାର ଓ ଖିଲାଫତ ଅନ୍ୟାୟରେ ପ୍ରତିକାର କରିବାରେ ଓ ସ୍ୱରାଜ୍ୟ କ୍ଷମତା ଛାଡ଼ିଦେବାରେ ଡେରି କରୁଥିବାରୁ ସରକାରଙ୍କ କଥା ଉପରେ ଆଉ ବିଶ୍ୱାସ କରିବା ସମ୍ଭବ ନୁହଁ ଏବଂ ଏ ସବୁର ପ୍ରତିକାର ପାଇଁ ସରକାରଙ୍କ ସଙ୍ଗେ ଅଳ୍ପରୁ ଆରମ୍ଭ କରି ଏପରି ଗୁରୁତର ଭାବେ ଅସହଯୋଗ କରାଯାଉ, ଯାହା ଫଳରେ ସରକାର ବାଧ୍ୟ ହୋଇ ଦେଶର ଦାବୀ ପୂରଣ କରିବେ । ଦେଖାଯାଉଛି ଯେ ମଧ୍ୟବିତ୍ତ ଶ୍ରେଣୀର ତଥା ପାଠୁଆ ଓ ଧନୀ ଶ୍ରେଣୀର ଲୋକେ ସରକାରଙ୍କ ସଙ୍ଗେ ନାନା ପ୍ରକାରେ ସହଯୋଗ କରି ସରକାରଙ୍କ ବଳ ଓ ପ୍ରତିଷ୍ଠା ବଢ଼େଇ ଦେଉଛନ୍ତି । ତେଣୁ ସେହି ଶ୍ରେଣୀମାନେ ଆଗ ନିମ୍ନଲିଖିତ କ୍ଷେତ୍ରରେ ଅସହଯୋଗ କରନ୍ତୁ ;— ଏକ, ସରକାରୀ ପଦବୀ, ଖେତାବ ଓ ଅବୈତନିକ ସରକାରୀ ଚାକିରି; ଦୁଇ, ସରକାରୀ ଦରବାର, ଭୋଜି ପ୍ରଭୃତି; ତିନି, ସ୍କୁଲ କଲେଜର ଶିକ୍ଷା ( ଜାତୀୟ ଶିକ୍ଷା ଦେବାପାଇଁ ଜାତୀୟ ବିଦ୍ୟାଳୟମାନ ଖୋଲାଯାଉ ); ଚାରି, କଚେରୀ ଅଦାଲତ ( ଜାତୀୟ ପଞ୍ଚାୟତ ଗଢ଼ାଯାଉ ); ପାଞ୍ଚ, ଯେଉଁ ସୈନ୍ୟମାନେ ମେସୋପଟେମିଆରେ ମୁସଲମାନ ଜାତି ବିରୁଦ୍ଧରେ ଲଢ଼ୁଛନ୍ତି, ସେମାନେ ଲଢ଼ିବାକୁ ମନା କରି ଦିଅନ୍ତୁ; ଛଅ, ଲାଟସଭାର ପ୍ରାର୍ଥୀ କେହି ଠିଆ ନ ହୁଅନ୍ତୁ ଓ ଭୋଟ ନ ଦିଅନ୍ତୁ,

ସାଡ, ବିଦେଶୀ ଜିନିଷ ବର୍ଜନ କରନ୍ତୁ;" ଏହା ସଙ୍ଗେ ସଙ୍ଗେ ତଳ ଲିଖିତ ବିଷୟ ପ୍ରତି ବିଶେଷ ଜୋର ଦିଆଯାଇଥିଲା ।

—"ଅସହଯୋଗର ବାଟ ଏକ ସଂଯମର ବାଟ, ତ୍ୟାଗର ବାଟ । ସଂଯମ ଓ ସ୍ୱାର୍ଥତ୍ୟାଗ ବିନା କୌଣସି ଜାତି ଉନ୍ନତି କରି ପାରିବ ନାହିଁ । ପୁଣି ଅସହଯୋଗର ପ୍ରଥମ ପାହାଚରେ ଦେଶର ପ୍ରତ୍ୟେକ ପୁରୁଷ ସ୍ତ୍ରୀ ବା ପିଲାକୁ ତ୍ୟାଗ ଓ ସଂଯମର ସୁବିଧା ଦେବା ଉଚିତ; ତେଣୁ ସମସ୍ତେ ଆପଣା ବସ୍ତ୍ର ବିଷୟରେ ସ୍ୱଦେଶୀ ପାଳନ୍ତୁ ଏବଂ ସୂତାର ଅଭାବ ଦୂର କରିବା ପାଇଁ ଘରେ ଘରେ ଅରଟରେ ସୂତା କାଟନ୍ତୁ ଏବଂ ତନ୍ତୀଙ୍କ ଦ୍ୱାରା ହାତବୁଣା ଖଦାର ପ୍ରସାର କରନ୍ତୁ ।"

ଏହି ବୈଠକରେ କଂଗ୍ରେସର ବିଧି ବିଧାନ ବଦଳାଇବା ପ୍ରସ୍ତାବ ପଡ଼ିଥିଲା । ସେଥିପାଇଁ ଖୁବ୍ ଯୁକ୍ତି ତର୍କ ହୋଇଥିଲା । ଗାନ୍ଧୀ କଂଗ୍ରେସକୁ ଜନ ସାଧାରଣଙ୍କର ଗୋଟିଏ ସଜୀବ ଅନୁଷ୍ଠାନ କରିବାକୁ ଚାହୁଁଥିଲେ । ସେତେବେଳକାର କଂଗ୍ରେସ ତାଙ୍କ ମନକୁ ପାଉ ନ ଥିଲା ବୋଲି ସେ ଭାରତରେ ଗୋଡ଼ ଦେଇ ଦେଇ କହି ପକାଇଥିଲେ । ଅମୃତସର କଂଗ୍ରେସରେ ବିଧି ବିଧାନରେ ଅନେକଗୁଡ଼ିଏ ଅଦଳବଦଳ ହୋଇଥିଲା । ପ୍ରଥମରେ, ସେତେବେଳ-ଯାଏ କଂଗ୍ରେସର ସଫା ସଫା କୌଣସି ଉଦ୍ଦେଶ୍ୟ ନ ଥିଲା । ଗାନ୍ଧୀଙ୍କ ଜିଦରେ ଥିଲା, ଭାରତରେ ସ୍ୱରାଜ୍ୟ ପ୍ରତିଷ୍ଠା କଂଗ୍ରେସର ଉଦ୍ଦେଶ୍ୟ— ସେ ସ୍ୱରାଜ୍ୟ ବ୍ରିଟିଶ ସାମ୍ରାଜ୍ୟ ଭିତରେ ହେଉ ବା ସାମ୍ରାଜ୍ୟ ବାହାରେ ହେଉ । ଏଥିରେ ପୁରୁଣା ମତର ଲୋକଙ୍କର ଆପତ୍ତି ଉଠିଥିଲା । ଏ ଦଳର ମୁଖିଆ ଥିଲେ ମାଲବ୍ୟଜୀ ଓ ଜିନା ସାହେବ । ସେମାନେ ବ୍ରିଟିଶ ସାମ୍ରାଜ୍ୟ ଭିତରେ କେବଳ ସ୍ୱରାଜ୍ୟ ହେଉ ବୋଲି ଚାହୁଁଥିଲେ । କିନ୍ତୁ ତାଙ୍କ କଥା ରହିଲା ନାହିଁ । ଗାନ୍ଧୀଙ୍କ ଜିଦ୍ ମଞ୍ଜୁର ହେଲା ।

ଦ୍ୱିତୀୟରେ ଗାନ୍ଧୀ ଧରି ବସିଲେ ଯେ ସ୍ୱରାଜ୍ୟ ପାଇବା ପାଇଁ ଯେ ଉଦ୍ୟମ ହେବ ତାହା ନ୍ୟାୟଯୁକ୍ତ ଓ ଶାନ୍ତିପୂର୍ଣ୍ଣ ଉପାୟରେ ହେବ । ଗାନ୍ଧୀଙ୍କର ମତ ଥିଲା ସବୁ କାମରେ ଉପାୟ ଓ ଉଦ୍ଦେଶ୍ୟର ଘନିଷ୍ଠ ସମ୍ବନ୍ଧ ଅଛି । ଭଲ ଉପାୟ ହୋଇଥିଲେ ଭଲ ଉଦ୍ଦେଶ୍ୟ ସାଧିତ ହେବ, ଖରାପ ଉପାୟରେ ଭଲ ଜିନିଷ ମିଳିବ ନାହିଁ ।

ତୃତୀୟରେ କଂଗ୍ରେସ ପ୍ରତିନିଧି ସଂଖ୍ୟା ସୀମାବଦ୍ଧ କରାଯାଇ ଥିଲା । ମୋଟ ସଂଖ୍ୟା ଛଅ ହଜାର ରଖା ଯାଇଥିଲା ।

ଚତୁର୍ଥରେ ଗୋଟିଏ କାର୍ଯ୍ୟକାରୀ ସମିତି ଗଢ଼ା ହେଲା । ସେମାନେ ଦୈନିକ କଂଗ୍ରେସ କାମ ଚଳାଉଥିବେ ଏବଂ ଦରକାର ପଡ଼ିଲେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ଡକାଇବେ ।

ଗାନ୍ଧୀଙ୍କ ମତରେ "ଏହି ନୂଆ ବିଧାନକୁ ଲୋକେ ଯଦି ବୁଦ୍ଧିର ସହିତ, ଆଗ୍ରହର ସହିତ ଓ ସାଧୁତାର ସହିତ କାର୍ଯ୍ୟରେ ପରିଣତ କରିଥାନ୍ତେ, ଏହା ଜନସାଧାରଣଙ୍କର ଶିକ୍ଷାର ଏକ ଶକ୍ତିଶାଳୀ ସାଧନ ହୋଇଥାନ୍ତା ଏବଂ ଏହାକୁ କାର୍ଯ୍ୟରେ ପାଳିବା ଦ୍ୱାରା ହିଁ ସ୍ୱରାଜ୍ୟ ଲାଭ ହୋଇଥାନ୍ତା ।"

( ୩୫ )

୧୯୨୦ ଶେଷ ଆଡ଼କୁ ୟଂ ଇଣ୍ଡିଆ କାଗଜରେ ଲେଖିଥିଲେ "ସୁଦୂର ଭବିଷ୍ୟତରେ କଣ ଅଛି ମୁଁ ତାହା ଖୋଜି ବୁଲୁନାହିଁ, ପାଦେ ମୋ ପାଇଁ ଯଥେଷ୍ଟ । ଏ ଆନ୍ଦୋଳନ ମୁଖ୍ୟଭାବରେ ଏକ ଧାର୍ମିକ ଆନ୍ଦୋଳନ । ପ୍ରତ୍ୟେକ ଲୋକ ଯେ ଭଗବାନଙ୍କୁ ମାନେ ସେ ଆପଣାକୁ ପାପରୁ ଦୂରରେ ରଖିବ, ତେଣୁ ପରିଣାମ କଥା ନ ଭାବି ସେ ପାପକୁ ଛାଡ଼ିବ । ଭଲ କାମ ଦ୍ୱାରା ଭଲ ଫଳ ଫଳିବ ଏ ବିଶ୍ୱାସ ତାହାର ଥିବା ଆବଶ୍ୟକ ଏବଂ ମୋ ମତରେ ଏହାହିଁ

ଗୀତାର ଅନାସକ୍ତକର୍ମ । ଭବିଷ୍ୟତକୁ ଭରିବା ପାଇଁ ଭଗବାନ ମଣିଷକୁ ଏତେ ଶକ୍ତି ଦେଇ ନାହାନ୍ତି । ଜୀବନ ଉପରେ ବାନ୍ଧି ପଡ଼ିଲେ ବୁଢ଼ା ମଣିଷ ହୁଏ ପଛେ ପଛେ ଘୂରୁଥିବ । ସେ ଜାଣେ ଭଗବାନଙ୍କ ବାଟରେ ମରିବାଟା, ସଇତାନ୍ ବାଟରେ ବଞ୍ଚି ରହିବାଠାରୁ ଢେର ଭଲ । ଅତଏବ ଏ ସରକାର ସଇତାନ କାମର ପ୍ରତିନିଧି ବୋଲି ଯେ ବିଶ୍ୱାସ କରିବ ତାହାର ସରକାର ସଙ୍ଗେ ଅସହ-ଯୋଗ କରିବା ଛଡ଼ା ଅନ୍ୟ ଗତି ନାହିଁ ।"

ଜବାହରଲାଲ ଲେଖିଛନ୍ତି "ଗାନ୍ଧୀଜୀ ଆନ୍ଦୋଳନର ଆଧ୍ୟାତ୍ମିକ ଓ ଧାର୍ମିକ ଦିଗ ଉପରେ ସବୁବେଳେ ଜୋର୍ ଦେଉଥିଲେ । କଂଗ୍ରେସର ନେତା ଓ କର୍ମୀମାନେ ତାହା ହୃଦୟର ସହିତ ଗ୍ରହଣ ନ କଲେ ମଧ୍ୟ ସେହି ହିସାବରେ ଅନୁକରଣ କରୁଥିଲେ । କିନ୍ତୁ ଜନ ସାଧାରଣଙ୍କ ହୃଦୟରେ ପ୍ରବେଶ କରିବାର ଗାନ୍ଧୀଜୀଙ୍କର ଏକ ଅଦ୍ଭୁତ ଶକ୍ତି ଥିଲା ।" କିନ୍ତୁ ମାଟ୍ରେଥ ଲେଖକଙ୍କ ମତ ଲକ୍ଷ୍ୟ କରି ଓ ନିଜ ଭିତରର ଭାବ ଅନୁସନ୍ଧାନ କରି ଜବାହରଲାଲ କହିଛନ୍ତି, "ଗାନ୍ଧୀଜୀଙ୍କ ପଛରେ କୌଣସି ଲକ୍ଷ୍ୟ ଥିଲା, ଗୋଟାଏ ଆଦର୍ଶ ଥିଲା ବୋଲି ଆମେ ଭୁଲି ଯାଉଥିଲୁ; ଆଉ, ସେ ସବୁ କିଛି ଦେଖା ଯାଉ ନ ଥିଲା । ତ୍ରିଲଟା ନୂତନ ସଭ୍ୟତା ଏବଂ ଯନ୍ତ୍ର ବିରୁଦ୍ଧରେ ଗାନ୍ଧୀଙ୍କ ମତକୁ ଆମେ ଗ୍ରହଣ କରି ନ ଥିଲୁ—କେବଳ ଜାଗରଣଟାକୁ ମାନି ନେଇଥିଲୁ । ସ୍ୱରାଜ୍ୟ କଥାଟାକୁ ଭିନ୍ନ ଅର୍ଥରେ ବୁଝୁଥିଲୁ ।"

୧୯୨୦ ଶେଷ ଆଡ଼କୁ ନରମଦଳୀୟ ନେତାମାନେ କଂଗ୍ରେସରୁ ଏକଦମ୍ ଅଲଗା ହୋଇ ଯାଇଥିଲେ । ରାଜନୀତି ସଙ୍ଗେ ଧର୍ମକୁ ମିଶାଇବା, ସରକାର ସଙ୍ଗେ ଖୋଲାଖୋଲି ଲଢ଼େଇ ଏବଂ ସାଧାରଣ ଲୋକଙ୍କ ପାଇଁ କଂଗ୍ରେସର କବାଟ ଫିଟେଇ ଦେବା, ଏ ସବୁ ସେ ନେତାମାନଙ୍କୁ ଅତିଷ୍ଠ କରି ପକାଇଥିଲା ।

ଗାନ୍ଧୀ ଇଂରାଜୀ ପାଠ ବର୍ଜ୍ଜନରେ ଖୁବ୍ ଜୋର୍ ପ୍ରଚାର କରୁଥାନ୍ତି । ସ୍କୁଲ, କଲେଜରୁ ଛାତ୍ରମାନେ ବହୁ ସଂଖ୍ୟାରେ ଛାଡ଼ ଆସୁଥାନ୍ତି । ସ୍ଥାନେ ସ୍ଥାନେ ଜାତୀୟ ଶିକ୍ଷାନୁଷ୍ଠାନ ଗଢ଼ି ଉଠୁଥାଏ । ଥରେ ଗାନ୍ଧୀ ଲେଖିଛନ୍ତି, "ଆମ ଭାରତବର୍ଷରେ ଆମକୁ ଅନେକ କୁସଂସ୍କାର ଘେରି ରହିଛନ୍ତି । ସ୍ୱାଧୀନତାର ଭାବ ଜନ୍ମେଇବା ପାଇଁ ଏବଂ ସ୍ୱଚ୍ଛ ଚିନ୍ତା କରିବାର ଶକ୍ତି ଆସିବା ପାଇଁ ଇଂରାଜୀ ଭାଷା ଲୋଡ଼ା, ଏ ଧାରଣା ସବୁଠାରୁ ବଡ଼ କୁସଂସ୍କାର । ଗତ କେତେ ବର୍ଷ ହେଲା କେବଳ ସେହି ଶିକ୍ଷା ପଦ୍ଧତି ଚଳି ଆସୁଅଛି ଏବଂ ଆମ ଉପରେ ସେହି ଗୋଟିକ ଭାଷା ଖୁବ୍ ଜୋର କରି ଲଦି ଦିଆ ହୋଇଛି । ଅତଏବ ଏ ଶିକ୍ଷା ନ ପାଇଥିଲେ ଆମର କ'ଣ କ୍ଷତି ହୋଇଥାନ୍ତା ତାହା ଜାଣିବାର ଉପାୟ ନାହିଁ । ବରଂ ଆମେ ଏତିକି ଦେଖୁଛୁ ଭାରତବର୍ଷ ପୂର୍ବଠାରୁ ଅଧିକ ଦରିଦ୍ର ହୋଇଛି, ଆତ୍ମରକ୍ଷା କରିବାର ବଳ କମି ଯାଇଛି ଏବଂ ଭାରତସନ୍ତାନଙ୍କର ଜୀବନୀ ଶକ୍ତି ମଧ୍ୟ କମି ଯାଇଛି । ଏହା ଯେ ଶାସନ ଦୋଷରୁ ଘଟିଛି ତାହା କହିବା ବାହୁଲ୍ୟ ଏବଂ ଏ ଶାସନର ସବୁଠାରୁ ଖରାପ ଜିନିଷ ହେଉଛି ତାର ଶିକ୍ଷା ପ୍ରଣାଳୀ ।" ଆଉ ଜାଗାଏ ଗାନ୍ଧୀ କହୁଛନ୍ତି "ବର୍ତ୍ତମାନ ଅବସ୍ଥା ଦେଖୁଛୁ, ଆମେ ନିଜକୁ ହୀନ ମଣୁଛୁ, କିନ୍ତୁ ଯେ ପର୍ଯ୍ୟନ୍ତ ନିଜକୁ ଆମେ ସମାନ ନ ଭାବୁଛୁ, ବିଦେଶୀ ଶାସନ ଯାଇ ଯେତେ-ବେଳଯାଏ ସ୍ୱରାଜ ନ ହୋଇଛି, ଆମର ଦାରିଦ୍ର୍ୟ ଭାବ ବଦଳିଲେ ଆମେ ଯେ ପର୍ଯ୍ୟନ୍ତ ଆତ୍ମନିର୍ଭରଶୀଳ ନ ହୋଇଛୁ, ଆମର ଛାତ୍ରମାନେ ଇଂରାଜୀ ପଢ଼ିବା ବନ୍ଦ କରନ୍ତୁ ।............ଆଜି ଇଂରାଜୀ ଭାଷା ଆମ ହୃଦୟରେ ସବୁଠାରୁ ପ୍ରିୟସ୍ଥାନ ଅନ୍ୟାୟ ଭାବରେ ଦଖଲ କରି ବସିଛି; ଆମ ମାତୃଭାଷା ଗୁଡ଼ିକୁ ସେମାନଙ୍କର ନ୍ୟାଯ୍ୟ ଆସନରୁ ତଡ଼ି ଦେଇଛି । ଆଜି ଇଂରାଜଙ୍କ ସଙ୍ଗେ ଆମର

କ୍ଷମତା ନାହିଁ, ଫଳରେ ଇଂରାଜୀ ଭାଷା ଏକ ଅସ୍ୱାଭାବିକ ସ୍ଥାନ ଦଖଲ କରିଛି । ଇଂରେଜୀ ଜ୍ଞାନ ନ ପାଇ ଯୁବା ଭାରତୀୟ ମନର ଚରମ କ୍ଷତି ହେବା କଥା । ଅଜି ଆମର ଯୁବ ଓ ଝିଅଙ୍କୁ ଶିକ୍ଷା ଦିଆ ଯାଉଛି ଯେ ଇଂରାଜୀ ନ ଜାଣିଲେ ସବୁଠାରୁ ଭଲ ସମାଜରେ ସେମାନଙ୍କୁ ସ୍ଥାନ ମିଳିବ ନାହିଁ—ଫଳରେ ଆମର ଦେଶର ପୁରୁଷ ଜାତି ପ୍ରତି, ନାରୀ ଜାତି ପ୍ରତି ହିଂସା କରା ଯାଉଛି । ଏପରି ଧାରଣା ଏତେ ଅପମାନଜନକ ଯେ ତାହା ଅସହ୍ୟ ହେଉଛି । ଇଂରେଜୀ ଭାଷା ପ୍ରତି ଯେଉଁ ଅଯଥା ପ୍ରୀତି ଅଛି ସେଥିରୁ ମୁକ୍ତ ହେବା ସ୍ୱରାଜର ଗୋଟିଏ କଥା ।"

କଚେରୀ ବର୍ଜନ ଆନ୍ଦୋଳନ ମଧ୍ୟ ତାଂ ଗାମ୍ଭୀଳରେ ନୂଆ ପ୍ରଚାର ପାଇଥିଲା । କଚେରୀ ଗୁଡ଼ିକର ପ୍ରତିଷ୍ଠା କମି ଯାଇଥିଲା । ଅନେକ ଓକିଲ ଦୈବଯୋଗ୍ୟ ସ୍ୱାଡ଼ ଦେଶ କାମରେ ଲାଗିଥିଲେ । ସ୍ୱର୍ଗୀୟ ଯମୁନା ଲାଲ ବେଜାଜ ଏହିପରି ଓକିଲମାନଙ୍କୁ ସାହାଯ୍ୟ କରିବା ପାଇଁ ଏକ ଲକ୍ଷ ଟଙ୍କା ଗୃଧା ତଳକ ସ୍ୱରାଜ ପାଣ୍ଠିକୁ ଦେଇଥିଲେ । ଯମୁନା ଲାଲ ନାଗପୁର କଂଗ୍ରେସର ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ସେ କଂଗ୍ରେସର ଅସହଯୋଗ ନିର୍ଦ୍ଦେଶ ମାନି ନିଜର ରାଏ ବାହାଦୂର ପଦ ଛାଡ଼ି ଦେଇଥିଲେ ।

ଗାନ୍ଧୀ ଭାରତରେ ଗୋଡ଼ ଦେଲା ପରଠାରୁ ଦେଶରେ ସ୍ୱଦେଶୀ କାର୍ଯ୍ୟ ପ୍ରଚାର ଆରମ୍ଭ କରିଥିଲେ । ଛଅ ବର୍ଷ ମଧ୍ୟରେ ସ୍ୱଦେଶୀର ରୂପ ବଦଳି ପ୍ରଚାର ତା ସୂତାକଟା ପ୍ରଚାରରେ ପରିଣତ ହୋଇଥିଲା । ସ୍ୱଦେଶୀ ପ୍ରଚାରର ଏହିପରି ରୂପ ସମ୍ବନ୍ଧରେ ଗାନ୍ଧୀ ଲେଖିଛନ୍ତି, "ଏପରି ସ୍ୱଦେଶୀ ପ୍ରଚାର ଅସହଯୋଗ କାର୍ଯ୍ୟକ୍ରମର ଅଙ୍ଗ ଥିଲା ଓ ଅଛି । ଏହା ହେଉଛି ଅସହଯୋଗ କାର୍ଯ୍ୟକ୍ରମର ସବୁଠାରୁ ବଡ଼, ସବୁଠାରୁ ନିରାପଦ ଓ ସବୁଠାରୁ ଅବ୍ୟର୍ଥ କାମ । ଭାରତର ମଙ୍ଗଳ

ବୁଝିବାକୁ ଦେଶର ଏତକ ସମୟ ଲୋଡ଼ା ଥିଲା । ଦେଶକୁ ତାହାର ପୁରୁଣା କୁସଂସ୍କାର ଛାଡ଼ିବାକୁ ସମୟ ଦରକାର ଥିଲା । ପୂର୍ବେ ଲୋକେ ଯେ କେବଳ ଇଂରେଜୀ ଜିନିଷ ବା ବିଦେଶୀ ବର୍ଜନ ଜିନିଷରେ ମାତ୍ର ଥିଲେ ତାହାର ବ୍ୟର୍ଥତା ବୁଝି ପାରୁଥିଲେ । ସ୍ୱଦେଶୀ ବସ୍ତ୍ର ଛାଡ଼ି ସ୍ୱାଧୀନତା ଯାଇଛି ଏବଂ ପୁଣି ହାତକଟା ହାତବୁଣା ଲୁଗା ଧଇଲେ ସ୍ୱାଧୀନତା ଫେରି ପାଇବେ, ଏତକ ବୁଝିବା ସମୟ ସାପେକ୍ଷ ଥିଲା । କେବଳ ଯେ ସରକାରଙ୍କ ଯୁଦ୍ଧ ବିଭାଗ ଖର୍ଚ୍ଚ ପାଇଁ ଭାରତର ସାର ସବୁ ବୋହି ଯାଉଥିଲା ତାହା ନୁହଁ, ଏହି ଗୃହଧନ୍ଦା ବୁଡ଼ଯାଇ ଭାରତ ନିଃସ୍ୱ ନିର୍ଜୀବ ହୋଇ ପଡ଼ିଛି ଏବଂ ଭାରତରେ ଦୁର୍ଭିକ୍ଷ ଘର କରି ଯାଇଛି, ଦେଶ ଏବେ ଏତେକ ବୁଝି ପାରୁଥିଲା । ପୁଣି ପ୍ରତି ପ୍ରଦେଶରେ ଅନ୍ତରରେ ବିଶ୍ୱାସ ଥିବା ଲୋକ ଲୋଡ଼ା ଥିଲେ, ସେ ଭଳି ଲୋକ ମଧ୍ୟ ବାହାରିଲେ । ଉପରନ୍ତୁ ଲୋକେ ବି ଖଦଡ଼ର ସୌନ୍ଦର୍ଯ୍ୟ ବୁଝିଲେ ଓ ଖଦଡ଼ର ବ୍ୟବହାର ରୁଚିକର ହେଲା । ଏହା ସବୁ ହେଲାରୁ ଖଦୀ ତାହାର ଉପଯୁକ୍ତ ସ୍ଥାନ ଦଖଲ କରିଛି ।”

ସବୁଠାରୁ ସଫଳ ହୋଇଥିଲା ଲାଟ ସଭା ବର୍ଜନ ଓ ଭୋଟ ନ ଦେବା କଥା । କଂଗ୍ରେସ ଲୋକେ ଲାଟ ସଭାକୁ ପ୍ରାର୍ଥୀ ହେଲେ ନାହିଁ, ଗାଁ ଗହଳରେ ଲୋକେ ମଧ୍ୟ ଭୋଟ ଦେବାକୁ ଗଲେ ନାହିଁ !

## ( ୩୬ )

୧୯୨୧ ମାର୍ଚ୍ଚ ମାସ ଶେଷକୁ ବେଜଓ୍ୱାଡ଼ାଠାରେ ନିଖିଳ ଭାରତ କଂଗ୍ରେସ କମିଟି ବସିଥିଲା । ସେଥିରେ ଯୋଗ ଦେବାକୁ ଗଲାବେଳେ ଗାନ୍ଧୀ ଓଡ଼ିଶା ଗସ୍ତ କରି ଯାଇଥିଲେ । ତାହା ତାଙ୍କର ପ୍ରଥମ ଓଡ଼ିଶା ଗସ୍ତ ଥିଲା । ସେହି ଗସ୍ତରେ ଭଦ୍ରକ, ପୁରୀ, କଟକ ଓ

ସାକ୍ଷୀଗୋପାଳ, ବ୍ରହ୍ମପୁରଠାରେ ସଭା କରି ଅସହଯୋଗର ବାର୍ତ୍ତା ପ୍ରଚାର କରି ଯାଇଥିଲେ ।

ବମ୍ବେଠାରେ ଯେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ହୋଇଥିଲା, ସେଥିରେ ବିଦେଶୀ ଲୁଗା ଛାଡ଼ିବା ପାଇଁ ଏକ ପ୍ରସ୍ତାବ ଗୃହୀତ ହୁଏ । ବର୍ଷ ନ ସରୁଣୁ ସମସ୍ତ ବିଦେଶୀ ଲୁଗା ଛାଡ଼ି ଦେଇ ଖଦଡ଼ ପିନ୍ଧିବା ପାଇଁ ଲୋକଙ୍କୁ କୁହାଯାଇଥିଲା । ଏହି ସମୟରେ ବିଦେଶୀ ଲୁଗା ପୋଡ଼ିବା ଉପରେ ଗାନ୍ଧୀ ଖୁବ୍ ଜୋର୍ ଦେଉଥିଲେ । ବିଦେଶୀ ଲୁଗା ପୋଡ଼ାରେ ଖୁବ୍ ଚହଳ ପଡ଼ି ଯାଇଥିଲା । ଆଣ୍ଡ୍ରୁଜ ସାହେବଙ୍କ ଭଳି ଗାନ୍ଧୀଙ୍କର କେତେକ ନିକଟ ବନ୍ଧୁ ଲୁଗାପୋଡ଼ା ଅହିଂସା ସଙ୍ଗେ ଖାପ୍ ଖାଉନାହିଁ ବୋଲି ଆପତ୍ତି ଉଠାନ୍ତି । ସେମାନଙ୍କର ଯୁକ୍ତି ଖଣ୍ଡନ କରି ସେପ୍ଟେମ୍ବର ମାସ ଅନ୍ତରେ ଗାନ୍ଧୀ ଏକ ଲେଖାରେ ଲେଖିଥିଲେ, "ଯଦି ସବୁ ପ୍ରକାର ବିଦେଶୀ ଜିନିଷ ବର୍ଜନ କରିବାର କଥା ଥାନ୍ତା ତେବେ ଅବା ସେଥିରେ ଜାତି ବିଦ୍ୱେଷର ସମ୍ଭାବନା ଥାନ୍ତା । ତା'ହେଲେ କଥାଟା ଖରାପ ହୋଇଥାନ୍ତା କିନ୍ତୁ ଆମେତ କେବଳ ବିଦେଶୀ ଲୁଗା ଉପରେ ଜୋର ଦେଉଛୁଁ । ଏତକ କଟକଣା ଯୋଗୁଁ କଥାଟା ଏକଦମ୍ ସ୍ୱତନ୍ତ୍ର ହୋଇ ଯାଉଛି । ମୁଁ ତ ଗୁହୁଁନାହିଁ ଯେ ଇଂଲଣ୍ଡରୁ ଯେଉଁ ଘଣ୍ଟା ଆସୁଛି ବା ଜାପାନରୁ ଯେଉଁ ଛୁରୀ କାମ ଆସୁଛି ତାହା ବନ୍ଦ କରାଯାଉ । କିନ୍ତୁ ଇଂରାଜ ସାମ୍ରାଜ୍ୟର ଭଲ ଭଲ ମଦ ଯେତେ ଯତ୍ନରେ ତିଆରି ହୋଇ ଆସୁ ପଛକେ, ସେ ସବୁକୁ ମୁଁ ଧ୍ୱଂସ କରିଦେବି । ସୟତାନ୍‌ର ଜାଲ ବଡ଼ ମିଞ୍ଜିରେ ବିଛା ହୋଇଥାଏ । ଯେତେବେଳେ ସତ ଓ ମିଛ ବା ଭୁଲ ଓ ଠିକ୍‌ର ସୀମା ସରହଦ୍ ଏତେ ସ୍ପଷ୍ଟ ହୋଇଯାଏ ଯେ ତାହା ବାରି ହୁଏ ନାହିଁ, ସେତେବେଳେ ସୟତାନ୍‌ର ଜାଲରେ ପଡ଼ିଯିବ ଲୋଭ ସବୁଠାରୁ ବେଶୀ ହୋଇଥାଏ । କିନ୍ତୁ ଆଜ ସେ ସୀମ

ସରହଦ୍ ଠିକ୍ ଅଛି, ମଜବୁତ୍ ଅଛି । ତେଣୁ ତାକୁ ଠିକଏ ଡେଇଁଲେ ମୃତ୍ୟୁ ସୁନିଶ୍ଚିତ ।

"ଆଜ ଭାରତବର୍ଷର ଅନ୍ତରରେ ଜାତି ଦ୍ୱେଷ ଦୂର ହେଉଛି । ଲୋକଙ୍କର କୁପ୍ରବୃତ୍ତିକୁ ଅମୃତରେ ରଖିବା ପାଇଁ ମତେ ଯାବତ୍ପର୍ଯ୍ୟନ୍ତ ଚେଷ୍ଟା କରିବାକୁ ପଡୁଛି । ସାଧାରଣ ଲୋକେ ଦୁର୍ବଳ ତେଣୁ ତାଙ୍କ ମନରେ ଦ୍ୱେଷ ଦୂର ରହୁଥାଏ ଅଥଚ ଆପଣାର ଦୁର୍ବଳତା ଦୂର କରିବାର ବାଟ ସେ ଜାଣନ୍ତି ନାହିଁ । ମୁଁ ବସ୍ତ୍ର ବର୍ଜନଦ୍ୱାରା ସେହି ଦ୍ୱେଷକୁ ମଣିଷ ଉପରୁ ନେଇ ଜିନିଷ ଉପରେ ପକେଇ ଦେଉଛି ।

"ବିଦେଶୀ ଲୁଗା ପଛେ ପଛେ ବିଦେଶୀ ଶାସନ ଓ ଦାରିଦ୍ର୍ୟ ଆସିଛନ୍ତି ଏବଂ ସବୁଠାରୁ ଲଜ୍ଜାର କଥା ହେଉଛି ଯେ ଏହି ପରିବାରରେ ବ୍ୟଭିଚାର ଓ ସତୀତ୍ୱ ହାନି ଘଟୁଛି । ପାଠକ ହୁଏତ ଜାଣି ନ ଥିବେ, ଯେ ବେଶୀ ଦିନର କଥା ନୁହେଁ, କାଠିଆୱାଡ଼ ପ୍ରଦେଶର ଶହ ଶହ ଅସ୍ପୃଶ୍ୟ ତନ୍ତୀଙ୍କ ପେଷା ବୁଡ଼ିଯିବାରୁ ସେମାନେ ବମ୍ବେ ଯାଇ ମେହେନ୍ତରର କାମ କରୁଛନ୍ତି । ସେଠି ଏମାନଙ୍କ ଜୀବନ ଏଡ଼େ କଷ୍ଟକର ହେଉଛି ଯେ ସେମାନେ ଆପଣାର ପିଲାଛୁଆଙ୍କୁ ହରେଇ ବସୁଛନ୍ତି ଏବଂ ଆପଣାର ସ୍ୱାସ୍ଥ୍ୟ ଓ ଚରିତ୍ର ନଷ୍ଟ କରୁଛନ୍ତି । କେତେକ ତ ନିଃସହାୟ ହୋଇ ଆପଣାର ସ୍ତ୍ରୀ କନ୍ୟାଙ୍କର ସତୀତ୍ୱ ନାଶର ସାକ୍ଷୀ ନିଜେ ହୋଇ ରହୁଛନ୍ତି । ପାଠକ ହୁଏତ ଜାଣନ୍ତି ନାହିଁ, ଗୁଜୁରାଟର ଏହି ଶ୍ରେଣୀର ଅନେକ ସ୍ତ୍ରୀଲୋକ ଘରେ କିଛି କାମ ଧନ୍ଦା ନ ପାଇ, ସାଧାରଣ ସଡ଼କରେ ମରାମତି କାମ କରନ୍ତି ଏବଂ ସେଠାରେ କୌଣସି ନା କୌଣସି ପ୍ରକାର ଗୃପଟେ ପଡ଼ି ଆପଣାର ଇଜ୍ଜତକୁ ବିକନ୍ତି । ପାଠକ ହୁଏତ ଜାଣି ନ ଥିବେ ପଞ୍ଜାବର ଯେଉଁ ଗର୍ବୀ ତନ୍ତୀକୁଳ ନିଜର ଧନ୍ଦା ବୁଡ଼ିଯିବାରୁ ଅଳ୍ପଦିନ ହେଲା ସୈନ୍ୟ ବ୍ୟବସାୟ ଧରିଛନ୍ତି ଏବଂ କେବଳ ଉପର ହାକିମଙ୍କ

ହୁକୁମରେ ଅନ୍ୟଦେଶରେ ମାଡ଼ିଯାଇ ଅରବ ଦେଶବାସୀଙ୍କୁ ମାରିବାରେ ସାହାଯ୍ୟ କରୁଛନ୍ତି, ସେମାନେ ଏ କୁକାର୍ଯ୍ୟ ଆପଣା ଦେଶ ପାଇଁ କରି ନାହାନ୍ତି, ଆପଣା ପେଟ ପାଇଁ କରୁଛନ୍ତି । ଯେଉଁମାନଙ୍କୁ ଏ ଭଳି ଭ୍ରଷ୍ଟାଚାରରେ ଭଡ଼ା ନିଆ ହୋଇଛି, ସେମାନଙ୍କୁ ଏ ମଣିଷମାରା ଧନ୍ଦାରୁ ଛଡ଼େଇ ଆଣିବା ବଡ଼ କଠିନ କାମ ହେଲଣି । ପୂର୍ବେ ଯେଉଁ ତନ୍ତୀ ବ୍ୟବସାୟ ଏତେ କଳଙ୍କଶୂନ୍ୟ ଥିଲା, ଏତେ ସମ୍ମାନ-ସୂଚକ ଥିଲା, ଏବେ ସେ ଧନ୍ଦା ଏକ ଅପମାନର କଥା ହେଲଣି ।......

"ଏଥିରେ ମୁଁ ଯଦି ବିଦେଶୀ ଲୁଗାକୁ ଛୁଇଁବା ପାପ ବୋଲି କହୁଛି, ସେଥିରେ ଆଶ୍ଚର୍ଯ୍ୟର କଥା ଅଛି କ'ଣ ? ଯାହାର ହଜମ ଶକ୍ତି ନାହିଁ ସେ ଗୁରୁପାକ ଦ୍ରବ୍ୟ ଖାଇଲେ ତାହାର ପାପ ହେବ ନାହିଁ କି ? ସେସବୁ ଖାଦ୍ୟ ତାହାର ନଷ୍ଟ କରିଦେବା ଉଚିତ ନୁହଁ କି ? କିମ୍ବା ସେ ତାହାକୁ ଅନ୍ୟକୁ ଦେଇ ଦେବ ନାହିଁ କି ? ମୋ ପୁଅ ଦେମାର ପଡ଼ିଛି । ସେ ଗୁରୁପାକ ଦ୍ରବ୍ୟ ଖାଇ ପାରିବ ନାହିଁ ଅଥଚ ଲୋଭରେ ଖାଇବାକୁ ମନ କରେ; ମୁଁ କ'ଣ କରିବି ? ମୋ ପାଖରେ ଥିବା ଗୁରୁପାକ ଖାଦ୍ୟକୁ ମୁଁ କ'ଣ କରିବି ? ମୁଁ ନିଜେ ହୁଏତ ତାକୁ ଖାଇ ହଜମ କରି ଦେଇପାରେ, କିନ୍ତୁ ଏଭଳି ଚିଜ ଖାଇବାରେ ପାପ କ'ଣ ତାହା ବୁଝାଇ ଦେବା ପାଇଁ ମୁଁ ନିଜେ ତ ଖାଇବି ନାହିଁ, ବରଂ ତାହାର ଆଗରେ ସେ ସବୁକୁ ଜାଳି ପୋଡ଼ି ଦେବି ।

"ଆଜି ଭାରତବର୍ଷ ଏକ ଜଡ଼ପିଣ୍ଡ ମାତ୍ର । ଯେ ଅନ୍ୟର ଇଚ୍ଛାରେ ଚାଲୁଛି ସେ ଆତ୍ମଶୁଦ୍ଧି ଦ୍ୱାରା ଅର୍ଥାତ୍ ଆତ୍ମସଂଯମ ଓ ଆତ୍ମତ୍ୟାଗ ଦ୍ୱାରା ଆଜି ପୁଣି ଜୀଇ ଉଠୁ, ମଣିଷ ଜାତି ପ୍ରତି ତାହା ମଙ୍ଗଳର କଥା ହେବ କିନ୍ତୁ ସେ ପାଶ୍ଚାତ୍ୟରେ ଭୋଗୀ ବିଳାସୀ ହୋଇଯିବ ତ ପୃଥିବୀ ଅନ୍ୟଦେଶକୁ ଶୋଷଣ କରିବାକୁ ବସିବ, ସେ କୁମ୍ଭକର୍ଣ୍ଣ

ଦଳ ଉଠି ବସିବ, ଧ୍ୱଂସ କରିବାକୁ ଉଠିବ, ନଗର ଓ ଜଗତରେ ସର୍ବନାଶ କରିବ ।"

( ୩୭ )

ଅସହଯୋଗର ଜୋର୍ ଯେତିକି ବଢୁଥାଏ ସରକାରଙ୍କର ଦମନ ସେତିକି ମଧ୍ୟ ବଢୁଥାଏ । ପଞ୍ଜାବର ହତ୍ୟାକାଣ୍ଡ ଯେଉଁମାନେ କରିଥିଲେ ସେମାନଙ୍କୁ ବଡ଼ ବଡ଼ ଚାକିରୀ ମିଳୁଥାଏ । ତାଙ୍କୁ ଅନ୍ୟପ୍ରକାର ପୁରସ୍କାର ଜାଗିରି ଦିଆ ଯାଉଥାଏ । କିନ୍ତୁ ଏହି ବିଷୟରେ ସରକାର ଠିକାଏ ହେଲେ ଭାବୁ ନ ଥାନ୍ତି । ସାଧାରଣ ଦଣ୍ଡବିଧି ଆଇନର ଧାରାମାନ କାଢ଼ି ତାହାରି ବଳରେ ଲୋକଙ୍କୁ ଧରି ଜେଲ ଦେଉଥାନ୍ତି । ସେପ୍ଟେମ୍ବର ମାସର ମଧ୍ୟଭାଗରେ ଗାନ୍ଧୀ ଓ ମହମ୍ମଦଅଲି ମାନ୍ଦ୍ରାଜ ଗସ୍ତରେ ଯାଉ ଯାଉଁ ଓ୍ୱାଲ୍ଟେଅରଠାରେ ମହମ୍ମଦଅଲି ଗିରଫ ହେଲେ । ତାଙ୍କ ବିରୁଦ୍ଧରେ ମୋକଦ୍ଦମା ହେଲା । ସୈନ୍ୟମାନଙ୍କୁ ଚାକିରୀ ଛାଡ଼ି ଆସିବାକୁ କହୁଥିବାର ଅଭିଯୋଗ ତାଙ୍କ ବିରୁଦ୍ଧରେ କରାଯାଇଥିଲା । ତାର ପ୍ରତିବାଦ କରି ଗାନ୍ଧୀ ସରକାରଙ୍କୁ ଏକ ଖୋଲା ଚିଠି ଲେଖିଥିଲେ ଏବଂ ଯେଉଁ ବକ୍ତୃତା ପାଇଁ ମୌଲାନା ମହମ୍ମଦ ଅଲି ଧରା ହୋଇଥିଲେ ସେହି ବକ୍ତୃତାକୁ ସେ ସାଧାରଣ ସଭାରେ ଦୋହରାଇ ଥିଲେ । ସେହି ଖୋଲା ଚିଠିରେ ଗାନ୍ଧୀ ଲେଖିଥିଲେ "ଆମେ ସିନା ଅହିଂସ ରହିବା କିନ୍ତୁ ଆମେ ନିଷ୍କ୍ରିୟ ହୋଇ ବସି ରହିବା ନାହିଁ । ସୈନ୍ୟମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ଅଲି ଭାଇମାନେ ଯେ ସବୁ କହି ଯାଇଛନ୍ତି, ଆମେ ତାହାକୁ ବାରମ୍ବାର ଦୋହରାଇବା ଏବଂ ସେଥିପାଇଁ ଜେଲ୍ ଦଣ୍ଡକୁ ସ୍ୱାଗତ କରିବା । ଆମର ସବୁଠାରୁ ଭଲ ଲୋକମାନେ ଜେଲ୍ ଚାଲିଗଲେ ଆମର ଆନ୍ଦୋଳନ ଚାଲିବ ନାହିଁ, ଏପରି ଭାବିବା ଆମର ଉଚିତ ନୁହେଁ । ଯଦି ଆନ୍ଦୋଳନ ପ୍ରକୃତରେ ନ ଚାଲେ, ତେବେ ଜାଣିବା ଆମେ ହୁଏତ ସ୍ୱରାଜ୍ୟ ପାଇଁ ଯୋଗ୍ୟ

ନୋହୁଁ କିମ୍ବା ଶିଳ୍ପତନ୍ତ୍ର ଓ ପଞ୍ଜିବ ଅନ୍ୟାୟର ପ୍ରତିକାର କରିବା ପାଇଁ ଅସ୍ତ୍ର ଉପଯୁକ୍ତ ନୋହୁଁ । ହଜାର ହଜାର ସଭା ସମିତିରେ ଆମର ଘୋଷଣା କରିବା ଉଚିତ ଯେ ସରକାରଙ୍କ ଅଧୀନରେ ସୈନ୍ୟ ବିଭାଗରେ ହେଉ ବା ଅନ୍ୟ ବିଭାଗରେ ହେଉ କୌଣସି ରକମର ଚାକିରୀ କରିବା ଯେ କୌଣସି ହିନ୍ଦୁ ବା ମୁସଲମାନ ପକ୍ଷରେ ପାପ ।”

ଏହି ସମୟରେ ଗାନ୍ଧୀ ତାଙ୍କର ପୋଷାକରେ ପୁଣି ଏକ ବିଶେଷ ପରିବର୍ତ୍ତନ କରିଥିଲେ । ଯେଉଁ ଘଟଣାରୁ ଗାନ୍ଧୀ ଏପରି ପରିବର୍ତ୍ତନ କଲେ ତାହା ସେ ନିଜେ ବର୍ଣ୍ଣନା କରିଛନ୍ତି, “୧୯୨୧ ରେ ମୁଁ ଓ ମୌଲାନା ମହମ୍ମଦ ଅଲି ଦକ୍ଷିଣ ଗସ୍ତରେ ଗଲେ । ଓ୍ୱାଲଟିୟରଠାରେ ମହମ୍ମଦ ଅଲି ଧରାହୋଇ ଗଲେ । ବେଗମ୍ ମହମ୍ମଦ ଅଲି ଆମ ସଙ୍ଗରେ ଥାନ୍ତି । ତାଙ୍କ ପାଖରୁ ମୌଲାନା ମହମ୍ମଦ ଅଲିଙ୍କୁ ନେଇଯିବା ଦୃଶ୍ୟରେ ମୁଁ ବଡ଼ ବିଚଳିତ ହୋଇଥିଲି । କିନ୍ତୁ ବେଗମ୍ ସାହେବା ଏ ବିଚ୍ଛେଦକୁ ସାହସର ସହିତ ସହି ଯାଇଥିଲେ ଏବଂ ମାଡ୍ରାଜଠାରେ ସଭା ସମିତିରେ ଯୋଗ ଦେଇଥିଲେ । ମୁଁ ତାଙ୍କୁ ମାଡ୍ରାଜରେ ଛାଡ଼ିଦେଇ ମାଦୁରାଏ ଯାଇଥିଲି । ବାଟରେ ଆମ ରେଲ୍ ଡବାକୁ ବହୁତ ଲୋକ ଆସୁଥାନ୍ତି ଯାଉଥାନ୍ତି କିନ୍ତୁ ମୁଁ ଦେଖିଲି ଯେ ସେମାନେ ଏସବୁ ଘଟଣାର କଥା ଜାଣି ବି ନଥିଲାପରି । ପ୍ରାୟ ସମସ୍ତେ ବିଲାତି ଚକମକିଆ ଲୁଗା ପିନ୍ଧିଥାନ୍ତି । ମୁଁ କେତେକଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କରିଥିଲି ଏବଂ ଖଦୀ ପିନ୍ଧିବାକୁ ତାଙ୍କୁ ବୁଝାଇଥିଲି କାରଣ ଅଲିଭାଇଙ୍କ ମୁକ୍ତି ପାଇଁ ଖଦୀ ଛଡ଼ା ମୋ ପାଖରେ ଅନ୍ୟ କୌଣସି ସାଧନ ନ ଥିଲା । କିନ୍ତୁ ସେ ଲୋକଗୁଡ଼ିକ ମୁଣ୍ଡ ହଲେଇ କହୁଥିଲେ, ‘ଆମେ ଅତି ଗରିବ, ଖଦୀ କିଣି ପାରିବା ନାହିଁ । ଖଦୀ ବଡ଼ ମହଙ୍ଗା ।’ ଏ ଉତ୍ତରରେ

ଯେ ସତ୍ୟ ଥିଲା ତାହା ମୁଁ ଉପଲବ୍ଧି କରିଥିଲି । ମୁଁ ତ ଲମ୍ବା ଚୌଡ଼ା ଧୋତି କୁର୍ତ୍ତା ଓ ଟୋପି ପିନ୍ଧିଥାଏ । ଏ ଲୋକଗୁଡ଼ିକ ତ ଆଂଶିକ ସତ୍ୟ କହିଥିଲେ କିନ୍ତୁ ଯେଉଁ କୋଟି କୋଟି ଲୋକ ବାଧ ହୋଇ ନଙ୍ଗଳା ହୋଇଛନ୍ତି, ଚୂଳାଣେ ଓସାର ହାତେ ଦ'ହାତ ଲମ୍ବର ଖଣ୍ଡେ ନେଙ୍ଗୁଟି ଛଡ଼ା ଆଉ କିଛି ନାହିଁ, ତାଙ୍କର ନଙ୍ଗଳା ଦେହରୁ ପୂର୍ଣ୍ଣ ସତ୍ୟ ଫୁଟି ଉଠୁଥିଲା । ମୁଁ ସେମାନଙ୍କୁ ଆଉ କି ଜବାବ ଦିଅନ୍ତି । ଅନ୍ତତଃ ଖାତିର୍‌ରେ ଯେତେଦୂର ସମ୍ଭବ ହେବ ମୋର ପିନ୍ଧା ଲୁଗା କୁର୍ତ୍ତାକୁ କମେଇ ଦେଇ ଏ ଦରିଦ୍ର ବସ୍ତ୍ରହୀନ ଜନସାଧାରଣଙ୍କ ସଙ୍ଗେ ଏକ ହେବା ଛଡ଼ା ମୋର ଆଉ ଅନ୍ୟ ଗତି କ'ଣ ଥିଲା ? ଏବଂ ସେହିଦିନ ମାଦୁରାଠାରେ ସଭାର ପରଦିନ ସକାଳୁ ମୁଁ ସେତିକି କରିଥିଲି ।'' ସେହିଦିନୁ ଗାନ୍ଧୀ ଟୋପି କୁର୍ତ୍ତା ଛାଡ଼ିଛନ୍ତି, ଲମ୍ବା ଚୌଡ଼ା ମୁଗା ଧୋତି ଆଉ ପିନ୍ଧୁ ନାହାନ୍ତି । ଖଣ୍ଡେ ସାନ ଖଦୀ ଓ ଖଣ୍ଡେ ଚାଦର ତାଙ୍କର ପୋଷାକ ହୋଇଛି ।

ଖଦୀଦ୍ୱାରା ବିଦେଶୀ ବର୍ଜନ ପୂର୍ଣ୍ଣ କରିବାର ଉଦ୍ୟମ ଜୋର୍‌-ସୋର୍‌ରେ ଚାଲିଥାଏ । ଖଦୀ ଉପରେ ନାନା ରକମର ସମାଲୋଚନା ଚାଲିଥାଏ । ଗାନ୍ଧୀ ତହିଁର ଜବାବ ଦେଉଥାନ୍ତି । ଏହି ସମୟରେ ଗୋଟିଏ ପ୍ରବନ୍ଧରେ ବିଦ୍ୟାଳୟମାନଙ୍କରେ ଚରଖା ଚଳାଇବା ଉଦ୍ଦେଶ୍ୟରେ କେତେଗୁଡ଼ିଏ ସୂଚନା ଦେଇଥିଲେ । ସେଗୁଡ଼ିକୁ ବିଶ୍ଳେଷଣ କଲେ ସ୍ପଷ୍ଟ ବୁଝାଯିବ ଯେ ପରେ ମୌଳିକଶିକ୍ଷା ପଦ୍ଧତି ବୋଲି ସେ ଯେଉଁ ଶିକ୍ଷା ଚଳେଇଥିଲେ ତାର ଏକ ଚିତ୍ର ସେତିକି-ବେଳୁ ତାଙ୍କ ମନରେ ଗଢ଼ି ଉଠୁଥିଲା । ପ୍ରବନ୍ଧରେ ସେ ଲେଖିଥିଲେ ଯେ ବିଦ୍ୟାଳୟଗୁଡ଼ିକରେ ଚରଖା ଚଳାଇବାଦ୍ୱାରା ସବୁଠାରୁ ଭଲ ଫଳ ହେବ । ମାତ୍ର ସେଥିରେ କେତେ ସର୍ତ୍ତ ରଖାଯିବା ଆବଶ୍ୟକ । ଏକ, ଯେ କାମ ବୈଜ୍ଞାନିକ ଭିତ୍ତିରେ ଚଳାଯିବା ଉଚିତ ।

ଦୁଇ, ଶିକ୍ଷକମାନଙ୍କର ପୂର୍ଣ୍ଣ ବିଶ୍ୱାସ ଥିବ ଯେ ଭାରତରେ ସାତ ଲକ୍ଷ ଗାଁରେ ଶିକ୍ଷା ବିସ୍ତାର ପାଇଁ ଏହିଟି ହେଉଛି ସବୁଠାରୁ କାର୍ଯ୍ୟକାରୀ ସାଧନ । **ତିନି,** ଉପରନ୍ତୁ ଏଥିରେ ଛାତ୍ରମାନଙ୍କର କ୍ଳାନ୍ତି ବା ଅଧିକ ପରିଶ୍ରମର କୌଣସି ଆଶଙ୍କା ନାହିଁ ଅଥଚ ଗରିବଙ୍କ ଉପରେ ନୂଆ କର ଭାର ନ ପକାଇ କିମ୍ବା ନିଶା ଉପରେ ବସିଥିବା ଅବକାରି ଟିକସର ପାପ ଧନ ଉପରେ ନିର୍ଭର ନ କରି ଜନସାଧାରଣଙ୍କ ଶିକ୍ଷା ଟଙ୍କାର ପ୍ରଶ୍ନର ସମାଧାନ ହୋଇଯିବ ।

ରାଜନୀତି କ୍ଷେତ୍ରରେ ହାୱା ଖୁବ୍ ଗରମ ହେଉଥାଏ । ନଭେମ୍ବର ମାସରେ ନିଖିଳ ଭାରତ କଂଗ୍ରେସ କମିଟି ପ୍ରଦେଶମାନଙ୍କୁ ଆଇନ ଅମାନ୍ୟ କରିବାରେ ଅଧିକାର ଦେଇ ଦେଇଥିଲେ । ପ୍ରତ୍ୟେକ ସତ୍ୟାଗ୍ରହୀ ଅହିଂସାରେ ବିଶ୍ୱାସ କରୁଥିବା ସଙ୍ଗେ ସଙ୍ଗେ ଅସ୍ପୃଶ୍ୟତା ଛାଡ଼ି ସାମ୍ପ୍ରଦାୟିକ ଏକତାରେ ବିଶ୍ୱାସ କରୁଥିଲେ, ହାତକଟା କାଟୁଥିଲେ ଏବଂ ଖଦୀ ପିନ୍ଧୁଥିଲେ ତାକୁ ସତ୍ୟାଗ୍ରହ କରିବାକୁ ଅନୁମତି ଦିଆଯିବ ।

ଠିକ ସେତିକିବେଳକୁ ଇଂଲଣ୍ଡର ଯୁବରାଜଙ୍କର ଭାରତ ଆସିବାର ଥାଏ । ତାଙ୍କର ଭାରତ ଭ୍ରମଣକୁ ସାଧାରଣ ଲୋକେ ବର୍ଜନ କରନ୍ତୁ ବୋଲି କଂଗ୍ରେସ ନିର୍ଦ୍ଦେଶ ଦେଇଥିଲେ । ତା ୧୭।୧୧।୨୧ରେ ଯୁବରାଜ ବମ୍ବେଠାରେ ଜାହାଜରୁ ଓହ୍ଲାଇଥିଲେ । ସେଠାରେ ଲୋକେ ଅସହଯୋଗ କରି ହରତାଳ ପାଳିଥିଲେ; ମାତ୍ର ଅଳ୍ପ କେତେକ ପାର୍ସୀ ଓ ଖ୍ରୀଷ୍ଟାନ ଅଭ୍ୟର୍ଥନାରେ ଯୋଗ ଦେଇଥିଲେ । ଅନ୍ୟ ଜନତା ତାଙ୍କର ଉପରେ ଜୋର୍ ଜୁଲ୍ମ କରିଥିଲେ ଏବଂ ଫଳରେ ମାରପିଟ୍ ହୋଇ ବମ୍ବେ ସହରରେ ତିନିଦିନ କାଳ ଭୀଷଣ ଦଙ୍ଗା ଚାଲିଥିଲା । ହିନ୍ଦୁ, ମୁସଲମାନମାନେ ମିଶି ପାର୍ସି ଖ୍ରୀଷ୍ଟାନଙ୍କ ଉପରେ ଅତ୍ୟାଚାର କରିଥିଲେ ।

ସେତେବେଳେ ଗାନ୍ଧୀ ବମ୍ବେରେ ଥାଆନ୍ତି; ସେ ଦୁଇଦିନକାଳ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଶେଷରେ ଏକ ଉପବାସ କରିବାକୁ ସ୍ଥିର କରି ବମ୍ବେବାସୀଙ୍କୁ ଗୋଟିଏ ନିବେଦନ କରିଥିଲେ, "ବମ୍ବେର ହିନ୍ଦୁ ମୁସଲମାନମାନେ ସେଠାକାର ପାର୍ଶୀ ଖ୍ରୀଷ୍ଟାନ୍ ଓ ଇହୁଦୀମାନଙ୍କ ସଙ୍ଗେ ଶାନ୍ତି ସ୍ଥାପନ ନ କରିବାଯାଏ, ଅସହଯୋଗୀମାନେ ସହଯୋଗୀମାନଙ୍କ ସଙ୍ଗେ ସଦ୍‌ଭାବ ସ୍ଥାପନ ନ କରିବା ଯାଏ, ମୁଁ ପାଣିଛଡ଼ା ଅନ୍ୟ କିଛି ଖାଦ୍ୟପେୟ ଛୁଇଁବି ନାହିଁ । ଏ ଦୁଇଦିନ ମୁଁ ଯେଉଁ ସ୍ୱରାଜ୍ୟ ଦେଖିଲି ତାର ଦୁର୍ଗନ୍ଧ ମୋର ନାକରେ ପଶି ରହିଛି । ହିନ୍ଦୁ ମୁସଲମାନ୍ ଏକତା ମୁଷ୍ଟିମେୟ ପାର୍ଶୀ ଖ୍ରୀଷ୍ଟାନ୍ ଓ ଇହୁଦୀଙ୍କ ପ୍ରତି ଏକ ବିପଦର କାରଣ ହୋଇଛି । ଅସହଯୋଗୀଙ୍କ ଅହିଂସା ସହଯୋଗୀଙ୍କର ହିଂସାଠାରୁ କଦର୍ଯ୍ୟ ହୋଇଯାଇଛି ।......

୧୭ ତାରିଖ ଦିନ ମତେ ଲାଗିଲା ସତେ ଯେପରି ମୋର ଧର୍ମ ଦିଲ କୁଆଡ଼େ ଉଡ଼ିଯାଇ ପାଉଛି । ମୁଁ ଜନତା ଉପରେ କାହିଁକି ପ୍ରଭାବ ପକାଇ ପାରିଲି ନାହିଁ ? ମୋ ଭିତରୁ ଅହିଂସାର ବଳ କୁଆଡ଼େ ଗଲା ? ମୁଁ କଣ କରିଥାନ୍ତି ? ଯେଉଁମାନେ ଅତ୍ୟାଗ୍ରହ ଭୋଗୁଥିଲେ, ସେମାନଙ୍କୁ ସରକାରୀ ସାହାଯ୍ୟ ନେବାକୁ ମୁଁ ପରାମର୍ଶ ଦେଇ ପାରି ନ ଥିଲି. ସେ। ବି ଉଚିତ ନ ଥିଲା । ନ୍ୟାୟ ବିଚାର କରିବା ପାଇଁ ଆମର ଅଂଶୀର ପଞ୍ଚାୟତ ବି ନ ଥିଲା । କିମ୍ବା ଶାନ୍ତି ଆଣିଦେବ ଏପରି କେହି ଲୋକ ବି ନ ଥିଲେ । ଜନତାଙ୍କ ଜୁଲମରେ ଯେ ଦୁଃଖୀ ପାଉଥିଲେ ତାଙ୍କୁ କି ସାହାଯ୍ୟ ଦିଅନ୍ତି ? ପାର୍ଶୀ ଖ୍ରୀଷ୍ଟାନମାନେ ଘଟିଥିଲେ । ମୁଁ ନିଜକୁ ତାଙ୍କ ହାତରେ ସମର୍ପି ଦେଇ ମୋର ଦେହକୁ ବଳି ଦେଇଥିଲେ ଅଧିକ ରକ୍ତପାତ ହୋଇଥାନ୍ତା । ମୁଁ ଜାଣେ ସୈନିକ, ବିପଦକୁ ଡରିବ ନାହିଁ ସତ କିନ୍ତୁ ତା ବୋଲି ଦୁଃସାହସ କରି ମୃତ୍ୟୁକୁ ଡାକି ଆଣିବା ଠିକ୍ ନୁହଁ ।

ତେବେ ମୁଁ କ'ଣ କରିଥାନ୍ତି ? ଅବଶେଷରେ ଏହି ଉପବାସ ମତେ ରକ୍ଷା କରିଛି ଓ ଆତ୍ମାକୁ ଶାନ୍ତି ଦେଇଛି ।''

ଯୁବରାଜ କଲିକତା ଗଲାବେଳକୁ ସେଠାରେ ତାଙ୍କ ଅଭ୍ୟର୍ଥନା ବର୍ଜନ କରିବାପାଇଁ କଂଗ୍ରେସ ନେତାମାନେ ଜବରଦସ୍ତ ସଂଗଠନ କରୁଥାନ୍ତି । ସରକାର ଅସ୍ତବ୍ୟସ୍ତ ହୋଇ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କୁ ଧରି ନେଇଥିଲେ । ଏତିକିବେଳେ କେତେକ ମଧ୍ୟସ୍ଥଙ୍କ ଜରିଆରେ ସରକାରଙ୍କ ସଙ୍ଗେ ଏକ ଆପୋସ ପ୍ରସ୍ତାବ ପଡ଼ିଥିଲା । ସେତେବେଳକୁ ମୌଲାନା ମହମ୍ମଦଅଲି ଜେଲ୍‌ରେ ଥା'ନ୍ତି । ତାଙ୍କୁ ନ ଛାଡ଼ିଲେ ଗାନ୍ଧୀ କିଛି କରି ପାରିବେ ନାହିଁ ବୋଲି ଜିଦ୍ ଧରିଥିଲେ । ଅଥଚ ସରକାର ମହମ୍ମଦଅଲିଙ୍କୁ ଛାଡ଼ିଦେବାର କୌଣସି ସୂଚନା ନ ମିଳିବାରୁ ଆପୋସ କଥାବାର୍ତ୍ତା ଭାଙ୍ଗିଯାଇଥିଲା । ଗାନ୍ଧୀ ଏହିପରି ଅଡ଼ି ବସିବାରୁ କେତେକ ଲୋକ ଗାନ୍ଧୀଙ୍କୁ ଦୋଷ ଦେଇଥିଲେ ।

( ୩୮ )

ଏ ବର୍ଷ ଡିସେମ୍ବର ମାସରେ ଅହମଦାବାଦ୍‌ଠାରେ କଂଗ୍ରେସର ବୈଠକ ବସେ । କଂଗ୍ରେସ ବୈଠକରେ ସରକାର ସମସ୍ତଙ୍କୁ ଧରି ନେବେ ଏଭଳି ନାନାପ୍ରକାର ଜନରବ ଶୁଣା ଯାଉଥାଏ । ତଥାପି ସେ କଂଗ୍ରେସରେ ବହୁ ସଂଖ୍ୟାରେ ପ୍ରତିନିଧି ଗୁଜରାଟରୁ ଯାଇ ଜମା ହୋଇଥିଲେ । ସୁଦୂର ଓଡ଼ିଶାରୁ ଶତାଧିକ ପ୍ରତିନିଧି ଯୋଗ ଦେଇଥିଲେ । ସାଧାରଣ ଲୋକଙ୍କ ସୁବିଧାପାଇଁ ଏବଂ ସମସ୍ତଙ୍କୁ ସମାନ ଆସନ ଦେବାପାଇଁ, ଚୌକି ବେଞ୍ଚ ପ୍ରଭୃତି କଂଗ୍ରେସ ମଣ୍ଡପରୁ ଉଠାଇ ଦିଆଯାଇଥିଲା । ସମସ୍ତେ ତଳେ ବସିଥିଲେ । ଅଧିକାଂଶ ବକ୍ତୃତା ହିନ୍ଦିରେ ହୋଇଥିଲା । ପ୍ରତିନିଧିମାନଙ୍କ ପାଇଁ ଖଦଡ଼ କନାରେ ଘର ତିଆରି ହୋଇଥିଲା । ଚୋଡ଼ିଏ ହଜାରରୁ ଉପର ଲୋକ କଂଗ୍ରେସ୍

ମଣ୍ଡପରେ ରୁଣ୍ଡ ହୋଇଥିଲେ । ଅଭ୍ୟର୍ଥନା ସମିତିର ସଭାପତି ଶ୍ରୀ ବଲ୍ଲଭ ଭାଇ ପଟେଲ ଗୋଟିଏ ଛୋଟିଆ ବକ୍ତୃତା ଦେଇଥିଲେ । ପ୍ରସ୍ତାବ ସଂଖ୍ୟା ମଧ୍ୟ ବହୁତ କମ୍ ଥିଲା । ସରକାରୀ ଦମନ ନୀତିର ଜବାବ ଦେବା ପାଇଁ ଏବଂ ସମୂହ ଆଇନ ଅମାନ୍ୟ ସକାଶେ ସ୍ୱେଚ୍ଛାସେବକ ସଂଗ୍ରହ କରିଯିବା ପାଇଁ ଏକ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ତାହାହିଁ ଏ ବର୍ଷର ପ୍ରଧାନ ପ୍ରସ୍ତାବ ଥିଲା । କେଉଁଠି ଆଇନ ଅମାନ୍ୟ କରାଯିବ ତାହା ସ୍ଥିର କରି ଆଇନ ଅମାନ୍ୟ ଚଳାଇବା ପାଇଁ ଗାନ୍ଧୀଙ୍କୁ କଂଗ୍ରେସର ପୂର୍ଣ୍ଣ କ୍ଷମତା ଦିଆ ଯାଇଥିଲା ।—

—ଅରିଷ୍ଠ ବହୁତ ତିରଙ୍ଗ ଜାତୀୟ ପତାକା ଏହି କଂଗ୍ରେସରୁ ଉତ୍ତୋଳା ହୋଇଥିଲା । ଏଥର ସଭାପତି ଥିଲେ ଦିଲ୍ଲୀର ବିଖ୍ୟାତ ମୁସଲମାନ ନେତା ହକିମ୍ ଅଜ୍ମଲ୍ ଖାଁ ।

କଂଗ୍ରେସ ପରେ ପରେ ୧୯୨୨ ଜାନୁୟାରୀ ୨୨ ତାରିଖରେ ବମ୍ବେଠାରେ ସରକାରଙ୍କ ସଙ୍ଗେ ସାଲିସ ପାଇଁ ଏକ ସର୍ବଦଳ ସମ୍ମିଳନୀ ବସିଥିଲା । ସେହି ସମ୍ମିଳନୀର ପ୍ରସ୍ତାବମାନଙ୍କୁ କଂଗ୍ରେସ କାର୍ଯ୍ୟକାରୀ କମିଟି ସମର୍ଥନ କଲେ ହେଁ ତାହା କୌଣସି ନଗଦ ଫଳ ହୋଇ ନ ଥିଲା । ଗାନ୍ଧୀ ଭାଇସରାୟଙ୍କୁ ଏକ ଖୋଲା ଚିଠି ଲେଖିଥିଲେ । ଦେଶରେ କଥା କହିବା, ସଭାସମିତି କରିବା ଓ ଖବର କାଗଜ ଲେଖିବା ଏ ତିନୋଟି ମୌଳିକ ଅଧିକାରରେ ସରକାର ହସ୍ତକ୍ଷେପ କରୁଥିବାରୁ ତାହାର ପ୍ରତିବାଦରେ ବାଧ୍ୟ ହୋଇ ସେ ଅସହଯୋଗର ଶେଷ ଅସ୍ତ୍ର—ସମୂହ ଆଇନ ଅମାନ୍ୟ, ଗୁଜୁରାଟର ବାର୍ଦ୍ଦୋଲୀଠାରେ ପ୍ରୟୋଗ କରିବେ ବୋଲି ସରକାରଙ୍କୁ ଜଣାଇ ଦେଇଥିଲେ । ଦମନ ନୀତିର ପ୍ରତିବାଦରେ ଶୀଘ୍ର ଆଇନ ଅମାନ୍ୟ ନ କଲେ ଲୋକଙ୍କ ହିଂସାକୁ ଅଯତ୍ନରେ ରଖିବା କଠିନ ହେବ ବୋଲି ମଧ୍ୟ ସେ ଚିଠିରେ

ତାହା ସବୁ ଜାଣି ପାରନ୍ତି ଏବଂ ସେହି ଅନୁସାରେ ସେ ଅଗ୍ରସର ବାଟ କରିଚାଲନ୍ତି । ସାଧାରଣ ଲୋକଙ୍କ ସଙ୍ଗେ ବହୁକାଳ ଧରି ମିଳାମିଶା କରି, ଗାନ୍ଧୀଙ୍କର ଗୋଟିଏ ଷଷ୍ଠ ଇନ୍ଦ୍ରିୟ (ସିକ୍‌ସ୍ଥ ସେନ୍ସ) ଜାଗ୍ରତ ହୋଇଥିଲା ଯାହା ବଳରେ ଜନସାଧାରଣ କ'ଣ ଭାବୁଥିଲେ, କ'ଣ କରୁଥିଲେ ବା କ'ଣ କରି ପାରିବେ ତାହା ଗାନ୍ଧୀ ଜାଣି ପାରୁଥିଲେ ।"

ସରକାର ସମ୍ଭବତଃ ଏଥିପ୍ରତି ଯଥେଷ୍ଟ ଅବହେଳା କରୁଥିଲେ । 'ଗାନ୍ଧୀ ଗିରଫ ହେବେ' ଏହିଭଳି ଜନରବ ମଧ୍ୟ ଅନେକଥର ମଧ୍ୟ ଶୁଣା ଯାଉଥିଲା । ତାହା ମଧ୍ୟ ମିଛ ହେଲା । ତାଙ୍କର ସେହି ଭବିଷ୍ୟତ ଥରେ ବା ଦୁଇଥର ଦେଖା ଯାଉଥିଲା କିନ୍ତୁ ସରକାର ତାଙ୍କୁ ଧରିବାକୁ ସାହସ କରୁ ନ ଥିଲେ । ଏଥର ଯାଇ ଅମାନ୍ୟ ଦଳ ହେବା ପରେ ୧୯୨୨ ମାର୍ଚ୍ଚ ୧୦ ତାରିଖ ଦିନ ତାଙ୍କୁ ଆଶ୍ରମଠାରେ ଗିରଫ କରାଯାଇଥିଲେ । ସେହି ରାତିରେ 'ୟଙ୍ଗ ଇଣ୍ଡିଆ' ପ୍ରବନ୍ଧ ପାଇଁ ତାଙ୍କ ନାମରେ ମକଦ୍ଦମା ଚଳିଲା । ଗୋଟିଏ ବିବୃତି ଦେବା ଛଡ଼ା ମକଦ୍ଦମାରେ ସେ ଅନ୍ୟ କୌଣସି ଭାଗ ନେଇ ନ ଥିଲେ । ମକଦ୍ଦମା ବେଶ୍ ସୁନ୍ଦର ହୋଇଥିଲା । ମାର୍ଚ୍ଚ ୧୮ ତାରିଖ ଦିନ ଅହମଦାବାଦର ସେସନ୍ ଜଜଙ୍କ ଅଦାଲତରେ ଏ ମକଦ୍ଦମା ହୋଇଥିଲା । ଶ୍ରୀମତୀ ସରୋଜିନୀ ନାଇଡୁ ବିଚାର ବେଳେ କଚେରୀରେ ଉପସ୍ଥିତ ଥିଲେ । ଶ୍ରୀମତୀ ନାଇଡୁ ସେ ବିଚାରର ବର୍ଣ୍ଣନା ଏହିପରି କରିଛନ୍ତି—

"ଆଇନ ଦୃଷ୍ଟିରେ ଜଣେ ଦୋଷୀ, ଜଣେ ଅଭିଯୁକ୍ତ ଆସାମୀ, ତଥାପି, ମହାତ୍ମା ଗାନ୍ଧୀ ଯେତେବେଳେ କଚେରୀ ଘରେ ପଶିଗଲେ କଚେରୀର ସମସ୍ତ ଲୋକ ଆପଣା ମନକୁ ସମ୍ମାନ ଦେଖାଇବାପାଇଁ ଠିଆ ହୋଇ ପଡ଼ିଥିଲେ । ସେହି କ୍ଷୀଣ ଦେହ, ଗମ୍ଭୀର ମୂର୍ତ୍ତିରେ

ଅଦମ୍ୟ ଶକ୍ତି ଫୁଟି ଉଠୁଥାଏ, ଖଣ୍ଡିଏ ଗ୍ଲେଟ ମୋଟା ଖଦୀ ପିନ୍ଧିଥାନ୍ତି, ପଛେ ପଛେ ତାଙ୍କର ଅନୁଗତ ଶିଷ୍ୟ ଶଙ୍କରଲାଲ ବ୍ୟାଙ୍କର, ଜଣେ ସହବନ୍ଦୀ ।

"ଓଃ ହୋ, କାଲେ ମୁଁ ଡର ଦେଇଯିବି, ସେଇଥିପାଇଁ ମତେ ଚେକି ଧରିବ ବୋଲି ମୋ ପାଖରେ ବସିଛ ପରା ?" ......ଝଙ୍କ'ରେ ଏତକ କହୁଥିଲେ ଏବଂ ମହା ଆନନ୍ଦରେ ଠୋ, ଠୋ, କରି ହସି ଉଠିଥିଲେ—ସେ କି ହସ ! ସତେ ଯେମିତ ତା ଭିତରେ ସମସ୍ତ ଜଗତର ଶୈଶବର ଜ୍ୟୋତି ଛପି ରହିଛି । ଗ୍ରୈବଅଡ଼କୁ ଅନାଇଁ ଦେଖିଲେ, ଅନେକ ପରିଚିତ ଲୋକ, ସ୍ତ୍ରୀ ଓ ପୁରୁଷ ବହୁ ଦୂର-ଦେଶରୁ ନିଜ ସ୍ନେହର ଅର୍ଘ୍ୟ ଅର୍ପଣ କରିବାକୁ ଆସିଥାନ୍ତି—କହି ପକେଇଥିଲେ, 'ଏତ କଚେରୀ ପରି ଲାଗୁ ନାହିଁ, ଏତ ଏକ ଘରୋଇ ପାରିବାରିକ ମିଳନ ପରି ଲାଗୁଛି ।'

"ବ୍ରୁମଫିଲ୍ଡ ପସିଗଲେ—ଉପସ୍ଥିତ ଜନତା ଭିତରେ ଭୟ, ଶଙ୍କା, ଆଶା ଓ କ୍ଷୋଭର ଯୁଗପତ୍ ସ୍ପନ୍ଦନ ଖେଳି ଯାଇଥିଲା । ବ୍ରୁମଫିଲ୍ଡ ବି ବଡ଼ ଭଲ ଲୋକ; ତାଙ୍କ ନିପୁଣ ଭଦ୍ରତା, ତାଙ୍କ ଦୃଢ଼ ଓ ସାହସୀ କର୍ତ୍ତବ୍ୟବୋଧ ଏବଂ ଏ ଅଦ୍ୱିତୀୟ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ସମ୍ମାନ ଜ୍ଞାପନ, ଏ ଭଳି ଅଭୂତପୂର୍ବ ଘଟଣାର ଯଥାର୍ଥ ଉପଲବ୍ଧି, ଏ ସମସ୍ତ ପାଇଁ ସେ ଅମର ପ୍ରଶଂସାର ଯୋଗ୍ୟ ଥିଲେ ।

"ଏ ଅଦ୍ଭୁତ ବିଚାର ଆରମ୍ଭ ହୋଇଗଲା—ଏବଂ ମୋର ପ୍ରିୟ ପ୍ରଭୁଙ୍କ ମୁହଁରୁ ଭବିଷ୍ୟତର ବାଣୀ ଭଳି ଯେ ଅମୃତସ୍ରୋତ ବୋହୁଥିଲା ମୁଁ ତାକୁ ଶୁଣିଥିଲି, ସେତେବେଳେ ମୋର ମନ ଶହ ଶହ ବର୍ଷ ପୂର୍ବର ଏକ ଘଟଣା ଆଡ଼କୁ, ଏକ ଭିନ୍ନ ଦେଶର ଭିନ୍ନ ଯୁଗର ଗୋଟିଏ ଦୃଶ୍ୟ ଆଡ଼କୁ ଧାଇଁ ଯାଇଥିଲା—ଯେତେବେଳେ ଏହିପରି ଜଣେ କୋମଳପ୍ରାଣ ମହାଗୁରୁ କ୍ରୁସ୍ ବିଦ୍ଧ ହୋଇଥିଲେ, ଠିକ୍ ଏହିପରି ଏକ

ବାର୍ତ୍ତା, ଏହିପରି ସାହସର ସହିତ ପ୍ରଚାର କରିଥିବାରୁ ଦଣ୍ଡ ପାଇଥିଲେ । ଭାରତର ସ୍ୱାଧୀନତାର ଏହି ଉପାସକ । ଯେ କି ମାନବ ଜାତିକୁ ଚରମ କରୁଣାର ସହିତ ଭଲ ପାଉଥିଲେ ଏବଂ ଯେ କି ତାଙ୍କର ଭାଷାରେ ଗରିବଙ୍କ ମନୋଭାବ ନେଇ ଗରିବଙ୍କ ପାଖକୁ ଯାଉଥିଲେ, ସେ ଭଳି ଲୋକଙ୍କର ଉପମା ଆଉ ଇତିହାସରେ କେଉଁଠୁ ମିଳିବ ? ମୁଁ ସେତିକିବେଳେ ଉପଲବ୍ଧି କରିଥିଲି ଯେ ସେହି ନୀଚ ବଂଶ ଜାତ ଯୀଶୁ, ନାଜାରଥର ଯୀଶୁ, ଯେ କି ସେହି ଗୋରୁ କୁଣ୍ଡରେ ଜନ୍ମ ହୋଇ ପାଳିତ ହୋଇଥିଲେ, ସେହି କେବଳ ଉପମା ହୋଇ ପାରନ୍ତି ।

"ବର୍ତ୍ତମାନ ଯୁଗର ସବୁଠାରୁ ସ୍ମରଣ ଯୋଗ୍ୟ ଘଟଣା ଅତି ଶୀଘ୍ର ସରିଯାଇଥିଲା ।·········ଉପସ୍ଥିତ ବନ୍ଧୁ ବାନ୍ଧବଙ୍କର ଛୁଢଭାବ ଏକ ଦୁଃଖର ଝଞ୍ଜାରେ ଫାଟି ପଡ଼ିଥିଲା । ବିଦାୟ ନେବାକୁ ଧୀରେ ଧୀରେ ଏକ ଲମ୍ବା ଶୋଭାଯାତ୍ରା ଚାଲିଥିଲା । ଯେଉଁ ହାତ ଦେଶର ସେବାରେ ଅନବରତ କାମ କରିଛି, ତାହାକୁ ସମସ୍ତେ ସ୍ପର୍ଶ କରୁ-ଥାଆନ୍ତି ଏବଂ ଯେଉଁ ଗୋଡ଼ ସେହି ଦେଶ ପାଇଁ ଅନବରତ ଚାଲି ଚାଲିଛି, ସମସ୍ତେ ସେ ଗୋଡ଼କୁ ଛୁଉଁ ଥାଆନ୍ତି ।

"ଶହ ଶହ ଲୋକଙ୍କର ଏ ଉଚ୍ଛ୍ୱସିତ ଦୁଃଖର ହୃଦୟ ବିଦାରକ ଦୃଶ୍ୟ ଭିତରେ ସେ ତାଙ୍କର ସେହି ସ୍ୱର୍ଗୀୟ ସରଳତାରେ ଅବିଚଳିତ ଭାବେ ଠିଆ ହୋଇଥାନ୍ତି, ଭାରତଜାତୀୟତାର ଦେହଧାରୀ ପ୍ରତୀକ—ଏକାଧାରରେ ଭାରତଜାତିର ତ୍ୟାଗ ଓ ସେବାର ମୂର୍ତ୍ତି ।"

ଜଜଙ୍କ ଅଭିଯୋଗର ଜବାବରେ ଗାନ୍ଧୀ ନିମ୍ନଲିଖିତ ବକ୍ତୃତାଟି ଦେଇଥିଲେ । "୧୮୯୩ ସାଲରେ ଦକ୍ଷିଣ ଆଫ୍ରିକାରେ ମୁଁ ମୋର ସାଧାରଣ ଜୀବନ ଏକ ଅଶାନ୍ତ ବାତାବରଣ ଭିତରେ ଆରମ୍ଭ କରିଥିଲି, 'ସେଠାକାର ଇଂରେଜ ଶାସକମାନଙ୍କ ସାଙ୍ଗରେ ମୋର

ଦେଇଥିଲେ ତାହା ସେ ରକ୍ଷିପାରିବେ ନାହିଁ ବୋଲି ମୋର ସନ୍ଦେହ ହୋଇଥିଲା ।

ଏଥିପାଇଁ ଲୋକମାନଙ୍କର ଘୋର ଅସନ୍ତୋଷ ଓ ପ୍ରତିବାଦୀ ସତ୍ତ୍ୱେ ମୁଁ ୧୯୧୯ ଅମୃତସରର କଂଗ୍ରେସରେ ଶାସନ ସଂସ୍କାର ଆଇନ ସଙ୍ଗେ ସହଯୋଗ କରି ତାକୁ କାମରେ ଲଗାଇବା ପାଇଁ କହିଥିଲି । ମୋର ଯେତେବେଳେ ଆଶା ଥିଲା ଭାରତ ମନ୍ତ୍ରୀ ମୁସଲମାନମାନଙ୍କୁ ଦେଇଥିବା କଥା ରକ୍ଷା କରିବେ, ପଞ୍ଜାବ ଅତ୍ୟାଚାରର ପ୍ରତିକାର ହେବ ଏବଂ ସଂସ୍କାର ଆଇନରେ ଯେତେକ ଅଧିକାର ମିଳିଛି ତାହା ପର୍ଯ୍ୟାପ୍ତ ଓ ସନ୍ତୋଷଜନକ ନ ହେଲେ ମଧ୍ୟ, ସେଥିରେ ଭାରତରେ ଜୀବନରେ ଏକ ନୂଆ ଯୁଗର ସୂଚନା ଅଛି ।

ଖିଲାଫତର ଜବାବ ରକ୍ଷା ହେଲା ନାହିଁ । ପଞ୍ଜାବ ହତ୍ୟାକାଣ୍ଡକୁ ଘୋଡ଼େଇ ଦିଆଗଲା, ଦୋଷୀ ତ ଦଣ୍ଡ ପାଇଲେ ନାହିଁ; ଗୁଳି ଚାଳନାରେ ରହିଲେ ଓଲଟା କେତେ ଜଣ ସରକାରର ରାଜସ୍ୱରୁ ପେନ୍‌ସନ୍ ପାଉଥିଲେ ଓ କେତେକ ସ୍ଥାନରେ ପୁରସ୍କାର ପାଇଥିଲେ । ପୁଣି ଏହା ମଧ୍ୟ ଦେଖି ପାରିଲି ଯେ ସଂସ୍କାର ଆଇନରେ ହୃଦୟ ପରିବର୍ତ୍ତନର ଲକ୍ଷଣ ନ ଥିଲା ବରଂ ଭାରତର ଧନ ଶୋଷଣ କରିବାର ଓ ଭାରତର ଦାସତ୍ୱ ବଜାୟ ରଖିବାର ନୂଆ ନୂଆ ବାଟ ସେଥିରେ ଖୋଜା ହୋଇଥିଲା ।.................

ଶେଷରେ ଗାନ୍ଧୀଙ୍କୁ ଛଅଟି ବର୍ଷ ଜେଲ୍‌ଦଣ୍ଡ ମିଳିଥିଲା । ସରକାର ତାଙ୍କୁ ଯେରବଡ଼ା ଜେଲରେ ରଖିଥିଲେ ।

ଏହି ବିଚାର ବେଳର ଗୋଟିଏ ଘଟଣା ବିଶେଷ ଉଲ୍ଲେଖ ଯୋଗ୍ୟ ଯେ, ମକଦ୍ଦମାରେ ଗାନ୍ଧୀଜୀ ନିଜର ବ୍ୟବସାୟ ଚଷା ଗୃହସ୍ଥ ଓ ବୁଣାକାର ବୋଲି ଲେଖାଇଥିଲେ ।

ମାର୍ଚ୍ଚମାସ ୧୬ ତାରିଖରେ ଗାନ୍ଧୀ ଜେଲ ଭିତରୁ କଂଗ୍ରେସ ସଭାପତି ହକିମ ଅଜମଲ ଖାଁଙ୍କୁ ଖଣ୍ଡିଏ ଚିଠି ଲେଖିଥିଲେ, ଚିଠିର କେତେକ ଅଂଶ ନିମ୍ନପ୍ରକାରେ ଥିଲା;—

"ପୂର୍ବେ କେବେ ଯାହା ଦେଖି ନ ଥିଲି ଏବେ ତାହା ବୁଝି ପାରୁଛି ଯେ, ହିନ୍ଦୁ ମୁସଲମାନ ଏକତା ନ ହେଲେ ସ୍ୱାଧୀନତା ହାସଲ ହୋଇ ପାରିବ ନାହିଁ । ଭେଦ ରହିଥିବାତ ଆମେ ସବୁଦିନ ପରର ଅଧୀନ ହୋଇ ରହିଥିବା । × × ×

ମୋ ମତରେ ଆମେ ଅହିଂସାକୁ ଆମର ଦୃଢ଼ ନୀତି ବୋଲି ଗ୍ରହଣ ନ କଲେ ସେ ଭଳି ଏକତା ସମ୍ଭବ ହେବ ନାହିଁ । ଆମର ହିନ୍ଦୁ ମୁସଲମାନ ବନ୍ଧୁ ପଣିଆ କେବଳ ଗୋଟାଏ ଗୁଲ୍ ହୋଇ ରହିଛି । ପରସ୍ପର ଭିତରେ ପରସ୍ପର ପ୍ରତି ଅବିଶ୍ୱାସ ଅଛି ଏବଂ ତା ଫଳରେ ଭୟ ଅଛି । ତା ବୋଲି ମୁଁ ନିରାଶ ନୁହେଁ । ସେ ଦିଗରେ ଆମେ ଯେତେକ ଆଗେଇଛୁ, ସେତିକ ବି ଆଗରୁ କେବେ ହୋଇ ନ ଥିଲା । ଅଠରମାସ ଭିତରେ ଆମେ ଗୋଟିଏ ପୁରୁଷର କାମ କରି ପାରିଛୁ । କିନ୍ତୁ ଆଜି ଅଧିକ କେତେ ଯେ କରିବାକୁ ହେବ ତାର ସୀମା ନାହିଁ । ଆଜି କି ଶିକ୍ଷିତ ବା ଧନୀ ଲୋକେ କି ସାଧାରଣ ଲୋକେ କେହି ସରଳ ଭାବରେ ବୁଝୁ ନାହାନ୍ତି ଯେ ଆମର ଏକତା ଏକାନ୍ତ ଲୋଡ଼ା । × × × ସେଥିପାଇଁ ମତେ ଜଣାପଡ଼ୁଛି ଯେ ସଂଖ୍ୟାକୁ ଅନାଇଲେ ଚଳିବ ନାହିଁ, ଗୁଣକୁ ଦେଖିବାକୁ ହେବ । ଆମ ଭିତରୁ ଅଳ୍ପ କେତେ ଜଣ ହୁଅନ୍ତୁ ପଛକେ ଯେଉଁମାନେ ଭଲକରି ବୁଝିବେ ଯେ ମନରେ, କଥାରେ ଓ କାମରେ ସେମାନେ ଅହିଂସ ନ ହେଲେ ଆମର ସ୍ୱାଧୀନତା ଆଶା ପୂରିବ ନାହିଁ ।"

( ୪୦ )

ଗାନ୍ଧୀଙ୍କ ଜେଲ୍ ଯିବା ପରେ ଭାରତର ସ୍ୱରାଜ୍ୟ ଆନ୍ଦୋଳନ କେଉଁ ଢଗରେ ଗତି କରୁଥିଲା ତାହା ପରେ କୁହାଯିବ । କିନ୍ତୁ ସତ୍ୟାଗ୍ରହ ବା ସବିନୟ ଆଇନ ଅମାନ୍ୟ ଭଳି ଅମୋଘ ଅସ୍ତ୍ରଟି ଭାରତବାସୀଙ୍କର ପରିଚିତ ହୋଇ ଯାଇଥିଲା, ତାହାର ପ୍ରମାଣ ନିମ୍ନବର୍ଣ୍ଣିତ ସତ୍ୟାଗ୍ରହ ଆନ୍ଦୋଳନମାନଙ୍କରୁ ପରିଷ୍କାର ମିଳିଯାଏ; ଗାନ୍ଧୀଙ୍କ ଅନୁପସ୍ଥିତିରେ ମଧ୍ୟ ସତ୍ୟାଗ୍ରହ ଆନ୍ଦୋଳନ ଚାଲିପାରେ ଏ ବିଶ୍ୱାସ ମଧ୍ୟ ଲୋକଙ୍କ ମନରେ ଜନ୍ମି ଯାଇଥିଲା ।

ବୋର୍‌ସାଦ ଗୁଜୁରାଟ ପ୍ରଦେଶର ଗୋଟିଏ ତାଲୁକା । ସେହି ତାଲୁକାରେ ଦଳେ ଡକାୟତ ମାତି ଲୋକଙ୍କୁ ବଡ଼ କଷ୍ଟ ଦେଉଥିଲେ । ଡକାୟତ ସର୍ଦ୍ଦାରଙ୍କ ନାଁ ଥିଲା ଦେଓ୍ୱର ବାବା । ସେ ଦିନବେଳେ ଗାଁ ଭିତରକୁ ଆସି ସ୍କୁଲପିଲିଙ୍କୁ ମିଠେଇ ବାଣ୍ଟେ ଓ ଦିନରେ ଗାଁର ଧନୀଲୋକଙ୍କ ନାଁ ବୁଝି ନିଏ । ରାତିରେ ସଦଳବଳରେ ଆସି ସେହି ଧନୀଲୋକଙ୍କ ଘରୁ ଜଣେ ଦିଜଣ ମଣିଷଙ୍କୁ ଧରି ନେଇଯାଏ ଏବଂ ତାଙ୍କ ପରିବାରଙ୍କଠାରୁ ବହୁତ ଟଙ୍କା ଆଦାୟ କଲା ପରେ ଛାଡ଼ିଦିଏ । ଏ ଦଳର ଜୁଲୁମ ଏହିପରି ଚାଲୁଥିଲା ବେଳେ ଆଉ ଜଣେ ମୁସଲମାନ ଦୁର୍ନାମ ଫେରାର୍ ଆସାମୀ ଆଉ ଏକ ଡକାୟତ ଦଳ ଗଢ଼ି ଦେଓ୍ୱର ବାବାର ପ୍ରତିଦ୍ୱନ୍ଦ୍ୱୀ ହୋଇଥିଲା । ପୁଲିସ ବହୁ ଚେଷ୍ଟା କରି ଦେଓ୍ୱରକୁ ଧରି ପାରୁ ନ ଥିଲେ । ବୋରସାଦ ତାଲୁକାକୁ ବରୋଦା ଗଡ଼ଜାତ ରାଜ୍ୟ ଲାଗିଥିଲା । ସେ ରାଜ୍ୟର ଗାଁ ଗଣ୍ଡାରେ ବି ଏ ଡକାୟତ-ମାନଙ୍କର ଜୁଲୁମ ଚାଲୁଥାଏ । ଉଭୟ ଆଡ଼ର ପୁଲିସ ଏକାଠି ପରାମର୍ଶ କରି ସେ ନୂଆ ଡକାୟତକୁ ହାତ କଲେ ଏବଂ ତାର ଜରିଆରେ ଦେଓ୍ୱରକୁ ଧରିବାକୁ ଉଦ୍ୟମ କଲେ । ଗୁରୁ, ପାଞ୍ଚଜଣ କନେଷ୍ଟବଲ୍‌ଙ୍କୁ ତାହାର ସାହାଯ୍ୟ କରିବାକୁ ପଠାଯାଇ ଥିଲା । କିନ୍ତୁ ଚୋର ଚୋରକୁ

ଘଟଣା ଶୁଣି ତାଙ୍କର ପରେଇ ବିଭାଗର ସଭ୍ୟଙ୍କୁ ସରଜମିନ୍ ତଦନ୍ତ ପାଇଁ ତୁରନ୍ତ ପଠାଇଥିଲେ । ପରନ୍ତୁ ଘଟଣା ପ୍ରମାଣିତ ହୋଇଥିଲା ଏବଂ ଫେରାଇ ସଭ୍ୟ ସେଙ୍ଗ ସଙ୍ଗେ ଦ୍ଵଳିସ ଉଠାଇ ଆଣିଥିଲେ । ସ୍ଵେଚ୍ଛାସେବକଙ୍କର ଜଥା ଭଙ୍ଗା ଫଳରେ ଦେଖିବ ଦାଦା ବି କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ଦୋରସାଦ୍ ସତ୍ୟାଗ୍ରହ ଏହିପରି ସରିଥିଲା ।

( ୪୧ )

ଏହା ପରେ ପରେ ପଞ୍ଜାବରେ ଶିଖ୍ଙ୍କର ଏକ ସତ୍ୟାଗ୍ରହ ହୋଇଥିଲା । ଗାନ୍ଧୀ ଜେଲ୍ ଯାଇ ନ ଥାନ୍ତି, ପଞ୍ଜାବରେ ଶିଖ୍ମାନେ ଅସହଯୋଗ ଆନ୍ଦୋଳନ ଚଳାଇବା ସଙ୍ଗେ ସଙ୍ଗେ ତାଙ୍କର ମଠ ଓ ଧର୍ମପୀଠମାନଙ୍କର ସଂସ୍କାର କରିବା ପାଇଁ ଏକ ଆନ୍ଦୋଳନ ଆରମ୍ଭ କରିଥିଲେ । ଶିଖ୍ମାନଙ୍କ ସଂଖ୍ୟା ଓ ଜମ୍, ଫଳରେ ଦୁଇଟି ଆନ୍ଦୋଳନ ଏକ ପ୍ରକାର ମିଶି ଯାଇଥିଲା । ଗାନ୍ଧୀ ଜେଲ୍ ଗଲା ବେଳକୁ ପଞ୍ଜାବ ଶାନ୍ତି ଶିଖ୍ ସ୍ଵେଚ୍ଛାସେବକ ନେତା ଜେଲ୍‌ରେ ଥାନ୍ତି । ଗାନ୍ଧୀ ଧରା ହେବା ସଙ୍ଗେ ସଙ୍ଗେ ଏମାନଙ୍କ ଉପରେ ଦମନ ଚକ୍ର ଅଧିକ ଚାଲିଥିଲା । ନାନା ବାହାନାରେ ହଜାର ହଜାର ଶିଖ୍ଙ୍କୁ ଧରି ବନ୍ଦୀ କରାଯାଇ ଥିଲା । ଶିଖଙ୍କ ଭିତରେ ସଂସ୍କାରକ ଦଳ କଳା ପଗଡ଼ି ବାନ୍ଧୁଥିଲେ । ସେମାନଙ୍କୁ ଅକାଳି ଶିଖ୍ କହୁଥିଲେ । ବାଛି ବାଛି କରି ପ୍ରାୟ ସବୁଠାରେ ଶବ୍ଦ ଅକାଳି ଶିଖ ଧରା ହୋଇଥାନ୍ତି । ପଣ୍ଡିତ ମାଳବ୍ୟଜୀ ଏ ବିଷୟ ତଦନ୍ତ କରିବାକୁ ପଞ୍ଜାବ ଯାଇଥିଲେ । ତା ପରେ ସରକାର ଏକ ବାହାନା ଧରି କହୁଥିଲେ ଯେ ସଂସ୍କାର ଆନ୍ଦୋଳନ ସଙ୍ଗେ ବଦମାସ୍ ଲୋକେ ମିଶି ଗୋଳମାଳ କରୁଥିଲେ । ବଦମାସ୍ ଏଥର କଂଗ୍ରେସ ବୁଢ଼ାଲୋକଙ୍କ ଲକ୍ଷ୍ୟ କରି କୁହା ହେଉଥିଲା ।

୧୯୨୨ ଜୁନ୍ ୧୫ ତାରିଖ ସୁଦ୍ଧା ପ୍ରାୟ ଦୁଇ ହଜାର ଶିଖ୍‌କର୍ମୀ ଜେଲରେ ଥିଲେ ।

ଏହିବର୍ଷ ଅଗଷ୍ଟ ମାସ ଶେଷକୁ ଏ ଆନ୍ଦୋଳନରେ ଏକ ବିଶେଷ ଘଟଣା ଘଟିଥିଲା । 'ଉଦାସୀ' ଦଳର ଶିଖମାନେ ସଂସ୍କାର ବିରୁଦ୍ଧ ଥିଲେ । ମଠର ମହନ୍ତମାନେ ପ୍ରାୟ ସମସ୍ତେ ଉଦାସୀ । ସଂସ୍କାରକ ଅକାଳିମାନେ ସତ୍ୟାଗ୍ରହ କରି ସବୁ ମଠଯାକ ଦଖଲ କରିବେ ବୋଲି ପ୍ରସ୍ତାବ କରିଥିଲେ । ଶିଖ୍‌ମାନେ ମଠଗୁଡ଼ିକୁ ଗୁରୁଦ୍ୱାର କହନ୍ତି । ଗୁରୁକାବାଗ୍‌ରେ ଗୋଟିଏ ମଠ ଥିଲା । ଅଗଷ୍ଟ ମାସରେ କେତେ ଜଣ ସତ୍ୟାଗ୍ରହୀ ଶିଖ ସେ ମଠ ବଗିଚାରୁ ଗୋଟିଏ ଗଛ କାଟି ନେଇଥିଲେ । ସେମାନେ ତ ଧରା ହୋଇଥିଲେ, କିନ୍ତୁ ପରେ ପରେ ମହନ୍ତ ପୁଲିସ ସାହାଯ୍ୟ ମାଗି ପୁଲିସ ପହରା ବସେଇ ଥିଲେ । ଅକାଳିମାନେ ଚୁପ ହୋଇ ବସିବା ଲୋକ ନୁହନ୍ତି । ଦଳ ଦଳ ହୋଇ ମଠ ଦଖଲ ପାଇଁ ବାହାରିଲେ । ଶିଖଦଳଙ୍କୁ 'ଯଥା' କହନ୍ତି । ସତ୍ୟାଗ୍ରହୀ 'ଯଥା'ଙ୍କୁ ବେଆଇନ ଘୋଷଣା କରାଗଲା । ସେମାନେ ଯେମିତି ପହରା ପୁଲିସ ଧାଡ଼ି ପାର ହୁଅନ୍ତି, ତାଙ୍କୁ ଗିରଫ ନ କରି ନିଷ୍ଠୁର ଭାବରେ ଲାଠିମାଡ଼ ଦିଆଯାଏ । ଏଥିରେ ସତ୍ୟାଗ୍ରହୀମାନେ କୌଣସି ପ୍ରକାର ବିରୋଧ ବା ପ୍ରତିରୋଧ କରୁ ନ ଥିଲେ । ଶାନ୍ତ ଭାବରେ ମାଡ଼କୁ ସହି ଯାଉଥିଲେ । ସତ୍ୟାଗ୍ରହୀ ଦଳ ଯାତ୍ରା କରିବା ପୂର୍ବରୁ ତାଙ୍କର ଧର୍ମଗ୍ରନ୍ଥ 'ଗ୍ରନ୍ଥସାହେବ'ଙ୍କ ଆଗରେ ଅହିଂସାର ପ୍ରତିଜ୍ଞା ଗ୍ରହଣ କରୁଥିଲେ । ଲାଠିମାଡ଼ ସେମାନଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ନିର୍ମମ ଭାବରେ ପଡ଼ୁଥିବାବେଳେ ସେମାନେ ଧୀରସ୍ଥିର ଭାବରେ କେବଳ 'ଓ୍ୱାହା ଗୁରୁ, ଓ୍ୱାହା ଗୁରୁ' (ଗୁରୁଜୀଙ୍କ ଜୟ, ଗୁରୁଜୀଙ୍କ ଜୟ) ମୁହଁରେ ରଟୁଥାନ୍ତି ଏବଂ ମଧ୍ୟେ ମଧ୍ୟେ 'ସତ୍ ଶ୍ରୀ ଅକାଲ୍' ଧ୍ୱନି ଦେଉଥାନ୍ତି । ଏ ଦୃଶ୍ୟରେ ସମଗ୍ର ଭାରତରେ ଏକ

ଚଞ୍ଚଳ ପଡ଼ ଯାଇଥିଲା । ଯେଉଁ ବୀରଜାତି ଜର୍ମାନମାନଙ୍କ ବିରୁଦ୍ଧରେ ଯୁଦ୍ଧ କରି ଯୁଦ୍ଧବିପର ସମର କ୍ଷେତ୍ରରେ ଯଶ ରଖି ଆସିଥିଲେ, ସେହିମାନେ ଏଠେ ଏ ଅହିଂସା ସଂଗ୍ରାମରେ ମଧ୍ୟ ଏକ ଆଦର୍ଶ ରଖିଗଲେ । ଗାନ୍ଧୀ ଥରେ କହିଥିଲେ ଯେ ଗୁଳି ଖାଇବାଠାରୁ ଲଠିମାଡ଼ ଖାଇବା କଠିନ କାମ ଏବଂ ଯେଉଁମାନେ ଅହିଂସ ଭାବରେ ଲଠିମାଡ଼ ସହି ପାରନ୍ତି ସେମାନେ ଯଥାର୍ଥରେ ସମ୍ମାନଯୋଗ୍ୟ । ଶିଖମାନଙ୍କ ଉପରେ ଏ ଅତ୍ୟାଚାରର ଦୃଶ୍ୟ ବର୍ଣ୍ଣନା କରି ଆଣ୍ଡ୍ରୁଜ ସାହେବ ସେତେବେଳେ ଲେଖିଥିଲେ "ମୁଁ ଏପରି କରୁଣ ଓ ହୃଦୟ-ବିଦାରକ ଦୃଶ୍ୟ କେବେହେଁ ଦେଖି ନ ଥିଲି । ଅହିଂସାର ଜୟ ଏଠାରେ ସମ୍ପୂର୍ଣ୍ଣ ହୋଇଥିଲା ।" ପଣ୍ଡିତ ମୋତିଲାଲ ଏ ଘଟଣା ତଦନ୍ତ କରିବାକୁ ଯାଇ ମାଡ଼ଛଡ଼ା ପୁଲିସ ଯେ ଅନ୍ୟାନ୍ୟ ଜୁଲମ କରୁଥିଲା ତାର ବର୍ଣ୍ଣନା କରି ଲେଖିଛନ୍ତି 'ପୁଲିସର ଲୁହାତାର ବାଡ଼ ଭିତରକୁ ଆହତ ସତ୍ୟାଗ୍ରହୀମାନଙ୍କ ପାଇଁ ଖାଇବା ଜିନିଷ ଟିକିଏ ହେଲେ ଛାଡ଼ୁ ନ ଥିଲେ । ଯେ ଖାଇବା ଜିନିଷ ମଧ୍ୟ ନେଇକରି ଯାଉଥିଲେ ତାଙ୍କୁ ମଧ୍ୟ ମାଡ଼ ହେଉଥିଲା । ମୋର ମଟର-ଗାଡ଼ିକୁ ଗୁରୁଦ୍ୱାର ଫାଟକ ନିକଟରେ ଯାଏ ଘର ଭିତରକୁ ଛାଡ଼ ଦିଆ ଯାଇଥିଲା ।"

କଷ୍ଟଦାନ ପରେ ସରକାରଙ୍କୁ ନିତାନ୍ତ ଲଜ୍ଜା ମାଡ଼ିବାରୁ ମାଡ଼ ବନ୍ଦ କରାଗଲା ଏବଂ ଗିରଫଦାରି ଆରମ୍ଭ ହୋଇଥିଲା । ଶେଷରେ ୧୯୨୨ ନଭେମ୍ବର ମାସରେ ଏ ଆନ୍ଦୋଳନର ଏକ ବିଶେଷ ସମାଧାନ ହୋଇ ଯାଇଥିଲା ।

ସର୍ ଶ୍ରୀ ଗଙ୍ଗାରାମ ଲାହୋରର ଜଣେ ସୁପରିଚିତ ଉଦାରମନା ବ୍ୟକ୍ତି । ସେ ମଧ୍ୟସ୍ଥ ହୋଇ ଗୁରୁକାବାଗ ମହନ୍ତଙ୍କଠାରୁ ସେ ଜମିଟା

ସେଠା ନେଇ ନେଉଥିଲେ ଏବଂ ତା ଭିତରକୁ ଅକାଳିମାନଙ୍କୁ ଦିବାକୁ ଘାଟ ପାହାରିଦାରଙ୍କୁ ଧୋକା ଦେଇ ନ ଥିଲେ । ଏହାପରେ ଭାରତରେ ଅକାଳି ସତ୍ୟାଗ୍ରହର ବିଜୟ ହୋଇଥିଲା ।

ଏହାପରେ ୧୯୨୩ ମେ ମାସରେ ନାଗପୁରରେ ପତାକା ସତ୍ୟାଗ୍ରହର ସୂତ୍ରପାତ ହୁଏ । ନାଗପୁର ପଲ୍ଲୀରେ ଧଳେ ଗୋଟିଏ ଶୋଭାଯାତ୍ରା ଜାତୀୟ ପତାକା ନେଇ ସହର ବୁଲାଇବେବୋଲି ସ୍ଥିରକଲେ ପୁଲିସ ସେଥିରେ ବାଧା ଦେଉଥିଲା । ୧୪୪ ଧାରା ନୋଟିସ ଜାରି କରି 'ସିଭିଲ ଲାଇନ୍ସ'କୁ ଯିବାକୁ ନିଷେଧ କରାଯାଇଥିଲା । ମନା କରାଯାଇଥିଲା ଜାତୀୟ ପତାକା ନେଇ ଯିବାକୁ । ଏଥିରେ ସ୍ୱେଚ୍ଛା-ସେବକମାନେ ଜାତୀୟ ପତାକା ନେଇ ସବୁଆଡ଼େ ଯିବାର ଅଧିକାର ଦାବି କରିବାକୁ ଆରମ୍ଭ କରିଥିଲେ । ବହୁ ସଂଖ୍ୟାରେ ସତ୍ୟାଗ୍ରହୀ ଗିରଫ ହୋଇ ଦଣ୍ଡିତ ହେଲେ । ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ଜୁଲାଇ ମାସରେ ନାଗପୁରଠାରେ ବସିଥିଲା । ସେଥିରେ ଏ ସତ୍ୟାଗ୍ରହର ସାହାଯ୍ୟ ପାଇଁ ପ୍ରସ୍ତାବ ହେଲା ଏବଂ ଭାରତର ସବୁଆଡ଼େ ଦଳେ ଦଳେ ପତାକା ଦଳ ପଠାଗଲା । ଇତିମଧ୍ୟରେ ସେଠ ଯମୁନାଲାଲ ବଜାଜ ମଧ୍ୟ ଏ ସତ୍ୟାଗ୍ରହରେ ଧରା ହୋଇ ବନ୍ଦୀ ହେଲେ । ତାଙ୍କ ଉପରେ ତିନିହଜାର ଟଙ୍କା ଜୋରିମାନା ହୋଇଥିଲା । ଜୋରିମାନା ଆଦାୟପାଇଁ ତାଙ୍କର ମଟରଗାଡ଼ି କ୍ରୋକ୍ ହେଲା । ମାତ୍ର ନାଗପୁର ସହରରେ ସେ ଗାଡ଼ିକୁ କେହି ନିଲାମ ଧରିବାକୁ ବାହାରିଲେ ନାହିଁ । ଶେଷରେ ସରକାର ସେ ଗାଡ଼ିକୁ ନେଇ ସୁଦୂର କାଟିଅଓ୍ୱାଡ଼ରେ ବିକ୍ରି କରିଥିଲେ । କ୍ରମେ ଏ ପତାକା ସତ୍ୟାଗ୍ରହ ଏକ ମହାଭାରତୀୟ ଆନ୍ଦୋଳନର ଆକାର ଧାରଣ କରିଥିଲା; ଜୁଲାଇ ମାସ ୧୦ ତାରିଖଠାରୁ କଂଗ୍ରେସ ତରଫରୁ ସର୍ଦ୍ଦାର ବଲ୍ଲଭଭାଇ ଏହାର ପରିଚାଳକ ନିଯୁକ୍ତ ହୋଇଥିଲେ ।

ଭାରତର ଗୃହଯୁଦ୍ଧ ସତ୍ୟାଗ୍ରହୀ ଓ ଟଙ୍କପଇସା ଜମା ହୋଇ ପଡ଼ିଥିଲା। ସ୍ୱର୍ଗତ ବିଠଲଭାଇ ପଟେଲ (ଭଲ୍ଲଭ-ଭାଇଙ୍କ ବଡ଼ଭାଇ) ଏ ସତ୍ୟାଗ୍ରହରେ ଯୋଗ ଦେଇଥିଲେ। ସେଥିରୁ ସରକାର ଏ ଆନ୍ଦୋଳନ ବନ୍ଦ କରିବା ପାଇଁ ଏକ ନୂଆ ନୋଟିସ ବାହାର କଲେ। ସରକାରଙ୍କ ଅନେକ ପକ୍ଷରେ ଏଥିକି ହେଲା ଯେ ଅନୁମତି ନେଲେ ସେ ଜମାଜମି ଛାଡ଼ି ଦିଆଯିବ କିନ୍ତୁ କଂଗ୍ରେସର ଦାବୀ ଥିଲା ଯେ ସବୁ ସମ୍ପତ୍ତି ବିନା ସର୍ତ୍ତରେ ପଟ୍ଟାଦାରମାନଙ୍କୁ ଫେରି ଯାଇପାରିବ। ଶେଷରେ ନେତାମାନଙ୍କ ତରଫରୁ ଏକ ବିବୃତି ପ୍ରକାଶ କରିବାକୁ ସ୍ଥିର କରି ତାହାର ପାଠ ଓ ସମସ୍ତ ସାଧାରଣରେ ଘୋଷଣା କରି ପଠାଇଥିଲେ। ସରକାର ଉକ୍ତ ଶର୍ତ୍ତରେ ବାଧା ଦେଇ ନ ଥିଲେ।

( ୪୨ )

ଗାନ୍ଧୀ ୟେରୱଡ଼ା ଜେଲରେ ବନ୍ଦୀ ଥିଲେ। ସେ ଥରକାର ଜେଲ ଅନୁଭୂତି 'ୟେରୱଡ଼ା ଜେଲର ଅଭିଜ୍ଞତା' ନାଁ ଦେଇ ଖଣ୍ଡିଏ ବହିରେ ଲେଖିଛନ୍ତି। ସତ୍ୟାଗ୍ରହୀରୂପେ ଜେଲରେ ସେ କିପରି ଆଚରଣ କରିଥିଲେ ତାହାର ବର୍ଣ୍ଣନା ସେଥିରେ ଲେଖାଅଛି।

ଗାନ୍ଧୀ ଜେଲରେ ଥିବା ସମୟ ଭିତରେ କଂଗ୍ରେସର ଦୁଇଟି ସାଧାରଣ ବୈଠକ ଓ ଗୋଟିଏ ବିଶେଷ ବୈଠକ ହୋଇଯାଇଥିଲା। ତାଙ୍କ ଜେଲ ଯିବା ପରେ ପରେ ଯେତେବେଳେ ଅନ୍ୟ ବଡ଼ ନେତାମାନେ ଜେଲରୁ ବାହାର ଆସିଥିଲେ, ସେତେବେଳେ କଂଗ୍ରେସ ମଣ୍ଡଳରେ ମତଭେଦ ଦେଖା ଯାଇଥିଲା। ଥୋକେ ଗାନ୍ଧୀଙ୍କ ପୁରୁଣା ବାଟକୁ ଠିକ୍ ଠିକ୍ ଧରି ଚାଲିବା ସପକ୍ଷରେ ଥିଲେ—ସବୁ ବର୍ଜନ ନୀତି ଉପରେ କାଏମ ରହି ଗଠନମୂଳକ କାମଦ୍ୱାରା ଦେଶକୁ

ଆଇନ ଅମାନ୍ୟ ପାଇଁ ପ୍ରସ୍ତୁତ କରିବା ଥିଲା ସେମାନଙ୍କର କାର୍ଯ୍ୟକ୍ରମ । ଅନ୍ୟ ଏକଦଳ ଏସେମ୍ବ୍ଲି ଭିତରେ ପଶି ସେଠାରେ ଅଡ଼େଇ ଅସହଯୋଗ କରିବାକୁ ପ୍ରସ୍ତାବ କରୁଥିଲେ, ଏ ନୂଆଦଳର ନେତା ଥିଲେ ପଣ୍ଡିତ ମୋତିଲାଲ ଓ ଦେଶବନ୍ଧୁ ଚିତ୍ତରଞ୍ଜନ ।

ଏ ନୂଆଦଳର ନାଁ ଦେଇଥିଲେ ସ୍ୱରାଜ୍ୟ ଦଳ । ପୁରୁଣା ବାଟରେ ଯିବା ଦଳଙ୍କର ନେତା ଥିଲେ ଶ୍ରୀ ରାଜଗୋପାଳାଚାରୀ ଓ ସର୍ଦ୍ଦାର ପଟେଲ ଭାଇ । ଗୟା କଂଗ୍ରେସର ସଭାପତି ହୋଇଥିଲେ ଚିତ୍ତରଞ୍ଜନ କିନ୍ତୁ କଂଗ୍ରେସର ପୁରୁଣା ଦଳଙ୍କର ମତ ବେଶୀ ହୋଇ-ଥିଲା ଓ ଚିତ୍ତରଞ୍ଜନଙ୍କ ପ୍ରସ୍ତାବ କାଟ ଖାଇଯାଇଥିଲା । କିନ୍ତୁ ତାଙ୍କ ଦଳ କ୍ରମେ ବଢ଼ିଥିଲା ଏବଂ ଦିଲ୍ଲୀ ବୈଠକରେ ଗୋଟିଏ ରଫା ପ୍ରସ୍ତାବ ସମସ୍ତେ ଗ୍ରହଣ କରିଥିଲେ । ମୌଲନା ମହମ୍ମଦଅଲ୍ଲୀ ଜେଲରୁ ବାହାରିବା ପରେ ପରେ କୋକନଡ଼ା କଂଗ୍ରେସର ସଭାପତି ହୋଇଥିଲେ । ସେ ଉଭୟ ଦଳଙ୍କୁ ମିଳେଇ ମିଶେଇ କାମ କରେଇବାକୁ ଚେଷ୍ଟା କରୁଥିଲେ । ଏହି ସମୟରେ କେହି କେହି ଜେଲ ଭିତରୁ ଗାନ୍ଧୀଙ୍କ ମତ ଜାଣିବା ପାଇଁ ଉଦ୍ୟମ କରୁଥିଲେ । ତାର ଉତ୍ତରରେ ଗାନ୍ଧୀ କହି ପଠେଇଥିଲେ ଯେ ସେ ଜେଲ ଭିତରୁ କୌଣସି ମତ ପଠାଇ ସତ୍ୟାଗ୍ରହର ନୀତି ଭଙ୍ଗ କରିପାରିବେ ନାହିଁ ଏବଂ କେହି ତାଙ୍କୁ ଅପେକ୍ଷା ନ କରି ନିଜର ବୁଦ୍ଧି ଓ ବିବେକ ଅନୁସାରେ ନିଜର ବାଟ ଧରି ଚାଲନ୍ତୁ ।

୧୯୨୪ ଆରମ୍ଭରେ ୟେରଓ୍ୱାଡ଼ା ଜେଲଭିତରୁ ଖବର ଆସିଲା ଯେ ଗାନ୍ଧୀ ବେମାର ପଡ଼ିଛନ୍ତି । ଏ ଦୁଃସମ୍ବାଦରେ ଦେଶରେ ଏକ ବିଷାଦ ଖେଳିଯାଇଥିଲା । ଜାନୁୟାରୀ ୧୨ ତାରିଖରେ ଗାନ୍ଧୀଙ୍କୁ ଡାକ୍ତରଖାନାକୁ ନିଆଗଲା ଏବଂ ଜଣେ ସୁଦକ୍ଷ ଇଂରାଜୀ ଡାକ୍ତରଙ୍କ ଦ୍ୱାରା ଗାନ୍ଧୀଙ୍କ ପେଟରେ ରାତି ଅଧରେ ଅସ୍ତ୍ର ଚିକିତ୍ସା କରାଯାଇଥିଲା ।

ଅସ୍ତ୍ର ଚିକିତ୍ସା ଖୁବ୍ ସଫଳ ହୋଇଥିଲା ଏବଂ ଶୀଘ୍ର ସେ ଆରୋଗ୍ୟଲାଭ କରିବାକୁ ଲାଗିଥିଲେ । ଡାକ୍ତରଖାନାରେ ମଧ୍ୟ ସେ ନିଜର କଥା-ବାର୍ତ୍ତାରେ କୌଣସି ଅହଂକାର ପ୍ରଚାର କରୁନଥିଲେ ଏବଂ ନିଜର ଆନ୍ଦୋଳନ ମର୍ମ ବୁଝାଇବାକୁ ଟିକିଏ ହେଲେ ହେଳା କରୁ ନ ଥିଲେ ତାହା ନିମ୍ନଲିଖିତ ଘଟଣାରୁ ଜଣା ପଡ଼େ । ଘଟଣାଟି ସେ ନିଜେ ବର୍ଣ୍ଣନା କରିଛନ୍ତି ।

"ଅସ୍ତ୍ର ଚିକିତ୍ସା ପରେ ଯେଉଁଠାକାର ଡାକ୍ତର ଓ ମୋର ଧାଈଙ୍କ ଜଗାରଖାରେ ମତେ ଏକ ଖାସ୍ ଘରେଇ ୱାର୍ଡ଼କୁ ନେଇ ଯାଉଥିଲେ । ମୋର ଧାଈଟି ଜଣେ ଇଂରେଜ ମହିଳା । ସେ ବଡ଼ କର୍ମପଟୁ ଥିଲେ ଏବଂ ମତେ ସବୁବେଳେ ବଡ଼ ସ୍ନେହପୂର୍ଣ୍ଣ କଥାରେ ବେଶୀ ଖାଇବାକୁ ବେଶୀ ଶୋଇବାକୁ ପ୍ରବର୍ତ୍ତାଉଥିଲେ । ତାଙ୍କର ଏ ସ୍ନେହର ମୂଲ୍ୟ ପାଇଁ ମୁଁ ତାଙ୍କୁ 'ଅଭ୍ୟାଗତ' ବୋଲି ଡାକିବାକୁ ଭଲ ପାଉଥିଲି । ମତେ ଘରେଇ କୋଠାକୁ ନେଇଯିବା ପରେ, ସେ ଟିକିଏ ହସି ହସି, ଟିକିଏ ଥଟ୍ଟା କଲା ପରି ଅଭିମାନ ନମ୍ରଭାବରେ ମତେ କହୁଥିଲେ, "ଆପଣଙ୍କୁ ଏଠାକୁ ଆଣିବା ବେଳେ ଗୋଟିଏ ଛତା ଉହାଡ଼ କରିଥିଲି ସେ ଛତାଟି ଇଂଲଣ୍ଡ ତିଆରି ଥିଲା, ଏ କଥା ଆପଣ ଜାଣନ୍ତି କି ? ସେତେବେଳେ ମତେ ଟିକିଏ ହସ ମାଡ଼ୁଥିଲା, କାରଣ ଆପଣଙ୍କ ଭଳି ଜଣେ ବ୍ୟକ୍ତି ଯେ ସବୁ ଇଂରେଜୀ ଜିନିଷକୁ ଭୟଙ୍କରଭାବରେ ବର୍ଜନ କରନ୍ତି, ତାଙ୍କର ପ୍ରାଣ ଜଣେ ଇଂରେଜ ଡାକ୍ତରଙ୍କ ହାତରେ, ଇଂରେଜୀ ଅସ୍ତ୍ର ସାହାଯ୍ୟରେ ରକ୍ଷା କରାଯାଉଥିଲା ଏବଂ ଜଣେ ଇଂରେଜ ଧାଈ ଇଂରେଜୀ ଔଷଧ ଦେଇ ତାଙ୍କର ସେବା କରୁଛି ।" ସେ ଦୟାଶୀଳା ଧାଈଟି ଶେଷ ବାକ୍ୟଟି ଟିକିଏ ଗର୍ବର ସହିତ କହୁଥିଲେ, ଭାବୁଥିଲେ ଯେ ତାଙ୍କର ଏ ପ୍ରେମପୂର୍ଣ୍ଣ ଉପଦେଶରେ ମୁଁ ଏକଦମ୍ ଅଭିଭୂତ ହୋଇଯିବ । କିନ୍ତୁ ମୁଁ ତାଙ୍କର ଏ ଅସ୍ୱସକ୍ରୋଷକୁ

ବିଗାଡ଼ ଦେଉଥିଲ, ମୁଁ ଜବାବ ଦେଉଥିଲି, "ଆପଣମାନେ ସତକଥା କେବେ ଜାଣିବେ ? କୌଣସି ଜିନିଷ କେବଳ ଇଂରେଜୀ ବୋଲି ମୁଁ ବର୍ଜନ କରେ ନାହିଁ, ଏ କଥା ଆପଣ ଜାଣନ୍ତି କି ? ମୁଁ କେବଳ ଇଂଲଣ୍ଡର ବସ୍ତ୍ରକୁ ବର୍ଜନ କରେ, କାରଣ ସେ ଲୋକଙ୍କୁ ଗୋଷ୍ଠିରେ ଆମ ଉପରେ ଲଦି ଦିଆଯାଇ ଆମର କୋଟି କୋଟି ଦେଶବାସୀଙ୍କୁ ନିଃସ୍ୱ କାଙ୍ଗାଳ କରି ଦିଆଯାଉଛି । ମୁଁ କମେ ଖଦୀ ଆନ୍ଦୋଳନରେ ତାଙ୍କର ଆଗ୍ରହ ଜନ୍ମାଇଥିଲି ଏବଂ ମୋର ବିଶ୍ୱାସ ସେ ଖଦଡ଼ ପ୍ରତି ଅନୁରକ୍ତା ହୋଇଥିଲେ ।"

ଫେବୃୟାରୀ ମାସ ୫ ତାରିଖରେ ହଠାତ୍ ଗାନ୍ଧୀଙ୍କୁ ବିନା ସର୍ତ୍ତରେ ଜେଲରୁ ଛାଡ଼ି ଦିଆଗଲା । ପ୍ରାୟ ଦୁଇବର୍ଷ କାରାବାସ ପରେ ଗାନ୍ଧୀ ମୁକ୍ତ ହେଲେ । ମୁକ୍ତ ହେବା ପରେ ପରେ ସେ କଂଗ୍ରେସ ସଭାପତି ମୌଲାନା ମହମ୍ମଦ ଅଲିଙ୍କୁ ଖଣ୍ଡିଏ ଚିଠି ଲେଖି ସେଥିରେ ଦେଶବାସୀଙ୍କୁ ତାଙ୍କର ବାଣୀ ଶୁଣାଇ ଦେଇଥିଲେ, ଚିଠି ଖଣ୍ଡି ଫେବୃୟାରୀ ୧୪ ତାରିଖ ୟଂ ଇଣ୍ଡିଆରେ ଛପା ହୋଇଥିଲା ।

( ୪୩ )

"ଯଦ୍ୟପି ମୁଁ ଦେଶର ବର୍ତ୍ତମାନ ଅବସ୍ଥା ଜାଣେ ନାହିଁ ତଥାପି ମୁଁ ଅନେକ କଥା ଜାଣେ, ଯେଉଁଥିରୁ ମୁଁ ବୁଝିପାରୁଛି ଯେ ଜେଲ୍ ଯିବା ପୂର୍ବରୁ ବାର୍ଦ୍ଦୋଲୀ ପ୍ରସ୍ତାବବେଳେ ଦେଶର ସମସ୍ୟା-ମାନ ଯେତେ ଜଟିଳ ଥିଲେ ସେ ସବୁ ଏବେ ଅଧିକ ଜଟିଳ ହୋଇଛନ୍ତି । ହିନ୍ଦୁ, ମୁସଲମାନ, ପାର୍ଶି, ଖ୍ରୀଷ୍ଟାନ୍ ଏବଂ ଅନ୍ୟ ଭାରତବାସୀଙ୍କ ଭିତରେ ଏକତା ନ ହେଲେ ସ୍ୱରାଜ୍ୟ କଥା କହିବା ନିରର୍ଥକ ବୋଲି ସ୍ପଷ୍ଟ ଦେଖାଯାଉଛି । ମୁଁ ୧୯୨୨ରେ ବିଶ୍ୱାସ କରି ନିକଏ ତୁଷି ହେଉଥିଲି ଯେ ଏକତା ପ୍ରାୟ ହୋଇଗଲାଣି ମାତ୍ର ଆଜ

ଦେଖୁଛନ୍ତି ଯେ ଅନ୍ତତଃ ହିନ୍ଦୁ, ମୁସଲମାନ ଏକତା ବିଶେଷଭାବରେ ବାଧା ପାଇ ଅଟକି ଯାଇଛି । ପରସ୍ପର ପ୍ରତି ବିଶ୍ୱାସ ପରିବର୍ତ୍ତେ ଅବିଶ୍ୱାସ ପଶିଯାଇଛି । ମୋର ଖଲାସରେ ଦେଶ ଯେ ଆନନ୍ଦ ପ୍ରକାଶ କରୁଛି, ତାହାକୁ ସମ୍ପ୍ରଦାୟମାନଙ୍କ ଭିତରେ ମୈତ୍ରୀ ଦୃଢ଼ତର କରିବାରେ ଲଗାଯିବ କି ? ତାହାହେଲେ ବିଶ୍ରାମ ନେଲେ ବା ଚିକିତ୍ସା କରାଇଲେ ମୋର ସ୍ୱାସ୍ଥ୍ୟ ଯେତେ ନ ଫେରିବ, ଏ କାମଦ୍ୱାରା ସେ ସ୍ୱାସ୍ଥ୍ୟ ଅତି ଶୀଘ୍ର ଫେରି ଆସିବ । ଜେଲ୍‌ରେ ଯେତେବେଳେ ଶୁଣିଲି ଯେ ସ୍ଥାନେ ସ୍ଥାନେ ହିନ୍ଦୁ ମୁସଲମାନ ଝଗଡ଼ା ଉଠିବା ଲାଗିଛି, ସେତେବେଳେ ମୋ ମନ ଦବି ଯାଇଥିଲା ।

ମୋ ମନ ଉପରେ ଏ କଳିର ଚିନ୍ତା ଯଦି ସବୁବେଳେ ମାଡ଼ି ବସିଥିବ ତେବେ ମତେ ବିଶ୍ରାମ କୁଆଡ଼ୁ ମିଳିବ ?........ମୁଁ ଜାଣେ ଏ କାମ ଭାରି କଷ୍ଟକର । କିନ୍ତୁ ଭଗବାନଙ୍କଠାରେ ଆମର ଜୀବନ୍ତ ବିଶ୍ୱାସ ଥିଲେ କୌଣସି କାମ କଠିନ ହେବ ନାହିଁ । ନିଜର ଦୁର୍ବଳତା ଆମେ ଉପଲବ୍ଧି କରିବା । ଭଗବାନଙ୍କୁ ଜଣାଇବା । ସେ ନିଶ୍ଚୟ ସାହାଯ୍ୟ କରିବେ । ଦୁର୍ବଳତାରୁ ଭୟ ଆସେ । ଭୟରୁ ଅବିଶ୍ୱାସ ଜନ୍ମେ । ଉଭୟ ପକ୍ଷ ଆପଣାର ଭୟ ଛାଡ଼ିବା, କିନ୍ତୁ ମୁଁ ଜାଣେ ଗୋଟିଏ ପକ୍ଷ ଯଦି ଭୟ ଛାଡ଼ିଦେବ, ତେବେ ଆମର କଳି ବନ୍ଦ ହୋଇଯିବ ।"

ଶୀଘ୍ର ଆରୋଗ୍ୟଲାଭ କରିବେ ବୋଲି ଗାନ୍ଧୀଜୀ ବମ୍ବେ ପାଖ ସମୁଦ୍ରକୂଳରେ ଜୁହୁ ନାମକ ଏକ ଗ୍ରାମରେ ରହିଥିଲେ । ସେହିଠାରେ ଦେଶର ଅନ୍ୟାନ୍ୟ ନେତାମାନଙ୍କ ସଙ୍ଗେ ତାଙ୍କର କଥାବାର୍ତ୍ତା ହୋଇଥିଲା । ପଣ୍ଡିତ ମୋତିଲାଲ ଓ ଜବାହାରଲାଲ ସେଠାକୁ ଯାଇ କିଛିଦିନ ରହିଥିଲେ । ମୋତିଲାଲଙ୍କ ସଙ୍ଗେ ନୂଆ ସ୍ୱରାଜ୍ୟ ଦଳ ସମ୍ବନ୍ଧରେ ଖୁବ୍ ଆଲୋଚନା ହୋଇଥିଲା । ମାତ୍ର

କେହି କାହାରିକୁ ବୁଝାଇ ପାରି ନ ଥିଲେ । ଗାନ୍ଧୀ ଙ୍କ ସଭା ପ୍ରବେଶର ମହତ୍ତ୍ୱ ବୁଝି ପାରି ନ ଥିଲେ । ଶେଷରେ ଗାନ୍ଧୀ ଓ ମୋତିଲାଲ ଦୁଇପକ୍ଷ ଦୁଇଟି ବିବୃତି ଦେଲେ ।——ଦୁଇଟି ସ୍ୱତନ୍ତ୍ର ବାଟରେ ଗ୍ଲଲେ । ତେବେ ଏତିକି ହେଲା ଯେ ଦୁଇଦଳ ଯେପରି ଅନ୍ୟାନ୍ୟ କ୍ଷେତ୍ରରେ ଯଥାସମ୍ଭବ ଏକାଠି ମିଶି କାମ କରିବେ ସେଥିପ୍ରତି ଦୃଷ୍ଟି ରଖି ଗାନ୍ଧୀ ସମସ୍ତ ବ୍ୟବସ୍ଥା କରିଥିଲେ । ପାଠକ ଲୋକେ ସେ ପର୍ଯ୍ୟନ୍ତ ଗାନ୍ଧୀଙ୍କ କାର୍ଯ୍ୟକ୍ରମକୁ ହୃଦ୍‌ବୋଧ କରି ପାରି ନ ଥିବାର ପ୍ରମାଣ ଧୀରେ ଧୀରେ ମିଳୁଥିଲା ।

ସାଧାରଣ ଗୃଷ୍ଟୀ ମୂଳଅଙ୍କ ଦଳ ଅସଲ ଦଳ, ତାଙ୍କୁ ସ୍ୱରାଜ୍ୟ ସ୍କନ୍ଧରେ ଲଦେଇ ସ୍ୱରାଜ୍ୟ ହାସଲ କରିବାକୁ ହେବ ଏବଂ ତାହା କେବଳ ଅହିଂସା ଉପାୟରେ ଗଠନମୂଳକ କାମଦ୍ୱାରା ହୋଇ ପାରିବ, ପାଠକ ଲୋକେ ଏତକ ସହଜରେ ହଜମ କରି ପାରୁ ନ ଥିଲେ ।

ଏହି ସମୟରେ ଜୁନମାସ ୨୭ ତାରିଖ ବେଳକୁ ଅହମଦାବାଦଠାରେ ନିଖିଳଭାରତ କଂଗ୍ରେସ କମିଟିର ଏକ ବୈଠକ ବସେ । ସେଠାରେ ଗୋପୀନାଥ ସାହାଙ୍କ ସମ୍ବନ୍ଧରେ ଏକ ପ୍ରସ୍ତାବ ଆସିଥିଲା । ସେ ବଙ୍ଗଳାରେ ଜଣେ ହିଂସାବାଦୀ ବିପ୍ଳବୀ ଥିଲେ । ସେ ଜଣେ ସରକାରୀ କର୍ମଚାରୀଙ୍କୁ ମାରି ଦେଇଥିଲେ । ବଙ୍ଗଳାରେ ପ୍ରାଦେଶିକ କଂଗ୍ରେସ ଲୋକ ତାଙ୍କର ଦେଶପ୍ରୀତିର ପ୍ରଶଂସା କରୁଥାନ୍ତି । ଉପରନ୍ତୁ ତାଙ୍କର ଏ କାମକୁ ପ୍ରକାରାନ୍ତରରେ ପ୍ରଶଂସା ମଧ୍ୟ କରୁଥା'ନ୍ତି; ସେମାନେ ଖୋଲାଖୋଲି ଶ୍ରୀଯୁକ୍ତ ସାହାଙ୍କର ଏ ହିଂସା କାମର ନିନ୍ଦା କରୁ ନ ଥା'ନ୍ତି । ନିଖିଳଭାରତ କଂଗ୍ରେସ କମିଟିରେ ପ୍ରସ୍ତାବ ଆସିଲା ଯେ ଗୋପୀନାଥ ସାହାଙ୍କର ଦେଶପ୍ରୀତି ଥିଲା ସତ ମାତ୍ର ତାଙ୍କର କାମ ଠିକ୍ ହୋଇ ନାହିଁ ଏବଂ ଯେ ବାଟରେ କଂଗ୍ରେସ

ବୃଲିଛି ଏଭଳି କାମ ସେଥିରେ ଘୋର କ୍ଷତ କରୁଛି ଓ ଦେଶ ସେ ଦିଗରେ ସାବଧାନ ରହିବା ଉଚିତ । ଏ ପ୍ରସ୍ତାବ ବହୁମତରେ ମଞ୍ଜୁର ହୋଇଥିଲା । କେତେ ଲୋକ ଏଥିର ବିରୁଦ୍ଧରେ ମତ ଦେଇଥିଲେ । କଂଗ୍ରେସର ମୂଳ ଅହିଂସା ନୀତିକୁ ଉପେକ୍ଷା କରି ଏଭଳି ମତ ଦେବାକୁ ଏତେଗୁଡ଼ିଏ କଂଗ୍ରେସ ଲୋକ ପ୍ରସ୍ତୁତ ଥିବାର ଦେଖି ଗାନ୍ଧୀ ବଡ଼ ବ୍ୟଥିତ ହୋଇଥିଲେ । ନିଜର ନିକଟତମ ଓ ପ୍ରିୟତମ ସହକର୍ମୀମାନଙ୍କ ଭିତରେ ଏପରି ଦୁର୍ବଳତା ଦେଖି ସେ ଏତେ ବିଚଳିତ ହୋଇଥିଲେ ଯେ କଂଗ୍ରେସ କମିଟି ସଭାରେ ସେ କାନ୍ଦି ପକାଇଥିଲେ । ସାଧାରଣ ସଭାରେ, ଏଭଳି କାନ୍ଦ ପକାଇବା ଗାନ୍ଧୀଙ୍କ ଜୀବନରେ ଅଳ୍ପ କେତେଥର ଘଟିଛି ସତ ମାତ୍ର କଂଗ୍ରେସ ମହଲରେ ଏହା ପ୍ରଥମ ଥର ଥିଲା ।

ଏହି ବୈଠକରେ ଆଉ ଗୋଟିଏ ପ୍ରସ୍ତାବ ଗାନ୍ଧୀ ଆଣିଥିଲେ ଯେ ଚାରିଅଣା ପଇସା କଂଗ୍ରେସ ଚାନ୍ଦା ପରିବର୍ତ୍ତିରେ ସୂତା ଦେଇ କଂଗ୍ରେସ ସଭ୍ୟ ହେବେ । ଏ ପ୍ରସ୍ତାବ ସପକ୍ଷରେ ବହୁତ ଅଧିକ ସଭ୍ୟ ମତ ଦେଲେ ଏବଂ ତାହା ମଞ୍ଜୁର ହେଲା । କିନ୍ତୁ ଏଭଳି ସୂତା ଚାନ୍ଦା ନ ଦେଲେ ସେମାନେ ନିର୍ବାଚିତ ପଦରୁ କାଟ ଖାଇଯିବେ, ଏପରି ଦଣ୍ଡବିଧାନ ଧାରା ବିରୁଦ୍ଧରେ କେତେ ଜଣ ସଭ୍ୟ ଖୁବ୍ କଡ଼ା ପ୍ରତିବାଦ କରି ପ୍ରସ୍ତାବ ଭୋଟ ନିଆଗଲାବେଳେ ସଭା ଛାଡ଼ି ଚାଲିଯାଇ ଥିଲେ । ଗାନ୍ଧୀ ଏହା ଦେଖି ସେ ଦଣ୍ଡ ବିଧାନ ଧାରାଟିକୁ ଉଠାଇ ନେଇ ଯାଇଥିଲେ । ଜୋର କରି ପ୍ରସ୍ତାବ ପାସ୍ କରିବାରେ ସେ କୌଣସି ଲାଭ ଦେଖି ନ ଥିଲେ ।

ଜବାହରଲାଲ ଲେଖିଛନ୍ତି "ଗାନ୍ଧୀ ସତ୍ୟାଗ୍ରହ ଯୁଦ୍ଧ କ୍ଷେତ୍ରରେ ଅଦ୍ୱିତୀୟ ଥିଲେ, ତାଙ୍କର ଅନ୍ତରାତ୍ମା ତାଙ୍କୁ ଠିକ୍ ବାଟ ବତାଇ ଥିଲା ମାତ୍ର ଯେଉଁମାନଙ୍କ ସଙ୍ଗେ ସେ କାମ କରୁଥିଲେ

ସେମାନଙ୍କୁ ଏ କାର୍ଯ୍ୟଟା ନୂଆ ଥିଲା । ତାଙ୍କ ଭିତରେ ଏକଥା ପଶୁ ନ ଥିଲା । ଇଂରାଜି ପାଠର ପ୍ରଭାବରେ ସେମାନେ ପାଶ୍ଚାତ୍ୟ ବିଚାରରେ ବୁଡ଼ି ରହୁଥିଲେ । ଶିକ୍ଷିତ ଲୋକଙ୍କ ଗାନ୍ଧୀ ପ୍ରୀତି କମି ଯାଇଥିଲା । ସେମାନେ କୁଆଡ଼ ପରେ ଗାନ୍ଧୀ ପଛରେ ଗୋଡ଼ାଇ ଅଛନ୍ତି । ପୁଣି ଖଣ୍ଡି ପଛରେ ପଡ଼ଯାନ୍ତି ।”

ଏହି ବୈଠକରେ ଗାନ୍ଧୀ କଂଗ୍ରେସର ଦୁଇଦଳଙ୍କ ଭିତରେ ଏକ ରଫା କରେଇ ଦେଇଥିଲେ । ମାତ୍ର ନିଜେ ସ୍ୱରାଜ୍ୟ ଦଳ କାମରୁ ଅଲଗା ରହୁଥିଲେ ।

( ୪୪ )

ଏପ୍ରିଲ ମାସ ପ୍ରଥମ ସପ୍ତାହରେ ଗାନ୍ଧୀ 'ୟଂ ଇଣ୍ଡିଆ' ଓ 'ନବଜୀବନ' ଦୁଇ ଖବର କାଗଜର ଭାର ପୁଣି ହାତକୁ ନେଲେ । ପ୍ରଥମ ସଂଖ୍ୟାରେ ସେ ଲେଖିଥିଲେ, “ମତେ ଯେ ଭଗବାନ୍ କାହିଁକି ମୁକ୍ତ କରି ଅଛନ୍ତି ତାଙ୍କର ଉଦ୍ଦେଶ୍ୟ ମୁଁ ସ୍ପଷ୍ଟ ବୁଝି ନାହିଁ । ସେ ବାଗରେ କ୍ଷୀଣ ଆଲୋକରେଖା ମାତ୍ର ଦେଖୁଛି । ଯେତିକି ଆଲୋକ ପାଉଛି ସେତିକି ଆଗକୁ ମାଡ଼ୁଛି । ପାଠକଙ୍କୁ ମୋର ନୂଆ କିଛି କହିବାର ନାହିଁ । ମୁଁ ଭାବିଥିଲି ଯେ ସ୍ୱରାଜ୍ୟ ଆଇନରେ ଖଲାସ ହୋଇ ମୁଁ ଦେଶର ସେବା କରିବି, ମାତ୍ର ତାହା ହେଲା ନାହିଁ । ଆମକୁ ସେହି ସ୍ୱରାଜ୍ୟ ହାସଲ କରିବାକୁ ହେବ । ମୋର ନୂଆ କାର୍ଯ୍ୟକ୍ରମ ନାହିଁ, ସେହି ପୁରୁଣା କାର୍ଯ୍ୟକ୍ରମରେ ମୋର ଅଟଳ ବିଶ୍ୱାସ ଅଛି, ବରଂ ବିଶ୍ୱାସ ବେଶୀ ଉଜ୍ଜ୍ୱଳ ହୋଇଛି । ଯେତେବେଳେ ଆକାଶ ବେଶୀ ଅନ୍ଧାର ହୁଏ ସେତେବେଳେ ମନୁଷ୍ୟର ଜ୍ଞାତ ବା କାର୍ଯ୍ୟକ୍ରମର ବଳ ପରୀକ୍ଷା ହୋଇଥାଏ ।”

ସେହି ସମୟରେ ଜଣେ ପାଦ୍ରୀ ଗାନ୍ଧୀଙ୍କୁ କେତେକ ପ୍ରଶ୍ନ ଖ୍ରୀଷ୍ଟ ଧର୍ମ ସମ୍ବନ୍ଧରେ ଏହି ଅପତ୍ତି ଉଠାଇଥିଲେ, “ଖ୍ରୀଷ୍ଟ

ଉପରେ ଜୋର ଦେବାଦ୍ୱାରା କାମ୍ଭୁର ଲୋକଙ୍କର, ଯେଉଁମାନେ ସବଳ ନୁହନ୍ତି, ଯେଉଁମାନେ କୌଣସି ରକମରେ ମୁଠାଏ ଖାଇ ଚଳୁଥାନ୍ତି, ତାଙ୍କର ଉପକାର ହେବ, ଉଚ୍ଚ ଶ୍ରେଣୀ ବା ସବଳ ଶ୍ରେଣୀଙ୍କର କ୍ଷତି ହେବ । ସେମାନେ ଅନେକ ଦେଶୀ ମିଲ୍ କଳ-କାରଖାନାରେ ପଇସା ଖଟାଇଛନ୍ତି ତାହା ବୁଡ଼ିଯିବ ।"

ଗାନ୍ଧୀ ତାର ଉତ୍ତରରେ ଲେଖିଥିଲେ, "ଏ ଚିଠି ଖଣ୍ଡି ବଡ଼ କରୁଣ, କିନ୍ତୁ ମୋର ଇଚ୍ଛା ପତ୍ରପ୍ରେରକ ଯେ ସବୁ ଆଶଙ୍କା କରୁଛନ୍ତି ତାହା ସତ ହଉ । ଯେତେବେଳେ ମିଲ୍ କଳ ବା ମିଲ୍ ବ୍ୟବସାୟର ଅଂଶୀଦାରମାନଙ୍କର ଧ୍ୱଂସଦ୍ୱାରା ଜାତିର ମଙ୍ଗଳ ହେବ ଓ ଭାରତର ମୁକ୍ତି ହେବ । ଏତକ ସେମାନେ ବୁଝି ପାରିବେ । ସେତେବେଳେ ସେମାନେ ଦେଖିବେ ମଧ୍ୟବିତ୍ତ ଶ୍ରେଣୀଙ୍କ ଭିତରେ ଏକ ନୂତନ ଜାଗରଣ ଅସିଛି, ସେମାନେ ଗ୍ରାମରେ ଗଢ଼ ମରୁଥିବା ଗୃହଶିଳ୍ପଙ୍କୁ ଶୋଷି ନିଜକୁ ଆଉ ପୋଷୁ ନ ଥିବେ । ବରଂ ଯେତେବେଳକୁ ଗୃହଶିଳ୍ପ ସବଳ ହୋଇଥିବେ ଏବଂ ଗୃହଶିଳ୍ପ ଯାହା ତିଆରି କରି ପାରୁ ନ ଥିବେ, ସେ ସବୁ ଜିନିଷ ମଧ୍ୟବିତ୍ତ ଶ୍ରେଣୀ ଲୋକଙ୍କଠାରୁ ବଦଳେଇ ନେଉଥିବେ ଏବଂ ଏଭଳି ଗୃହଶିଳ୍ପଠାରୁ ମଧ୍ୟବିତ୍ତଶ୍ରେଣୀର ଲୋକେ ନିଜର ଭରଣ-ପୋଷଣ ପାଉଥିବେ । ଠିକ୍ଏ ବିଚାର କଲେ ପତ୍ରପ୍ରେରକ ବୁଝି ପାରିବେ, ସେ ଓ ତାଙ୍କ ଭଳି ସବୁ ଅଂଶୀଦାରମାନେ ଲୋକଙ୍କ ସଙ୍ଗେ ସହଯୋଗ ନ କଲେ, ଖଦୀ ବା ସୂତାକଣା କ'ଣ କଳକୁ ତଡ଼ି ପାରିବ ? ତଥାପି ପତ୍ରପ୍ରେରକ ଏତକ ଅଶ୍ୱାସନା ପାଇବେ ଯେ ଖଦଡ଼ ପ୍ରଥମେ ଗୋଟିଏ ଛୋଟ ବିଦେଶୀ ଲୁଗା ପଛରେ ଗୋଡ଼େଇଛି । ତାକୁ ତଡ଼ି ସାରିଲେ ଦେଶୀ କଳକଥା ଉଠିବ । ......... ମୁଁ ଏତକ ପତ୍ରପ୍ରେରକଙ୍କୁ ସାନ୍ତ୍ୱନା ଦେବା ପାଇଁ କହୁଛି ।

ସେ ସିନା ପ୍ରକୃତ ଅବସ୍ଥା ନ ବୁଝି, ମିଲ୍ ବା ମଧ୍ୟବିତ୍ତ ଲୋକଙ୍କର ଏ ଅବସ୍ଥା ଦେଖି ତାହା ନ ବୁଝି ଚିଠିଟି ଲେଖି ପକାଇଛନ୍ତି । ନଚେତ୍ ତାଙ୍କ ଚିଠିଟିରୁ ସ୍ପଷ୍ଟ ଜଣାପଡୁଛି ଯେ ତାଙ୍କର ହୃଦୟ ବୋଲି ଜିନିଷଟି ନାହିଁ । ସେ କହୁଛନ୍ତି, 'ନିମ୍ନସ୍ତର ଲୋକଙ୍କର ଆତ୍ମସମ୍ମାନ ଜ୍ଞାନ ନାହିଁ ଏବଂ ଯେ କୌଣସି ମତେ ମୁଠାଏ ଖାଇ ଚଳି ଯାଉଛନ୍ତି' ଏହାର ଅର୍ଥ କଣ ? ସେ କ'ଣ ନିଶ୍ଚୟ କରି ଜାଣନ୍ତି ଯେ ନିମ୍ନସ୍ତର ଲୋକେ ଆତ୍ମସମ୍ମାନ କ'ଣ ଜାଣନ୍ତି ନାହିଁ ? ତାଙ୍କର କ'ଣ ଅନୁଭବ ଶକ୍ତି ନାହିଁ ? ତାଙ୍କୁ କ'ଣ କଡ଼ା କଥା ବାଧେ ନାହିଁ ? ସେ କେଉଁ କଥାରେ ନିମ୍ନ ? ସେମାନେ ଧନରେ ନିମ୍ନ ହୋଇ ପାରନ୍ତି; ତାଙ୍କ ଗରିବ ଅବସ୍ଥା ପାଇଁ ଆମେ ମଧ୍ୟବିତ୍ତ ଶ୍ରେଣୀର ଦାୟୀ ନୋହୁଁ କି ? ପତ୍ରପ୍ରେରକଙ୍କୁ ମୁଁ ଜଣାଇ ଦିଏ ଯେ ସେହି ନିମ୍ନସ୍ତରର ଲୋକେ ଯେ କୌଣସି ମତେ ମୁଠାଏ ଖାଇ ଚଳି ବି ପାରୁ ନାହାନ୍ତି; ବରଂ ଅଧିକାଂଶ ଅଧାପେଟ ଖାଇ ଭୋକ ଉପାସରେ ଦିନ କଟାଉଛନ୍ତି । ଅଜାଣତେ ମଧ୍ୟବିତ୍ତଶ୍ରେଣୀ ସେହି ନିମ୍ନସ୍ତରଙ୍କ ଶୋଷଣରେ ସାହାଯ୍ୟ କରି ଆସୁଛନ୍ତି ଏବଂ ଆଜି ଯଦି ସେହି ନିମ୍ନସ୍ତର ଲୋକଙ୍କ ପାଇଁ ମଧ୍ୟବିତ୍ତ ଶ୍ରେଣୀ ଲୋକେ ସ୍ୱେଚ୍ଛାରେ କିଛି କ୍ଷତି ସହନ୍ତି ତେବେ ସେ ଶୋଷଣ ପାଇଁ ଯଥାର୍ଥ ପ୍ରାୟଶ୍ଚିତ୍ତ ହେବ । ଆମେ ବଡ଼ ବା ଉଚ୍ଚରେ ଅଛୁଁ ଏହି ଯେ ଅହଙ୍କାର ଏବଂ ତା ଫଳରେ ତଥାକଥିତ ନିମ୍ନସ୍ତର ଲୋକଙ୍କ ଦୁଃଖ କଷ୍ଟ ପ୍ରତି ଆମର ହୃଦୟ ଯେ ପଥର ହୋଇ ଯାଉଛି, ସେଥିପାଇଁ ଆଜି ସ୍ୱରାଜ୍ୟ ପାଖକୁ ଆଗେଇ ପାରୁ ନାହୁଁ ଏବଂ ଏହି ମୃତସଞ୍ଜୀବନୀ ଚରଖାରେ ଉନ୍ନତି ହେଉ ନାହିଁ । ମୋର ଅନୁରୋଧ ପତ୍ରପ୍ରେରକ ମହାଶୟ ଜନସାଧାରଣଙ୍କ ଦୃଷ୍ଟିରୁ ଚିନ୍ତା କରନ୍ତୁ ଏବଂ ନିଜେ ଚରଖା ଧରି ତାଙ୍କର ହତଭାଗ୍ୟ ଦେଶବାସୀଙ୍କ ସଙ୍ଗେ ଆପଣାର ଐକ୍ୟ ଜଣାଇ ଦିଅନ୍ତୁ ।"

( ୪୫ )

ଏହି ସମୟରେ ଦେଶରେ ସ୍ଥାନେ ସ୍ଥାନେ ହିନ୍ଦୁ ମୁସଲମାନଙ୍କର ମାରପିଟ ହାଣକାଟ ଦେଖାଯାଉଥିଲା । ଗାନ୍ଧୀ ଏଥିରେ ବଡ଼ ଚିନ୍ତିତ ଥାଆନ୍ତି ଓ ନୂଆ ଲେଖା ଲେଖି କରୁଥାନ୍ତି । ଶେଷରେ ସେ ନିରୁପାୟ ହୋଇ ସେପ୍ଟେମ୍ବର ୧୮ ତାରିଖ ଦିନ ଏକୋଇଶ ଦିନ ଉପବାସ ଆରମ୍ଭ କରିଥିଲେ । ଦିଲ୍ଲୀଠାରେ ମୌଲନା ମହମ୍ମଦଅଲ୍ଲୀଙ୍କ ଘରେ ଗାନ୍ଧୀ ଉପବାସ କଲେ । ଉପବାସ ଆରମ୍ଭ ହେବାରୁ ଗାନ୍ଧୀ ଏକ ବିବୃତି ଦେଇଥିଲେ, "ଏ କେତେଦିନର ଘଟଣା ମୋର ଅସହ୍ୟ ହେଲଣି । ମୋର ଅସହାୟ ଅବସ୍ଥା ଅଧିକ ଅସହ୍ୟ ହେଉଛି । ମୋର ଧର୍ମ ମୋତେ ଶିଖାଉଛି ଯେ ଯେତେବେଳେ କୌଣସି ଦୁଃଖ-କଷ୍ଟର ନିବାରଣ କରି ପାରିବ ନାହିଁ, ସେ ଉପବାସ କରି ପ୍ରାର୍ଥନା କରିବ । ମୋର ପ୍ରିୟତମ ଆତ୍ମୀୟଙ୍କ ପାଇଁ ମୁଁ ଏହି ବାଟ ଧରିଛି । ମୁଁ ଯାହା କହୁଛି ବା ଲେଖୁଛି, ସେଥିରେ ଏ ଦୁଇ ସମ୍ପ୍ରଦାୟ ଏକତାବଦ୍ଧ ହେଉ ନାହାନ୍ତି । ତେଣୁ ମୁଁ ଆଜିଠାରୁ ଏକୋଇଶ ଦିନ ପାଇଁ ଉପବାସ ଆରମ୍ଭ କରୁଛି । ଅକ୍ଟୋବର ୭ ତାରିଖରେ ଉପବାସ ସରିବ । କେବଳ ପାଣି ବା ଲୁଣ ପାଣି ମୁଁ ପିଇ ପାରିବି । ଏହା ଏକାଧାରରେ ପ୍ରାୟଶ୍ଚିତ୍ତ ଓ ପ୍ରାର୍ଥନା ।

"ପ୍ରାୟଶ୍ଚିତ୍ତ ସ୍ୱରୂପ, ଏ ବିଷୟ ସାଧାରଣଙ୍କୁ ଜଣାଇବାରେ ଦରକାର ନ ଥିଲା, କିନ୍ତୁ ଏହି ଆଶାରେ ମୁଁ ଜଣାଇ ଦେଉଛି ଯେ ଏହା ଉଭୟ ହିନ୍ଦୁ ମୁସଲମାନଙ୍କ ପାଇଁ ଏକ ଫଳପ୍ରଦ ପ୍ରାର୍ଥନା ହେବ । ସେମାନେ ଏକାଠି ମିଳିମିଶି କାମ କରି ଆସିଛନ୍ତି, ସେମାନେ ଏବେ ଏ ଆତ୍ମହତ୍ୟାରୁ ନିଜକୁ ରକ୍ଷା କରନ୍ତୁ । ସବୁ ସମ୍ପ୍ରଦାୟର ନେତାମାନଙ୍କୁ ମୋର ବିନୀତ ଅନୁରୋଧ, ଏପରି କି ଇଂରେଜ ଲୋକଙ୍କୁ ମଧ୍ୟ ଅନୁରୋଧ ଯେ, ସେମାନେ ଏକାଠି ବସି

ଏ କଳକୁ ବନ୍ଦ କରନ୍ତୁ । ଏ କଳ ଧର୍ମ ତଥା ମାନବ ଜାତି ପ୍ରତି ଏକ ନିନ୍ଦାର ବିଷୟ ହେଲଣି ମତେ ଲାଗୁଛି ଭଗବାନଙ୍କୁ ସତେ ଯେମିତି ତାଙ୍କ ସିଂହାସନରୁ ତଡ଼ ଦିଆ ହୋଇଛି । ତାଙ୍କୁ ପୁଣି ଆମ ହୃଦୟରେ ପ୍ରତିଷ୍ଠା କରିବା ।”

ଏହି ଉପବାସ ଭିତରେ ଗାନ୍ଧୀ ଅନେକଗୁଡ଼ିଏ ବିବୃତି ଦେଇଥିଲେ ଏବଂ ନେତାମାନଙ୍କ ସଙ୍ଗେ ଅନେକ ଆଲୋଚନା ହୋଇଥିଲା । ତନ୍ମଧ୍ୟରୁ ଦୁଇଟି ଆଲୋଚନା ଏଠାରେ ଦିଆଗଲା ।— ପ୍ରଥମଟି ମହାଦେବ ଭାଇ ପ୍ରଭୃତି ଆଶ୍ରମବାସୀଙ୍କ ସଙ୍ଗେ ଏବଂ ଦ୍ୱିତୀୟଟି ମୌଲାନା ସୌକତ ଅଲ୍ଲୀଙ୍କ ସଙ୍ଗେ ହୋଇଥିଲା । ଦୁଇଟିଯାକ ଆଲୋଚନା ମହାଦେବ ଭାଇଙ୍କ ଲେଖାରୁ ଅନୁବାଦ କରି-ଯାଇଅଛି :—

ଗାନ୍ଧୀ ପଚାରିଥିଲେ; “ବମ୍ବେ ଓ ଚୌରିଚୌରା ଘଟଣାମାନଙ୍କ ପାଇଁ ମୁଁ ଯେଉଁ ଉପବାସ କରିଥିଲି ତାର ଅର୍ଥ ତମେ ବୁଝିଛ ? ମୁଁ (ମହାଦେବ ଦେଶାଇ) ଜବାବ ଦେଇଥିଲି ହଁ;

ତେବେ ତମେ ଏ ଉପବାସର ଅର୍ଥ କାହିଁକି ବୁଝି ପାରୁ ନାହଁ ?

“ସେଠିତ ଆପଣ ନିଜେ ଏକ ଅପରାଧ କରିଛନ୍ତି ବୋଲି ତାହାର ପ୍ରାୟଶ୍ଚିତ୍ତ ସ୍ୱରୂପ ଏକ ଉପବାସ କରିଥିଲେ । ଏଠି ସେସବୁ କିଛି ନାହିଁ । ଏଠି କୌଣସି ଅପରାଧ ନାହିଁ ଯାହାକୁ ଆପଣ ଉପରକୁ ଟାଣିନେବେ ।”

“ବୁଝିବାର କି ଭୁଲ ! ଚୌରିଚୌରାରେ ଯେଉଁମାନେ ଦୋଷୀଥିଲେ ସେମାନେ ମତେ ଦେଖି ନ ଥିଲେ, ମତେ ଜାଣି ବି ନ ଥିଲେ । ଏଠିତ ଦୋଷୀମାନେ ମତେ ଜାଣନ୍ତି ଏବଂ ଭଲପାନ୍ତି ବୋଲି ମୁହଁରେ କହନ୍ତି ।”

"ମୁଁ କହୁଥିଲି ସୌକତ ଅଲି ଓ ମହମ୍ମଦ ଅଲି ଏ କାର୍ଯ୍ୟକୁ ନିଭାଇବାକୁ ଯଥାପରେନାସ୍ତି ଉଦ୍ୟମ କରୁଛନ୍ତି କିନ୍ତୁ ଅବସ୍ଥା ତାଙ୍କର ଆୟତ୍ତର ବାହାରେ। କେତେକ ଲୋକଙ୍କ ପାଖରେ ତାଙ୍କ କଥା ପହଞ୍ଚୁ ନାହିଁ ? ଆପଣଙ୍କ ବାଣୀ ବି ପହଞ୍ଚୁ ନାହିଁ, ଆପଣଙ୍କ ବାଣୀ ବି ପହଞ୍ଚିବ ନାହିଁ। ସେମାନେ ବା କରିବେ କଣ ? ଆପଣ ବା କରିବେ କଣ ? ଅବସ୍ଥା ସୁଧୁରିବାକୁ ସମୟ ଲାଗିବ।"

ଗାନ୍ଧୀ ଜବାବ ଦେଇଥିଲେ :—"ସେଇଟି ସ୍ୱତନ୍ତ୍ର କଥା; ସୌକତ ଅଲି ଓ ମହମ୍ମଦ ଅଲି ତ ଶୁଦ୍ଧ ସୁନା। ମୁଁ ଜାଣେ ସେମାନେ ପ୍ରାଣପଣେ ଚେଷ୍ଟା କରୁଛନ୍ତି। କିନ୍ତୁ ଅବସ୍ଥା ଆଜି ଆମର ଆୟତ୍ତରେ ନାହିଁ; ଛଅମାସ ତଳେ ଆମ ହାତମୁଠାରେ ଥିଲା। ମୁଁ ଜାଣେ ମୋ ଉପବାସରେ ସେମାନେ ବିଚଳିତ ହୋଇ ପଡ଼ିବେ। ପରୋକ୍ଷଭାବରେ ଏ ଉପବାସ ତାଙ୍କ ମନକୁ ପ୍ରଭାବିତ କରିବ। କିନ୍ତୁ କାହାର ମନକୁ ପ୍ରଭାବିତ କରିବା ପାଇଁ ମୁଁ ଏ ଉପବାସ କରିନାହିଁ।

ମୁଁ ଜବାବ ଦେଇଥିଲି, "ସେତ ଭଲ କଥା। କିନ୍ତୁ କେଉଁ ଦୋଷ ପାଇଁ ଆପଣ ଏ ପ୍ରାୟଶ୍ଚିତ୍ତ କରୁଛନ୍ତି ତାହା ମୋତେ ବୁଝାଇ ଦିଅନ୍ତୁ।"

"ମୋର ଦୋଷ କାହିଁକି ? ମୁଁ ହିନ୍ଦୁଙ୍କ ସଙ୍ଗେ ବିଶ୍ୱାସଘାତକତା କରିଛି ବୋଲି ଅଭିଯୋଗ କରି ପାର। ମୁସଲମାନଙ୍କ ବିପଦରେ ବନ୍ଧୁ ହେବାକୁ ମୁଁ ହିନ୍ଦୁମାନଙ୍କୁ ଡାକ ଦେଇଥିଲି। ମୁସଲମାନର ଧର୍ମପୀଠର ରକ୍ଷା ପାଇଁ ଧନପ୍ରାଣ ଉତ୍ସର୍ଗ କରିବାକୁ ମୁଁ ହିନ୍ଦୁଙ୍କୁ କହୁଥିଲି। ଆଜି ବି ମୁଁ ତାଙ୍କୁ ଅହିଂସା ପାଳିବା ପାଇଁ କହୁଛି, ଶତ୍ରୁକୁ ନ ମାରି ନିଜେ ମରି ଆପଣା କଳିକୁ ନିଷ୍ପତ୍ତି କରିବାକୁ କହୁଛି। କିନ୍ତୁ ଫଳ କ'ଣ ହୋଇଛି ? କେତେ ମନ୍ଦିର ଭଙ୍ଗା ହେଲଣି ? କେତେ ଭଉଣୀ ତାଙ୍କର ଦୁଃଖ କାହାଣୀ ମତେ

ଶୁଣାଇଲେଣି ? ମୁଁ କାଲି ଡକଟର୍‌ଜୀଙ୍କୁ କହୁଥିଲି ଯେ ମୁସଲମାନ ଗୁଣ୍ଡାଙ୍କୁ ହିନ୍ଦୁ ସ୍ତ୍ରୀମାନେ ପ୍ରାଣରେ ଭୟ କରୁଛନ୍ତି । ଅନେକ ସ୍ଥାନରେ ସେମାନେ ଏକୁଟିଆ ବାହାରିବାକୁ ଡରୁଛନ୍ତି । ମୁଁ ଜଣଙ୍କଠାରୁ ଖଣ୍ଡେ ଚିଠି ପାଇଛି । ତାଙ୍କ ଝିଅଙ୍କ ଉପରେ ଯେ ଅତ୍ୟାଚାର ହୋଇଛି ତାହା ମୁଁ କେମିତି ସହିବି ? ସବୁ ଧୈର୍ଯ୍ୟର ସହିତ ସହିଯିବାକୁ ମୁଁ ବର୍ତ୍ତମାନ ହିନ୍ଦୁଙ୍କୁ କମିତି କହିବି ? ମୁଁ ତାଙ୍କୁ ଜବାବ ଦେଇଥିଲି ଯେ ମୁସଲମାନମାନଙ୍କ ସଙ୍ଗେ ବନ୍ଧୁତାର ଫଳ ଭଲ ହେବ । ଫଳ କିଛି ହେଉ ନ ହେଉ ମୁଁ ମୁସଲମାନଙ୍କ ସଙ୍ଗେ ବନ୍ଧୁତା କରିବାକୁ କହୁଥିଲି । ଆଜି ସେ ଜବାବକୁ କାର୍ଯ୍ୟରେ ଦେଖାଇବା ମୋର ଶକ୍ତିର ଅତୀତ, ମହମ୍ମଦଅଲ୍ଲୀ ଓ ସୌକତଅଲ୍ଲୀଙ୍କ କ୍ଷମତାର ମଧ୍ୟ ବାହାର । ମୋ କଥା ଶୁଣୁଛି କିଏ । ତଥାପି ମୁଁ ହିନ୍ଦୁଙ୍କୁ କହିବି ମର, ମାର ନାହିଁ । ମୋର ଜୀବନ ଦେଲେ ମୁଁ ସେତିକି କହିପାରିବି । ମୋର ନିଜ ଉଦାହରଣ ଦେଖାଇ ମୁଁ ତାଙ୍କୁ ମରିବାର ବାଟ ଦେଖାଇ ପାରିବି । ଆଉ ଅନ୍ୟ ବାଟ ନାହିଁ । ............ମୁଁ ଅସହଯୋଗ ଆରମ୍ଭ କରିଥିଲି । ମୁଁ ଆଜି ଦେଖୁଛି, ଅହିଂସାକୁ ଛାଡ଼ି-ଦେଇ ଲୋକେ ଆପଣା ଆପଣା ଭିତରେ ଅସହଯୋଗ କରୁଛନ୍ତି, ଏହାର କାରଣ କଅଣ ? ଏକମାତ୍ର କାରଣ, ମୁଁ ନିଜେ ପୂର୍ଣ୍ଣ ଅହିଂସ ନୁହେଁ । ମୁଁ ଯଦି ପୂର୍ଣ୍ଣ ଅହିଂସା ପାଇଥାନ୍ତି ତେବେ ଆଜି ଗୃହଯୁଦ୍ଧେ ମୁଁ ଯେ ହିଂସା ଦେଖୁଛି ତାହା ନ ଥାନ୍ତା । ତେଣୁ ମୋର ଉପବାସ ଏକ ପ୍ରାୟଶ୍ଚିତ୍ତ । ମୁଁ କାହାରିକୁ ଦୋଷ ଦେଉ ନାହିଁ । ମୁଁ କେବଳ ଆପଣାକୁ ଦୋଷ ଦେଉଛି । ଲୋକଙ୍କୁ ନିବେଦନ କରିବା ଶକ୍ତି ମୋର ଚାଲିଯାଇଛି । ମୁଁ ହାରିଛି, ମୁଁ ଅସହାୟ, ମୋର ପ୍ରାର୍ଥନା ପ୍ରଭୁଙ୍କ ପାଖରେ ଜଣାଇବି । ଈଶ୍ୱର ମୋ ପ୍ରାର୍ଥନା ଶୁଣିବେ, ଆଉ କେହି ଶୁଣିବେ ନାହିଁ ।"

ଯେ ମୁହୂର୍ତ୍ତରୁ କଥାର ସୂତ୍ର ମାଡ଼ ଅସିଲା, ମୁଁ ତାକୁ ସମ୍ଭାଳି ତ ପାରିଲି ନାହିଁ, ଯଉ ବା ଯେ କଥା କହୁଛି କଣ, ମୁଁ ଶେଷରେ ପଚାରିଲି "ବାପୁ" ପ୍ରାୟଶ୍ଚିତ୍ତ କଣ ଏହି ପ୍ରକାର କରିବାକୁ ହେବ ? ଅନ୍ୟ ପ୍ରକାର କଣ ନାହିଁ ? ଆମ ଧର୍ମରେ ଉପବାସ ବିଧି ଅଛି କି ?" ଗାନ୍ଧୀ ଜବାବ ଦେଇଥିଲେ "ନିଶ୍ଚୟ । ପୂର୍ବକାଳରେ ଋଷିମାନେ କ'ଣ କରୁଥିଲେ ? ସେମାନେ ଯେ ତପସ୍ୟା କରୁଥିଲେ,' ସେ ପ୍ରାୟଶ୍ଚିତ୍ତ କରୁଥିଲେ, ଶହ, ଶହ ବର୍ଷ ଧରି ଗୁମ୍ଫାରେ ବସି କରୁଥିଲେ, ସେତେବେଳେ ସେ କ'ଣ ଖାଉଥିଲେ ? ପାର୍ବତୀ ଶିବଙ୍କୁ ପାଇବା ପାଇଁ ତପସ୍ୟା କରିଥିଲେ; ସେତେବେଳେ ଖାଦ୍ୟ ବା ଫଳ ତ ଦୂରର କଥା ଗଛର ପତ୍ର ବି ଖାଉ ନ ଥିଲେ । ହିନ୍ଦୁଧର୍ମ ତପସ୍ୟା ଓ ପ୍ରାର୍ଥନାରେ ପୂର୍ଣ୍ଣ ରହିଛି । ଅଗଠାରୁ ମୁଁ ଏଥର ବେଶୀ ଗଭୀର ଚିନ୍ତା କରି ଏ ଉପବାସ କରୁଛି । ମୁଁ ଯେତେବେଳେ ଅସହ-ଯୋଗର କଳ୍ପନା କରିଥିଲି ଏବଂ ତାହା ଆର କରିଥିଲି, ସେତେବେଳେ ଏହିପରି ଏକ ଉପବାସ ମୋ ଭାଗ୍ୟରେ ଘଟିବ ବୋଲି ମୁଁ ଜାଣିଥିଲି । ସେତେବେଳେ ମୁଁ ନିଜକୁ ପଚାରୁଥିଲି,, 'ମୁଁ ଏ ଭୟଙ୍କର ଅସ୍ତ୍ର ଧରେଇ ଦେଉଛି । ଯଦି ତାର ଅପବ୍ୟବହାର ହୁଏ, ମୋର ଜୀବନ ଦେଇ ତାର ପ୍ରାୟଶ୍ଚିତ୍ତ କରିବାକୁ ହେବ ।' ଆଜି ସେ ମୁହୂର୍ତ୍ତ ଆସିଥିବା ପରି ଲାଗୁଛି । ପୂର୍ବ ଉପବାସମାନଙ୍କରେ ଉଦ୍ଦେଶ୍ୟ ସସୀମ ଥିଲା । ଏଥର ଉଦ୍ଦେଶ୍ୟ ଅସୀମ ଏବଂ ତା ପଛରେ ଅସୀମ ପ୍ରେମ ରହିଛି । ମୁଁ ତ ଆଜି ସେହି ପ୍ରେମସାଗରରେ ବୁଡ଼ୁଛି ।"

( ୪୬ )

ଉପରୋକ୍ତ କଥାବାର୍ତ୍ତାର ପରଦିନ ମୌଲାନା ମହମ୍ମଦ ଅଲି ଆସି ପହଞ୍ଚିଥିଲେ । ଗାନ୍ଧୀ ଆଗରୁ କହିଥିଲେ ଯେ ଯଦି ସୌକତ ଅଲି ବା ମହମ୍ମଦ ଅଲି ତାଙ୍କୁ ବୁଝାଇ ଦେଇ ପାରିବେ ଯେ, ଏ ଉପବାସ

କରିବା ନୀତି ଦୃଷ୍ଟିରୁ ଠିକ୍ ନୁହଁ ତେବେ ଗାନ୍ଧୀ ଉପବାସ କରିବେ ନାହିଁ । ବହୁ ଦୀର୍ଘ ସମୟ କଥାବାର୍ତ୍ତା ହୋଇଥିଲା । କିନ୍ତୁ ଗାନ୍ଧୀଙ୍କ ବୁଝାଇ ପାରି ନ ଥିଲେ । ସେ ଆଲୋଚନାକୁ କେତୋଟି ପ୍ରଶ୍ନୋତ୍ତର ଭଳି ଦିଆଗଲା ।

ଚୌଧୁରୀ ଅଳି କହିଲେ, "ନାହିଁ, ନାହିଁ, ଲୋକେ ତ ଆପଣଙ୍କ କଥା ଶୁଣିଥିଲେ ଶୁଣୁ ବି ଥିଲେ । ଆପଣଙ୍କ ନ ଥିବାବେଳେ ଅନ୍ୟ ପରାମର୍ଶଦାତା ଯୁଟିଗଲେ । ଲୋକେ ସେମାନଙ୍କ କଥାରେ ପଡ଼ି ଗିରଫ ବାଟ ଧରିଲେ । ମୋର ବିଶ୍ୱାସ ସେମାନେ ଆପଣା ଭୁଲ ବୁଝିବେ । ସାଧାରଣ ଲୋକଙ୍କ ମନରୁ ଏ ବିଷକୁ ହରିନେବା ପାଇଁ ଆପଣ ଅନେକ କଷ୍ଟ କରିଛନ୍ତି । ମୁଁ ହୋଇଥିଲେ ଏ ସବୁ ଗୋଳମାଳ ପାଇଁ ବ୍ୟସ୍ତ ହୁଅନ୍ତି ନାହିଁ । ମୁଁ ଯାଇ ତାଙ୍କୁ ଏତିକି କହନ୍ତି—'ବଦମାସ୍, ତମର ମନଇଚ୍ଛା ବଦମାସି କର । ଭଗବାନ ଅଛନ୍ତି, ନିଜ ନିଜକୁ ହାଣି କାଟ କିନ୍ତୁ ଭଗବାନଙ୍କୁ ମାରି ପାରିବ ନାହିଁ ।' ତେଣୁ ଆପଣ ଭଗବାନଙ୍କ କାମରେ ବାଧା ଦିଅନ୍ତୁ ନାହିଁ । ଆପଣ ଭଗବାନଙ୍କ ସଙ୍ଗେ ଲଢ଼ୁଛନ୍ତି । ଭଗବାନଙ୍କୁ ବାଟ ଛାଡ଼ି ଦିଅନ୍ତୁ ।"

ଗାନ୍ଧୀ ଅସ୍ଥିର ହୋଇ କହି ଉଠିଲେ, "ମୁଁ ଭଗବାନଙ୍କ ସଙ୍ଗେ ଲଢ଼ୁଛି ? ମୋଠାରେ ଯଦି ଗର୍ବ ବା ପ୍ରତିରୋଧ ଅଛି, ତେବେ ତମ କଥା ସତ୍ୟ । ଭାଇ, ଏ ଉପବାସ ତ କ୍ରମାନ୍ୱୟେ ହୃଦୟର ପ୍ରାର୍ଥନାର ଫଳ———ମୁଁ ରାତି ୩ଟା ବେଳୁ ଉଠିଥାଏ ଏବଂ ମୋର କର୍ତ୍ତବ୍ୟ କ'ଣ ବୋଲି ଭଗବାନଙ୍କୁ ପଚାରୁଥାଏ । ସେପ୍ଟେମ୍ବର ସତର ତାରିଖ ଦିନ ବିଜୁଳି ଭଳି ଜବାବ ମିଳି ଯାଇଥିଲା ! ମୁଁ ଦୋଷ କରିଥିବି ତ ଭଗବାନ କ୍ଷମା ଦେବେ । ଯାହା ମୁଁ କହୁଛି ଯାହା ମୁଁ କରୁଛି, ସବୁ ଭଗବାନଙ୍କଠାରେ ଭର ରଖି କରିଛି ।

କରୁଛୁ , ଏବଂ ତାହା ମଧ୍ୟ ଏକ ବିଶ୍ୱାସୀ ମୁସଲମାନଙ୍କ ଘରେ କରୁଛୁ । ମୋ ଧର୍ମ କହୁଛି, ଯେ କଷ୍ଟ ସହି ପାରିବ ସେହି ଭଗବାନଙ୍କୁ ପ୍ରାର୍ଥନା କରି ପାରିବ । ଉପବାସ ଓ ପ୍ରାର୍ଥନା ମୋ ଧର୍ମରେ ସାଧାରଣ ଉପଦେଶ । କିନ୍ତୁ ଇସଲାମ ଧର୍ମରେ ଏଭଳି ତପସ୍ୟା ଅଛି ବୋଲି ମୁଁ ଜାଣେ । ପୈଗମ୍ବରଙ୍କର ଜୀବନୀରେ ମୁଁ ପଢ଼ିଛି ମହମ୍ମଦ ରସୁଲ ଅନେକ ସମୟରେ ଉପବାସ ରହି ପ୍ରାର୍ଥନା କରୁଥିଲେ ଏବଂ ତାଙ୍କୁ ଅନୁକରଣ କରିବାକୁ ଅନ୍ୟମାନଙ୍କୁ ମନା କରୁଥିଲେ । କାହିଁକି ସେ ଅନ୍ୟମାନଙ୍କୁ ମନା କରୁଥିଲେ ଏହି ପ୍ରଶ୍ନ କେହି ତାଙ୍କୁ ପଚାରିବାରୁ ସେ ଉତ୍ତର ଦେଇଥିଲେ, "ମୁଁ ଐଶ୍ୱରିକ ଖାଦ୍ୟ ଖାଉଛି" ସେ ଉପବାସ ଓ ପ୍ରାର୍ଥନା ଭିତରେ ସେ ତାଙ୍କର ହୃଦୁଠାରୁ ବଡ଼ ବଡ଼ କାମ ଯାକ କରିଛନ୍ତି । ସେ ଆରାମଆୟୁସ୍‌ରେ ରହି କୋରାଣବାଣୀ ଶୁଣୁ ନ ଥିଲେ । ରାତି ରାତି ଚେଇଁ ରହି ଉପବାସ କରି ପ୍ରାର୍ଥନା କରୁଥିଲେ । ରାତିରେ ଯେତେବେଳେ ସେତେବେଳେ ଉଠି ପ୍ରାର୍ଥନା କରୁଥିଲେ । ତେବେ ଯାଇ ତାଙ୍କ ପାଖରେ ଭଗବଦ୍ ବାଣୀ ପହଞ୍ଚୁଥିଲା ।............ ସୌକତ, ତମେ ମୋ ସ୍ୱାସ୍ଥ୍ୟ କଥା ପଚାରୁଛ, ମୋ ଦେହ ଉପରେ କି ପ୍ରଭାବ ପଡ଼ିବ ପଚାରୁଛ ? ଯଦି ମୁଁ ଏତେ ଦୁର୍ବଳ ଯେ ମୁଁ ସହି ପାରିବି ନାହିଁ, ତେବେ ମୁଁ ମରିଯାଇ ପାରେ । ଏ ଦେହର ମୂଲ୍ୟ କ'ଣ ? ମୁଁ ଜେଲ୍‌ରେ ମହମ୍ମଦ ରସୁଲଙ୍କର ସାଥୀମାନଙ୍କ ଜୀବନୀ ପଢ଼ିଥିଲି । ଗୋଟିଏ କାହାଣୀ ଅଛି । ହଜରତ ଓମର୍ ଜଣଙ୍କୁ ପାଞ୍ଚଶହ ଦିନାର ସ୍ୱର୍ଣ୍ଣମୁଦ୍ରା ଉପହାର ପଠାଇଥିଲେ । ସେ ଲୋକଟି ତାକୁ ଛୁଇଁବାକୁ ନାରାଜ ହେଲା, କାନ୍ଦିବାକୁ ଲାଗିଲା । କାହିଁକି କାନ୍ଦୁଛି ବୋଲି ତା ସ୍ତ୍ରୀ ପଚାରିବାରୁ ସେ କହିଥିଲା; 'ଅସତ୍ୟ ମାୟା ମୋ ପାଖକୁ ଆସିଛି, ମୋର ସେ କ'ଣ ହେବ ।' ହଜରତ

ଜମର୍‌ଙ୍କ ଭଳି ଶୁଦ୍ଧଚିତ୍ତ ମଣିଷ ସେ ଉପହାର ପଠାଇଥିଲେ, କିନ୍ତୁ ତଥାପି ସେ ତାହାଠାରୁ ଦୂରରେ ରହିଥିଲେ. କାରଣ ତାହା ଥିଲା ନଶ୍ୱର ଅସତ୍ୟ । ଏ ଜୀବନ ସେହିପରି । ଭଗବାନଙ୍କର ଯଦି ଦର୍କାର ଥିବ, ଏ ଦେହକୁ ସେ ରଖିବେ । ଯଦି ତାଙ୍କର କାମ ସରି ଯାଇଛି ତେବେ ଏ ଦେହ ଧ୍ୱଂସ ଯାଉ । ବରଂ ମୁଁ ତ ବିଚାରିଛି ଏ ଉପବାସ ଫଳରେ ଯଦି ଅବସ୍ଥା ନ ସୁଧୁରିବ ତେବେ ମୁଁ ଚିରକାଳ ପାଇଁ ଉପବାସ କରିବି ............ ।”

ଏମିତି ଅନେକ କଥା ବାଡ଼ି ହେଲା । ସୌକତ ଅଲି ଅଭିଭୂତ ହୋଇ ପଡ଼ିଥିଲେ । ସେ ଉଠିଗଲା ବେଳେ କହିଥିଲେ, "ତିନୋଟି ଜିନିଷ ପାଇଁ ମୁଁ ପ୍ରତ୍ୟହ ପ୍ରାର୍ଥନା କରେ । ୧—ହିନ୍ଦୁ ମୁସଲମାନ ଏକତା, ୨—ଇସ୍‌ଲାମ ଓ ଭାରତ ସ୍ୱାଧୀନ ହେବାପାଏ ମୋ ମା ବଞ୍ଚିରହୁ ଏବଂ ୩—ମହାତ୍ମା ଗାନ୍ଧୀଙ୍କ ଉଦ୍ଦେଶ୍ୟ ପୂର୍ଣ୍ଣ ହେଉ ।”

ଏ ଉପବାସର ଖବର ସବୁଅଡ଼େ ବିଜୁଳି ପରି ଖେଳିଗଲା । ସବୁଅଡ଼ୁ ନେତାମାନେ ଆପଣା ମନକୁ ଆସି ଜମା ହୋଇଥିଲେ । ଗୋଟିଏ ଐକ୍ୟ ସମ୍ମିଳନୀ ବସାଇ ସ୍ଥାୟୀ ଭାବରେ କିପରି କାମ ହେବ ଓ ସମ୍ପ୍ରଦାୟମାନଙ୍କ ଭିତରେ ସଦ୍‌ଭାବ ସ୍ଥାପିତ ହେବ ତାର ଆଲୋଚନା କରୁଥିଲେ । ସ୍ଥାୟୀ କମିଟିମାନ ଗଢ଼ା ହୋଇଥିଲା ଏବଂ କଳି କଜିଆ ଅନେକ ପରିମାଣରେ ଥଣ୍ଡା ପଡ଼ି ଯାଇଥିଲା ।

ଗାନ୍ଧୀ ସୁରୁଖୁରୁରେ ଏକୋଇଶ ଦିନ ପାର ହୋଇଥିଲେ । ଉପବାସ ସରିବା ଦିନର ଆଗରୁ ଲେଖିଥିଲେ, "ଆଜି ମୋ ତପସ୍ୟା ଓ ପ୍ରାର୍ଥନାର କୋଡ଼ିଏ ଦିନ ପୂରିଲା । ଏବେ ମୁଁ ଶାନ୍ତ ଜଗତରୁ ଯାଇଁ ଅଶାନ୍ତ ଜଗତରେ ପଶିବି । ସେ କଥା ମୁଁ ଯେତିକି ଭାବୁଛି ସେତିକି ନିଜକୁ ଅସହାୟ ବୋଧ କରୁଛି । ଐକ୍ୟ ସମ୍ମିଳନୀ ଯେ କାର୍ଯ୍ୟ ଆରମ୍ଭ କରିଛନ୍ତି ସେ କାମକୁ ମୁଁ ପୂରା କରିବି ବୋଲି

ଅନେକ ଆଶା କରୁଥିଲେ । ଅନେକେ ଆଶା କରୁଛନ୍ତି ଯେ ରାଜନୈତିକ ଦଳମାନଙ୍କୁ ମଧ୍ୟ ମୁଁ ମିଳେଇ ଦେଇ ପାରିବି । କିନ୍ତୁ ମୁଁ ଜାଣେ ମୁଁ କିଛି କରିପାରିବି ନାହିଁ । ଭଗବାନ ସବୁ କରି ପାରନ୍ତି ।" ଉପବାସ ପରେ ନଭେମ୍ବର ଶେଷକୁ ବମ୍ବେଠାରେ ସବୁଦଳର ନେତାମାନଙ୍କର ଏକ ସଭା ହୋଇଥିଲା । ସେଥିରେ ଗାନ୍ଧୀ ଯୋଗ ଦେଇଥିଲେ । ସେଠାରେ ମଧ୍ୟ ସାମ୍ପ୍ରଦାୟିକ ସଦ୍‌ଭାବ କିପରି ସ୍ଥାପିତ ହେବ ସେ ସମ୍ବନ୍ଧରେ ଆଲୋଚନା ହୋଇଥିଲା ।

## ( ୪୭ )

ଏଥର କଂଗ୍ରେସ ବେଲଗାଁଓଠାରେ ବସିଥିଲା । ଗାନ୍ଧୀଙ୍କୁ ସଭାପତି ବାଛୁଥିଲେ । ଜୱାହରଲାଲ ଲେଖିଛନ୍ତି, "ଗାନ୍ଧୀ ତ ସବୁଦିନେ ସଭାପତିଙ୍କ ଉପରେ ସଭାପତି ଥିଲେ । ତାଙ୍କୁ ସଭାପତି ବାଛିବା ଏକ ହାସ୍ୟାସ୍ପଦ କଥା ହୋଇଥିଲା ।"

ବେଲଗାଁଓ କଂଗ୍ରେସରେ ଗାନ୍ଧୀ ଯେଉଁ ବକ୍ତୃତା ଦେଇଥିଲେ ତାହାର କେତେକ ଅଂଶ ନିମ୍ନରେ ଦିଆଗଲା,—"ମୁଁ ଆଇନ ଅମାନ୍ୟରେ ବିଶ୍ୱାସ କରେ କିନ୍ତୁ ଆମେ ଯେତେବେଳଯାଏ ବିଦେଶୀ ବସ୍ତ୍ର ବର୍ଜନ ପୂରା କରିବାର ଶକ୍ତି ଅର୍ଜନ କରିପାରୁ ନାହୁଁ, ସେତେବେଳଯାଏ ସ୍ୱରାଜ୍ୟ ପାଇଁ ଆଇନ ଅମାନ୍ୟ କରିବା ସମ୍ଭବ ହେବ ନାହିଁ ।...... ହିଂସା ଯୁଦ୍ଧ ବଦଳରେ ବିଦେଶୀ ବସ୍ତ୍ର ବର୍ଜନ ଏକ କାର୍ଯ୍ୟକାରୀ ଫଳପ୍ରଦ ଉପାୟ ବୋଲି ମୋର ମତ । ଯେମିତି ଗାଳି ଦେବା, ଉତ୍ୟକ୍ତ କରିବା, ମିଛ କହିବା, ଆଘାତ କରିବା ଓ ଖୁନ୍ କରିବା ଏ ସବୁ ହିଂସାର ଚିହ୍ନ ସେମିତି ବିନୟ, ଭଦ୍ରଆଚରଣ, ସତ କହିବା ଇତ୍ୟାଦି ଅହିଂସାର ଚିହ୍ନ । ବିଦେଶୀ ବସ୍ତ୍ର ବର୍ଜନ ମଧ୍ୟ ମତେ ସେହିପରି ଗୋଟିଏ ଅହିଂସାର ଚିହ୍ନ ଭଳି ଲାଗେ । ଅସ୍ପ-

ଶସ୍ତ୍ର ସମ୍ଭୃତ ବଳାତ୍କାରାତ୍ମକ କାମର ଉଦ୍ଦେଶ୍ୟ ଗ୍ରହ ଦେବା । କିନ୍ତୁ ସେ ଗ୍ରହ କ୍ରୋଧ ଓ ଦ୍ୱେଷର ଗ୍ରହ, ପାଗଳାମିର ଗ୍ରହ । କିନ୍ତୁ ମୁଁ କହେ ହିଂସା କାର୍ଯ୍ୟଠାରୁ ଅହିଂସା କାମ ବେଶୀ ଗ୍ରହ ଦେଇଥାଏ । କାରଣ ଅହିଂସା କାମ ସଦ୍‌ଭାବ ଓ ବିନୟର ଫଳ । ବିଦେଶୀ ବସ୍ତ୍ର ବର୍ଜନ ଏହିପରି ଏକ ଗ୍ରହ ଦେଇଥାଏ । ·········ଇଂଲଣ୍ଡର ଭାରତରେ ପ୍ରଧାନ ସ୍ୱାର୍ଥ ତାର ଲୁଗା ବେପାର । ଅନ୍ୟ ଯାହା କିଛି କରି ଭାରତର ଗ୍ରାମୀକୁଳଙ୍କୁ ଧ୍ୱଂସ କରାଯାଇଛି ସେ ସମସ୍ତଠାରୁ ଏ ବିଦେଶୀ ବସ୍ତ୍ର ବେପାର ଗ୍ରାମୀକୁଳଙ୍କ ବେଶୀ ସର୍ବନାଶ କରିଛି । ଗ୍ରାମୀଙ୍କ ହାତରୁ ଏକ ପୂରକ ଧନ୍ଦା ଛଡ଼େଇ ନେଇ ତାଙ୍କୁ ବହୁତ ପରିମାଣରେ ଅଳସୁଆ କରି ଦେଇଛି । ତେଣୁ ଗ୍ରାମୀର ବଞ୍ଚିବା ପାଇଁ ବିଦେଶୀ ବସ୍ତ୍ର ବର୍ଜନ ଏକାନ୍ତ ଲୋଡ଼ା । ଅତଏବ ଆମର କାମ ହେଉଛି, ଗ୍ରାମୀ ଯେପରି ଶସ୍ତା ଚକ୍‌ମକିଆ ବିଦେଶୀ ଲୁଗା ନ କଣେ ସେ ଦଗରେ ତାକୁ ପ୍ରବର୍ତ୍ତେଇବା; ପୁଣି ତାକୁ ତୁଳାଭଣା ସୂତାକଟା ଇତ୍ୟାଦି ଶିଖେଇବା ଓ ସୂତାକୁ ଗାଁ ତନ୍ତୀଠୁ ବୁଣାଇନେଇ ସେ ଖଦଡ଼କୁ ପିନ୍ଧେଇବା ଏବଂ ତା ଫଳରେ ବିଲାତି ଲୁଗା ସଙ୍ଗେ ସଙ୍ଗେ ଦେଶୀ କଳଲୁଗାକୁ ମଧ୍ୟ ଛାଡ଼ିବାକୁ ତାଙ୍କୁ ଶିଖେଇବା ।

ହାତରେ ସୂତକଟା ଓ ହାତରେ ଲୁଗାବୁଣାଦ୍ୱାରା ଅର୍ଥାତ୍ ଖଦଡ଼ ଜରିଆରେ ବିଦେଶୀ ଲୁଗା ଛାଡ଼ିବା ଫଳରେ, କେବଳ ଯେ ଗରିବ ଗ୍ରାମୀର ପଇସା ବଞ୍ଚିବ ସେତିକି ନୁହେଁ, ସେହି ଖଦଡ଼ କାମ କର୍ମୀମାନଙ୍କୁ ଖୁବ୍ ଉଚ୍ଚଦରର ଏକ ସେବା କାମ ଯୁଟେଇ ଦେବ । ଏ କାମ ଜରିଆରେ ଗ୍ରାମବାସୀଙ୍କ ସଙ୍ଗେ କର୍ମୀଙ୍କର ପ୍ରତ୍ୟକ୍ଷ ସମ୍ବନ୍ଧ ହେବ । ଖଦୀକାମ ସାହାଯ୍ୟରେ ଅମେ ଗ୍ରାମୀ ମୂଲିଆଙ୍କୁ ପ୍ରକୃତ ରାଜନୀତି ଶିକ୍ଷା ଦେଇ ପାରିବୁ । ସେମାନଙ୍କୁ ଆତ୍ମନିର୍ଭରଶୀଳ ଓ ସ୍ୱାବଲମ୍ବୀ ହେବାକୁ ଶିକ୍ଷା ଦେଇ ପାରିବ । ······ମୁଁ ଇଂଲଣ୍ଡର

ଲୁଗାବେପାରକୁ ଖଦ୍ଦର ଓ ଅନ୍ୟାୟ ବୋଲି କହିବାର କାରଣ ଭାରତର କୋଟି କୋଟି ଗୃହୀଙ୍କୁ ଧ୍ୱଂସ କରି ଏ ବେପାର ଆରମ୍ଭ ହୋଇଥିଲା ଏବଂ ଏବେ ମଧ୍ୟ ଚାଲିଯାଉଛି । ଗୋଟାଏ ଅନ୍ୟାୟରୁ ମଣିଷ ଯାଇ ଆଉ ଗୋଟାକରେ ପଡ଼େ, ସେମିତି ଏ ଅନ୍ୟାୟ ବ୍ୟବସାୟ ଯୋଗୁଁ ଇଂଲଣ୍ଡ ଅନ୍ୟ ଅନେକ ଅନ୍ୟାୟ କରୁଛି ।...... ଖଦୀ ଜରିଆରେ ବିଦେଶୀ ବସ୍ତ୍ର ବର୍ଜନର ସଫଳତାର କେବଳ ଯେ ଏକ ବଡ଼ ରାଜନୈତିକ ପରିଣାମ ହେବ ସେତିକି ନୁହେଁ, ଏହା କି ପୁରୁଷ କି ସ୍ତ୍ରୀ ଭାରତର ସବୁଠାରୁ ଗରିବ ଲୋକଙ୍କୁ ସେମାନଙ୍କର ନିଜର ବଳର ପରିଚୟ ଦିଆଇ ଦେବ ଏବଂ ଭାରତର ସ୍ୱରାଜ୍ୟ ଲଢ଼େଇରେ ସୈନିକ କରିଦେବ । × × × ×

"ମୁଁ ଜଣେ କଂଗ୍ରେସର ସେବକ, ମୁଁ କଂଗ୍ରେସକୁ ଦୃଢ଼ ରଖିବାକୁ ଚାହେଁ; ତେଣୁ ମୁଁ ଅସହଯୋଗକୁ ବନ୍ଦ ରଖିବାକୁ ପରାମର୍ଶ ଦେଉଛି । କାରଣ ମୁଁ ଦେଖୁଛି ଦେଶ ସେଥିପାଇଁ ପ୍ରସ୍ତୁତ ନୁହେଁ । ମାତ୍ର ଯେ ପର୍ଯ୍ୟନ୍ତ ସରକାର ଏମିତି ଥିବ, ମୁଁ ନିଜେ ବ୍ୟକ୍ତିଗତଭାବରେ ଅସହଯୋଗ ଛାଡ଼ି ପାରିବ ନାହିଁ । ମୋ ଆଖିରେ ଅସହଯୋଗ ଏକ କୌଶଳ ନୁହେଁ, ଏହା ମୋର ଏକ ଧର୍ମସୂତ୍ର । ଅସହଯୋଗ ଓ ଆଇନ ଅମାନ୍ୟ ଏ ଦୁଇଟି ସତ୍ୟାଗ୍ରହ ଗଛର ଦୁଇଟି ଅଲଗା ଅଲଗା ଡାଳ । ସତ୍ୟାଗ୍ରହ ମୋର କଳ୍ପବୃକ୍ଷ । ସତ୍ୟାଗ୍ରହର ଅର୍ଥ ସତ୍ୟକୁ ଖୋଜିବା ଏବଂ ଭଗବାନ ହେଉଛନ୍ତି ସତ୍ୟ । ଅହିଂସାର ଆଲୋକ ମୋତେ ସେ ସତ୍ୟର ବାଟ ଦେଖାଏ । ସ୍ୱରାଜ୍ୟ ମଧ୍ୟ ମୋର ସେହି ସତ୍ୟର ଏକ ଅଂଶ ।"......

ଏହି କଂଗ୍ରେସରେ ଗାନ୍ଧୀଙ୍କ ଉଦ୍ୟମରେ ସ୍ୱରାଜ୍ୟ ଦଳଙ୍କ ସଙ୍ଗେ ଏକ ରଫା ହୋଇଥିଲା ଏବଂ ଦୁଇଦଳକୁ ମିଳେଇ ମିଶାଇ କାମରେ ଲଗାଇବାପାଇଁ ଗାନ୍ଧୀ ଏକମାତ୍ର ଉପଯୁକ୍ତ ସାରଥି ଥିଲେ ।

( ୪୮ )

ଏକେତ ଗାନ୍ଧୀ ଅହିଂସା ବାଣୀ ପ୍ରଚାର କରିବାପାଇଁ ଭାରତବର୍ଷରେ ଚାରିଆଡ଼େ ବାରମ୍ବାର ବୁଲୁଥିଲେ, ଏବେ କଂଗ୍ରେସର ସଭାପତି ହୋଇ ଦେଶରେ କଂଗ୍ରେସ କାମରେ ବର୍ଷ ଅରମ୍ଭରୁ ଗସ୍ତରେ ବାହାରିଥିଲେ କଂଗ୍ରେସର ସଭାପତି କେବଳ ଯେ ସମିତିର ବୈଠକରେ ମଝିରେ ମଝିରେ ସଭାପତି ହୋଇ ବସିବ, ଏବଂ ଆଉ କିଛି କରିବ ନାହିଁ, ଗାନ୍ଧୀଙ୍କର ସେଭଳି ମତ ନ ଥିଲା; ତାଙ୍କ ବିଚାରରେ କଂଗ୍ରେସ ସଭାପତି ଦେଶର ସବୁଠାରୁ ବଡ଼ ସେବକ ହେବ, କଂଗ୍ରେସ ପାଇଁ ସବୁଠୁ ବେଶୀ ଖଟିବ । ଗାନ୍ଧୀଙ୍କ ପରଠାରୁ ଏଣିକି ଏହା ଏକପ୍ରକାର ଗୋଟିଏ ପ୍ରଥା ହୋଇଗଲାଣି ଯେ ଏ କଂଗ୍ରେସ ସଭାପତିମାନେ ସବୁ ପ୍ରଦେଶରେ ବୁଲି କଂଗ୍ରେସ କାମର ପ୍ରଚାର ଦିଗରେ ଉଦ୍ୟମ କରନ୍ତି ।

ଗାନ୍ଧୀଙ୍କର ପ୍ରଥମ ଗସ୍ତ ଦକ୍ଷିଣ ଭାରତରେ ପଡ଼ିଥିଲା । ସେତେବେଳକୁ ତ୍ରିବାଙ୍କୁଡ଼ରାଜ୍ୟର ଭାଇକମ୍ ମନ୍ଦିର ସତ୍ୟାଗ୍ରହ ଚାଲିଥାଏ । ସେ ମନ୍ଦିରର ଚାରିପାଖର ରାସ୍ତାରେ ସୁଦ୍ଧା ହରିଜନମାନଙ୍କୁ ଯିବାକୁ ଦିଆଯାଉ ନ ଥିବାରୁ ଏ ସତ୍ୟାଗ୍ରହ ଆରମ୍ଭ ହୋଇଥାଏ । ସନାତନୀମାନଙ୍କର ଜୁଲୁମକୁ ସେଠା ରାଜସରକାର ପୁଲିସ ସାହାଯ୍ୟ ଦେଇ ସମର୍ଥନ କରୁଥିଲେ । ଏକଆଡ଼େ ରାଜସରକାର ଆଉ ଏକଆଡ଼େ ସନାତନୀ ଦଳ, ଏ ଦୁହିଁଙ୍କ ବିରୁଦ୍ଧରେ ଏକାଠି ଲଢ଼େଇ ଚାଲିଥିବାରୁ ଖୁବ୍ ସାବଧାନତାର ସହିତ ଅର୍ଥାତ୍ ପୁରାପୁରି ଅହିଂସ ଭାବରେ ସତ୍ୟାଗ୍ରହକୁ ଚଳାଇବାକୁ ଗାନ୍ଧୀ ଆଗରୁ ପରାମର୍ଶ ଦେଇଥାନ୍ତି । ୧୯୨୫ ଗସ୍ତରେ ସେ ଭାଇକମ୍‌ଠାରେ କିଛିଦିନ ରହିଥିଲେ ଏବଂ ସତ୍ୟାଗ୍ରହୀମାନଙ୍କୁ ଅନେକ ପରାମର୍ଶ ଦେଇଥିଲେ । ୧୯୨୫ ମାର୍ଚ୍ଚ ମାସ ୧୯ ତାରିଖରେ ୟଂ ଇଣ୍ଡିଆରେ ଗାନ୍ଧୀ ଲେଖିଛନ୍ତି :—

"ଫ୍ରିଡ଼ମ୍ ସତ୍ୟାଗ୍ରହ ଆଶ୍ରମର କର୍ମୀମାନଙ୍କ ସହିତ ମୋର ଯେ ସମସ୍ତ ଆଳାପ ହୋଇଥିଲା ତାର ବିବରଣ ମୁଁ ପ୍ରାୟ ଅକ୍ଷରେ ଅକ୍ଷରେ ତଳେ ଦେଉଛି । ଏହି ଆଶ୍ରମରେ ପଚିଶଜଣ ଉପରେ ସେବକ ଅଛନ୍ତି । ଫ୍ରିଡ଼ମ୍ ମନ୍ଦିର ଆଗରେ ବାଟ ବନ୍ଦ ବୋଲି ଗୃହଠା ବାଡ଼ ଦଆ ହୋଇଛି । ତାହାର ଆଗରେ ସତ୍ୟାଗ୍ରହୀମାନେ ଠିଆ ହୋଇ ରହନ୍ତି ବା ବସି ରହନ୍ତି । ସେଠି ବସିଥିବାବେଳେ ସେମାନେ ସୂତା କାଟନ୍ତି ଏବଂ ଛଅଘଣ୍ଟା କାଳ ସେଠାରେ ବସନ୍ତି, ଛଅଘଣ୍ଟା ପରେ ଆଉ ଏକ ଦଳ ଯାଇ ତାଙ୍କୁ ବଦଳି କରନ୍ତି । ମୋ ସଙ୍ଗେ କର୍ମୀମାନଙ୍କର ଯାହା କଥାବାର୍ତ୍ତା ହୋଇଛି ତାହା ସାଧାରଣ ଲୋକେ ଜାଣିବା ଉଚିତ ଏବଂ ସବୁ ସତ୍ୟାଗ୍ରହୀଙ୍କ ପ୍ରତି ତାହା ପ୍ରଯୁଜ୍ୟ ବୋଲି ତାହା ମୁଁ ନିମ୍ନରେ ପ୍ରକାଶ କଲି :—

"ତମର ସଫଳତା ତମ ନିଜ ଉପରେ ନିର୍ଭର କରେ, ବାହାର ସାହାଯ୍ୟ ଉପରେ ନିର୍ଭର କରେ ନାହିଁ । ତମ ଭିତରେ ଯଦି ସାର ନ ଥିବ ବା ଅଳ୍ପ କିଛି ଥିବ ତେବେ ମୋ ଆସିବା ଯୋଗୁଁ ଏ ସାମୟିକ ଉପଦେଶରୁ କିଛି ଲାଭ ହେବ ନାହିଁ । ମୁଁ ଯଦି ନ ଥାନ୍ତି ବା ଏଠା ସାଧାରଣ ଲୋକଙ୍କର ଉତ୍ସାହ ନ ଥାନ୍ତା, ତଥାପି ତମେ ଯଦି ଆପଣା କର୍ତ୍ତବ୍ୟ ବୁଝି କାମ କରୁଥାନ୍ତ, ତେବେ କୌଣସି କଥାର ଅଭାବ ହୁଅନ୍ତା ନାହିଁ ।

......ଯାହାହେଉ ତମକୁ କଅଣ କରିବାକୁ ହେବ ତାହା ତମକୁ ମୁଁ ଅଳ୍ପରେ କହି ଦେଉଛି । ତମ କାମର ଗୋଟିଏ ରାଜନୈତିକ ଦିଗ ଅଛି । ସେଟିକୁ ତୁମେ ଭୁଲିଯାଅ, ଏ ଲଢ଼େଇର ରାଜନୈତିକ ଫଳ ଅଛି ମାତ୍ର ଆହା ତମର ଦରକାର ନାହିଁ । ସେପରି ନ କଲେ ତମେ ଠିକ୍ ଫଳ ପାଇବ ନାହିଁ, ରାଜନୈତିକ

ଲଭ ମଧ୍ୟ ହେବ ନାହିଁ । ······ଏ ଲଢ଼େଇ ହିନ୍ଦୁମାନଙ୍କ ପାଇ ଏକ ଧର୍ମର କଥା ।

ଆମେ ହିନ୍ଦୁଧର୍ମକୁ ଏକ ସବୁଠାରୁ ବଡ଼ କଳଙ୍କରୁ ମୁକ୍ତ କରିବାକୁ ଚାହୁଁଛୁ । ଏହି ଲଢ଼େଇଦ୍ୱାରା ମନ୍ଦିରର ଗୃହପାଣି ବାଟ ଅସ୍ପୃଶ୍ୟମାନଙ୍କ ପାଇଁ ଖୋଲି ଦେବାର ଯେ ଉଦ୍ୟମ ଚାଲିଛି, ସେ ଉଦ୍ୟମ କେତେ ସହଜ ଲଢ଼େଇ । କେବଳ ରାସ୍ତା ଫିଟାଇବା କଥା ହୋଇଥାନ୍ତା ତ ମୁଁ ଏଥିରେ ମୁଣ୍ଡ ପୂରେଇ ନ ଥାନ୍ତି । ରାସ୍ତାତ ଖୋଲି- ଯିବା ଉଚିତ, ଖୋଲିବାକୁ ହେବ । କିନ୍ତୁ ଆମର ଅସଲ କାମ ସେଇଠାରୁ ଆରମ୍ଭ ହେବ । ଆମର ଲକ୍ଷ୍ୟ ତିବାଙ୍କୁଡ଼ ରାଜ୍ୟର ସବୁ ରାସ୍ତାଗୁଡ଼ିକ ଅସ୍ପୃଶ୍ୟ ମାନଙ୍କପାଇଁ ଖୋଲିଇ ଦେବା । କେବଳ ସେତିକି ନୁହେଁ, ମୋର ତ ଆଶା ଏହା ଫଳରେ ଅସ୍ପୃଶ୍ୟମାନଙ୍କର ଜୀବନର କିଛି ଦୁଃଖ କମିଯିବ ।······ଯୋର କରି ଏ କାମ କଲେ ତାହା ଆତ୍ମହତ୍ୟା ସମାନ ହେବ । ଆମକୁ ଏ ଲଢ଼େଇ ଅହିଂସା ବାଟରେ କରେଇବାକୁ ହେବ । ଅର୍ଥାତ୍ ନିଜେ ଦୁଃଖ ସହି ଲଢ଼ିବାକୁ ହେବ । ଏହାର ନାମ ସତ୍ୟାଗ୍ରହ, ଆମେ ନିଜେ କଷ୍ଟ ସହି ପ୍ରତିପକ୍ଷକୁ ତାହାର ଭୁଲ ବୁଝେଇ ପାରିବା । ଯେଉଁଠାରେ ବହୁଦିନର ସଂସ୍କାର ଜମି ଯାଇଛି, ଯେଉଁଟି ପୁଣି ଧର୍ମର ସମର୍ଥନ ଅଛି ବୋଲି ଧାରଣା କରିଛି, ସେଠି କେବଳ ଯୁକ୍ତିରେ କାମ ଚଳିବ ନାହିଁ । ଆମ ଯୁକ୍ତି ପଛରେ ଆମର ଦୁଃଖ କଷ୍ଟ ଆମକୁ ବଳ ଦେବ ଏବଂ ଏହି ଦୁଃଖ କଷ୍ଟ ଆମର ବିପକ୍ଷର ବୁଦ୍ଧିର ଦରଜା ଫିଟେଇ ଦେବ । ତେଣୁ ଆମେ ଏବେ ସ୍ଥିର କରିଛୁ ଯେ ଆମେ ଏ ଗୃହ ବାଡ଼ ଅଡ଼କୁ ଅଗେଇବା ଏବଂ ଯେଉଁଠି ବାଧା ପାଇବା ସେଇଠି ବସି ପଡ଼ିବା ଏବଂ ଦିନପରେ ଦିନ ପୁରା କାଟିଯିବା । ମୁଁ ଜାଣେ ଏହା କଠିନ । ଏବଂ ଏହାର ଫଳ ମନ୍ଥର ଗତିରେ ହେବ—କିନ୍ତୁ ତେମେ କ୍ଲାନ୍ତ ହୋଇ ବହିବ

ନାହିଁ 'ଆଜ କେତେଦିନ' କେବେ ମଧ୍ୟ ବିରକ୍ତ ହେବ ନାହିଁ । ଚର୍ଖା ଉପରେ ବସି ଯେଉଁ ପଞ୍ଚାକ ସୂତା କାଟୁଛନ୍ତି ସେମାନେ ଏ ଲଢ଼େଇରେ ଯେତିକି କାର୍ଯ୍ୟ କରୁଛନ୍ତି, ଯେଉଁମାନେ ଆଶ୍ରମରେ ରହୁଛନ୍ତି ସେମାନେ ବି ସେତିକି କାମ କରୁଛନ୍ତି । ଏ ଲଢ଼େଇ ପାଇଁ ସବୁ ପ୍ରକାର କାମ ସମାନ ଦରକାର । ଅତଏବ ଆଶ୍ରମ ପାଇଖାନା ସଫା କରିବା ଯେତେ ଦରକାରୀ କାମ ବାଟରେ ବସି ସୂତା କାଟିବା ମଧ୍ୟ ସେତିକି ଦରକାରୀ କାମ, ବୃଥା ଗଳ୍ପରେ ଆମେ ଯେପରି ଏକ ମୁହୂର୍ତ୍ତ ଅପବ୍ୟୟ ନ କରୁ ।"

ଏ ସତ୍ୟାଗ୍ରହ ପୂର୍ଣ୍ଣ ସଫଳ ହୋଇଥିଲା ଏବଂ ତ୍ରିବାଙ୍କୁଡ଼ ରାଜ୍ୟ ଭିତରେ ଅସ୍ପୃଶ୍ୟତା ନିବାରଣ ଦିଗରେ ଖୁବ୍ ସାହାଯ୍ୟ କରିଥିଲା । କେତେବର୍ଷ ପରେ ତ୍ରିବାଙ୍କୁଡ଼ ମହାରାଜା ହରିଜନମାନଙ୍କୁ ସମସ୍ତ ମନ୍ଦିରମାନ ଖୋଲିଦେଇ ହିନ୍ଦୁଧର୍ମରେ ଏକ ବିପ୍ଳବ ସୃଷ୍ଟି କରିଦେଲେ । ତାହାର ବୀଜ ସମ୍ଭବତଃ ଏହି ଭାଇକମ୍ ସତ୍ୟାଗ୍ରହରେ ପୋତା ହୋଇଥିଲା । ଭାଇକମ୍ ପରେ ଗାନ୍ଧୀ ତ୍ରିବାଙ୍କୁଡ଼ ଯାଇ ମହାରାଜାଙ୍କର ଅତିଥି ହୋଇଥିଲେ । ତାପରେ ମାଲବାର ଗସ୍ତ ମଧ୍ୟ କରିଥିଲେ । ଏ ଗସ୍ତ ଦକ୍ଷିଣ ଭାରତରେ ସନାତନୀ ଓ ସଂସ୍କାରକ ମଧ୍ୟରେ ସଦ୍‌ଭାବ ସ୍ଥାପନ କରିବାରେ ଖୁବ୍ ସାହାଯ୍ୟ କରିଥିଲା ।

( ୪୯ )

ଦକ୍ଷିଣଗସ୍ତ ପରେ ଗାନ୍ଧୀ ବଙ୍ଗଳାକୁ ଯାଇଥିଲେ । ବଙ୍ଗଳାର ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ସ୍ୱରାଜ୍ୟ ଦଳର ଜଣେ ପ୍ରଧାନ କର୍ତ୍ତା ଥାନ୍ତି । ସ୍ୱରାଜ୍ୟଦଳ ଖଦୀ ବା ଗଠନମୂଳକ କାମ କରୁଛିରେ କିଛୁ ନ କହୁଥିଲେ ମୁଦ୍ଧା ତାଙ୍କ କାର୍ଯ୍ୟ କର୍ମରେ ଖଦୀକାମ ଏକ ଗୌଣ-ସ୍ଥାନ ପାଉଥିଲା । ବେଲଗାଁଓ କଂଗ୍ରେସରେ ଗାନ୍ଧୀ ଖଦୀ ବୁଝାଇ

ଓ ସ୍ୱରାଜ୍ୟ ଦଳ ସଙ୍ଗେ ଏକ ସାଲିସ କରାଇବାରେ ସମର୍ଥ ହୋଇ-
ଥିଲେ ସୁଦ୍ଧା, ତାଙ୍କର ଇଚ୍ଛା ଥାଏ ସ୍ୱରାଜ୍ୟଦଳ ନେତାମାନଙ୍କୁ ପୁଣି
ଖଦୀ ଅଡ଼କୁ ଟାଣି ଆଣିବା । ସେହି ବର୍ଷରେ ବଙ୍ଗଳା ଗସ୍ତ-
ସମୟରେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସଙ୍ଗେ ବହୁତ ଆଲୋଚନା
କରୁଥିଲେ । ସେତେବେଳେ ଦେଶବନ୍ଧୁ ପୀଡ଼ିତ ଥାଇ ବିଶ୍ରାମ ନେଉ-
ଥାନ୍ତି । ଗାନ୍ଧୀ ତାଙ୍କ ସଙ୍ଗେ ଅନେକ ଦିନ କଟେଇଥିଲେ । ଦେଶ-
ବନ୍ଧୁଙ୍କ ମନ ଖଦୀ ଅଡ଼କୁ ଟାଣି ଆଣିବାକୁ ଗାନ୍ଧୀ ସଫଳ ହୋଇ
ଥିଲେ ବୋଲି କେତେ ଲେଖିଛନ୍ତି । କିନ୍ତୁ ଦେଶର ଦୁର୍ଭାଗ୍ୟକୁ
ଚିତ୍ତରଞ୍ଜନଙ୍କ ରୋଗ ବଢ଼ିଥିଲା ଏବଂ ଗାନ୍ଧୀ ବଙ୍ଗଳାରେ ଥାଉଁ ଥାଉଁ
ଜୁନମାସ ତା୧୬ରେ ଚିତ୍ତରଞ୍ଜନଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ମୃତ୍ୟୁ-
ପରେ ଗାନ୍ଧୀ ବଙ୍ଗଳାରେ ରହି ଚିତ୍ତରଞ୍ଜନଙ୍କ ସ୍ମୃତି ରଖିବା ପାଇଁ
ଦଶଲକ୍ଷ ଟଙ୍କାର ଏକ ପାଣ୍ଠି ସଂଗ୍ରହ କରିଥିଲେ ଏବଂ ବଙ୍ଗଳାର
ସ୍ୱରାଜ୍ୟ ଦଳକୁ ସୁସଙ୍ଗଠିତ କରି ତାକୁ ଦୃଢ଼ କରିବାରେ ସାହାଯ୍ୟ
କରିଥିଲେ । ଏହା ହେଲା ୧୯୨୫ ର କଥା ।

ଏହି ସମୟରେ ଗାନ୍ଧୀ କଂଗ୍ରେସର ସଭାପତି ପଦ ଇସ୍ତଫା
ଦେବାକୁ ବସିଥିଲେ କାରଣ ସ୍ୱରାଜୀମାନେ ଏକପଟେ ଗାନ୍ଧୀନୀତିର
ନିନ୍ଦାବାଦ କରୁଥିଲେହେଁ ଅନ୍ୟପଟେ ଗାନ୍ଧୀଙ୍କର ନେତୃତ୍ୱ ଚାହୁଁଥିଲେ ।
ଗାନ୍ଧୀଙ୍କ ନାଁ ନ ଧରି ଦେଶରେ କୌଣସି ଆନ୍ଦୋଳନ ଚଳାଇବା
ସମ୍ଭବ ନୁହେଁ ବୋଲି ସେମାନେ ବୁଝି ପାରିଥିଲେ । ଗାନ୍ଧୀ କିନ୍ତୁ ଏଭଳି
ନେତୃତ୍ୱ ନେବାକୁ ଖୁସି ପାଉ ନ ଥିଲେ ।

ତେଣୁ ସେ କଂଗ୍ରେସର ରାଜନୈତିକ କାମର ସମସ୍ତ ଭାର
ସ୍ୱରାଜୀମାନଙ୍କ ଉପରେ ପକାଇ ଦେବାକୁ ଇଚ୍ଛା କରୁଥିଲେ । ଅଗଷ୍ଟମାସ
ଶେଷକୁ ଗାନ୍ଧୀ ଏକ ଚିଠିରେ ଲେଖିଥିଲେ, "ମୁଁ ସାଧାରଣଲୋକଙ୍କ
ସଙ୍ଗେ ମୋ ଭାଗ୍ୟଡୋରକୁ ବାନ୍ଧି ଦେଇଛି । ଭାରତର ଶିକ୍ଷିତ

ସମାଜଙ୍କ ମତ ସଙ୍ଗେ ମୋର ମୌଳିକ ପ୍ରଭେଦ ରହୁଛି । ଏଣିକି ମୋ ଭଳି ଲୋକଦ୍ୱାରା କଂଗ୍ରେସ ପରିଚାଳିତ ହେବାଠାରୁ ପ୍ରାୟ ଭାରତବାସୀଙ୍କ ଦ୍ୱାରା ପରିଚାଳିତ ହେଉ, ଏବଂ କଂଗ୍ରେସ ତାଙ୍କର ହାତାକାନ୍ତରେ ରହୁ । ମୁଁ ସେଥିରେ ବାଧା ଦେବ ନାହିଁ । ମୁଁ ଅବଶ୍ୟ ଶିକ୍ଷିତ ସମାଜଙ୍କ ମତ ବଦଳେଇବାକୁ ଚାହେଁ, କିନ୍ତୁ କଂଗ୍ରେସର ନେତୃତ୍ୱ କରି ମୁଁ ତାହା କରିବାକୁ ଚାହୁଁ ନାହିଁ । ମୁଁ ସେମାନଙ୍କ ବାହରୁ ଧୁଁଇଗଲେ ଏବଂ କଂଗ୍ରେସ ସାହାଯ୍ୟରେ ଓ କଂଗ୍ରେସ ନାଁରେ କେବଳ ଗଠନମୂଳକ କାମରେ ଲାଗି ରହିଲେ ମୁଁ ସେମାନଙ୍କ ମତ ବଦଳେଇବାରେ ସବୁଠାରୁ ଭଲ ଉଦ୍ୟମ କରି ପାରିବି । ଅବଶ୍ୟ କଂଗ୍ରେସ ନାଁରେ ଗଠନମୂଳକ କାମ କରିବାକୁ ଶିକ୍ଷିତ ସମାଜ ମତେ ଯେପରିକି ଅନୁମତି ଦେବେ ମୁଁ ସେଠିକି କରିବି ।”

ଗାନ୍ଧୀ ଏହିପରି ରାଜନୈତିକ କ୍ଷେତ୍ରରୁ ଅଡ଼େଇ ହୋଇ ଯାଉଥିଲେ ମଧ୍ୟ, ସ୍ୱର୍ଗୀୟ ଚିତ୍ତରଞ୍ଜନଙ୍କର ମୃତ୍ୟୁ ପରେ ସ୍ୱରାଜ୍ୟ ଦଳ ଦୁର୍ବଳ ହୋଇ ଯାଇଥିଲା । ତାଙ୍କ ଭିତରେ ସାମ୍ପ୍ରଦାୟିକଭାବ ପଶି ଯାଇଥିଲା । ଲାଲଜୀ ଓ ମାଲବୀୟଜୀ ସେଥିରୁ ଅଲଗା ହୋଇ ଯାଇଥିଲେ ।

ଅଗଷ୍ଟମାସର ଶେଷଅଡ଼କୁ ଦୁଇ ଦିନ ପାଇଁ ଗାନ୍ଧୀ ଓଡ଼ିଶାକୁ ଆସିଥିଲେ । ସ୍ୱର୍ଗୀୟ ମଧୁବାବୁଙ୍କ ନିମନ୍ତ୍ରଣରେ ଆସି ତାଙ୍କର ଘରେ ଅତିଥି ହୋଇଥିଲେ । ମଧୁବାବୁଙ୍କଠାରେ “ଶ୍ରମର ମର୍ଯ୍ୟାଦା” ଦେଖି ଗାନ୍ଧୀ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଦରିଦ୍ର ମୋଚୀମାନଙ୍କ ଉନ୍ନତି ପାଇଁ ମଧୁବାବୁଙ୍କ ଚମଡ଼ା କାରଖାନା ଖୋଲିବା ଏବଂ ତାର ପଛରେ ନିଜର ଜୀବନର ବହୁତ ସମୟ ଓ ବହୁତ ଧନବ୍ୟୟ କରିବାର ଜାଣି ଗାନ୍ଧୀ ମଧୁବାବୁଙ୍କୁ ସମ୍ମାନ କରିବାକୁ ଆରମ୍ଭ କରିଥିଲେ ।

ଖ୍ରୀଷ୍ଟାନ୍ ପାଦ୍ରୀମାନଙ୍କ ସଙ୍ଗେ ଗାନ୍ଧୀଙ୍କର ଖୁବ୍ ଭାବ ଥାଏ । ସେ ଖ୍ରୀଷ୍ଟଧର୍ମକୁ ସମ୍ମାନ କରନ୍ତି । ଯୀଶୁଖ୍ରୀଷ୍ଟ ଓ ତାଙ୍କର ଉପଦେଶକୁ ସେ ଶ୍ରଦ୍ଧା ଓ ଭକ୍ତି କରନ୍ତି । ପାଦ୍ରୀମାନେ ଭାରତର ଗରିବ ଓ ମୂର୍ଖ ଲୋକଙ୍କର ସେବା କରନ୍ତି ବୋଲି ଗାନ୍ଧୀ ପାଦ୍ରୀମାନଙ୍କର କାମକୁ ପସନ୍ଦ କରୁଥାନ୍ତି ସତ, କିନ୍ତୁ ପାଦ୍ରୀମାନେ ସେସବୁ କାମ ନିଃସ୍ୱାର୍ଥ ଭାବରେ ନ କରି ଲୋକଙ୍କୁ ଭୁଲାଇ ଖ୍ରୀଷ୍ଟାନ୍ ଧର୍ମ ଆଡ଼କୁ ଟାଣି ନିଅନ୍ତି ବୋଲି ଗାନ୍ଧୀ ପାଦ୍ରୀମାନଙ୍କର ନିନ୍ଦା କରୁଥାନ୍ତି । ଏହି ସମୟରେ କଲିକତାର ପାଦ୍ରୀମାନେ ଗାନ୍ଧୀଙ୍କୁ ଡାକି ନେଇ ତାଙ୍କ ଏକ ବକ୍ତୃତା ଦିଆଇଥିଲେ । ସେହି ବକ୍ତୃତାରେ ଗାନ୍ଧୀ କହୁଁ କହୁଁ କହିଥିଲେ, "ଆପଣ ପାଦ୍ରୀମାନେ ଭାରତକୁ ଆସିଲାବେଳେ ଶୁଣିଥାନ୍ତି ଯେ ଭାରତବର୍ଷ ନାସ୍ତିକମାନଙ୍କର ଦେଶ, ମୂର୍ତ୍ତି ପୂଜକଙ୍କ ଦେଶ ଓ ସେଠା ଲୋକେ ଭଗବାନଙ୍କୁ ଜାଣନ୍ତି ନାହିଁ । ସବୁଠାରୁ ବଡ଼ ଜଣେ ଖ୍ରୀଷ୍ଟାନ୍ ଧର୍ମଗୁରୁ କହିଛନ୍ତି ଯେ ଭାରତ ଏଭଳି ଏକ ଦେଶ ଯେଉଁଠାରେ ସବୁ କଥା ଭଲ କିନ୍ତୁ ମଣିଷହିଁ ନାସ୍ତିକ ପାପାତ୍ମା । ଏକଥା ଦୁଇପଦ ମୋ ମନରେ ସବୁବେଳେ ବାଧୁଥାଏ । ସେ ଏପରି ନ ଲେଖିଥିଲେ ଭଲ ହୋଇଥାନ୍ତା । ମୁଁ ତ ଭାରତ ବର୍ଷରେ ବୁଲିଛି, କିନ୍ତୁ ମୋର ଅନୁଭୂତି ଏକଦମ୍ ଓଲଟା । ମୁଁ ଭାରତରୁ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ, ସତ୍ୟର ଅନୁସନ୍ଧାନରେ ବୁଲିଛି; ମୋ ମନରେ କୌଣସି ରକମ ଦ୍ୱେଷ ବା ପକ୍ଷପାତିତା ନ ରଖି ବୁଲିଛି । କିନ୍ତୁ ମୁଁ କେବେହେଁ କହି ପାରିବି ନାହିଁ ଯେ ଏହି ସୁନ୍ଦର ଦେଶରେ ଯେଉଁଠିରେ ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର ନଦୀମାନେ ବହି ଯାଉଅଛନ୍ତି, ସେ ଦେଶର ମଣିଷ ଏତେ ନୀଚ । ଭାରତବାସୀ ନୀଚ ନାସ୍ତିକ ନୁହଁ । ଆପଣ ଓ ମୁଁ ଯେପରି ସତକୁ ଖୋଜୁଛୁ, ସେ ବି ସେହିପରି ସତକୁ ଖୋଜୁଛି । ବରଂ ଅଧିକ ପରିମାଣରେ ଖୋଜୁଛି । ଜଣେ ବନ୍ଧୁ

ଇଂରାଜୀ ଭାଷାର ଅନୁବାଦ କରି ମତେ ଶୁଣାଇଥିଲା । ସେଥିରେ, ଜ୍ଞାନ ଖୋଜ ବାହାର କରିବାର ଏକ କାଳ୍ପନିକ କାହାଣୀ ଅଛି । ଦଳେ ଲୋକ ଭାରତରେ ପହଞ୍ଚିଥିଲେ ଏବଂ ଜଣେ ଅସ୍ପୃଶ୍ୟର କୁଡ଼ିଆରେ ଭଗବାନଙ୍କୁ ପାଇଥିଲେ ।

ମୁଁ ଆପଣଙ୍କୁ କହୁଛି ଯେ ଏଭଳି ଅନେକ ହରିଜନଙ୍କର କୁଡ଼ିଆ ଅଛି; ଯେଉଁଠାରେ ଆପଣ ନିଶ୍ଚୟ ଭଗବାନଙ୍କୁ ପାଇବେ । ସେମାନେ ଯୁକ୍ତି ତର୍କ କରନ୍ତି ନାହିଁ କିନ୍ତୁ ଭଗବାନ୍ ଅଛନ୍ତି ଏ ବିଶ୍ୱାସରେ ଅଟଳ ରହିଥାନ୍ତି । ସେମାନେ ଭଗବାନଙ୍କ ସାହାଯ୍ୟ ଉପରେ ନିର୍ଭର କରନ୍ତି ଓ ଭଗବାନଙ୍କ ସାହାଯ୍ୟ ମଧ୍ୟ ପାଇଥାନ୍ତି । ଭାରତର ଗ୍ରାମାଞ୍ଚଳରେ ଏହିସବୁ ହରିଜନ ସାଧୁସନ୍ଥଙ୍କ କଥା ପ୍ରଚଳିତ ଅଛି । ତାଙ୍କ ଭିତରେ କେତେକ ନାସ୍ତିକ ଥାଇ ପାରନ୍ତି, କିନ୍ତୁ ତାଙ୍କରି ଭିତରେ ମଣିଷ ଜାତିର ସବୁଠାରୁ ମହାନ୍ ଆଦର୍ଶର ନମୁନା ମଧ୍ୟ ଅଛି । ଆପଣ କ'ଣ ମନେ କରନ୍ତି ଯେ କେବଳ ଏହି ଅସ୍ପୃଶ୍ୟଙ୍କଠାରେ ମୋର ଅନୁଭୂତି ସରିଗଲା ? ନା, ଏ ଦେଶରେ ବହୁତ ବ୍ରାହ୍ମଣ ବହୁତ ଅବ୍ରାହ୍ମଣ ଅଛନ୍ତି ଯେଉଁମାନେ ଦୁନିଆର ଅନ୍ୟ ଯେ କୌଣସି ସ୍ଥାନର ଉଚ୍ଚ ଆଦର୍ଶର ନମୁନା ସଙ୍ଗେ ସମାନ ପଡ଼ିବେ । ଆଜି ଭାରତରେ ଏଭଳି ବ୍ରାହ୍ମଣ ଅଛନ୍ତି ଯେଉଁମାନେ ସ୍ୱାର୍ଥତ୍ୟାଗ, ଭଗବଦ୍ ବିଶ୍ୱାସ ଓ ବିନୟର ପ୍ରତିମୂର୍ତ୍ତି ହୋଇ ରହିଛନ୍ତି, ଆଜି ଏମିତି ବ୍ରାହ୍ମଣ ଅଛନ୍ତି ଯେ ହରିଜନ ସେବାରେ ନିଜର ଶରୀର ମନକୁ ଉତ୍ସର୍ଗ କରିଦେଇଛନ୍ତି, ତାହା ମଧ୍ୟ ପ୍ରତିଦାନ ଆଶାରେ କରୁ ନାହାନ୍ତି ବରଂ ଓଲଟା ସନାତନୀଙ୍କ ନିର୍ଯାତନ ସହୁଛନ୍ତି ଅଥଚ ସେଥିପ୍ରତି ଭ୍ରୂକ୍ଷେପ କରୁ ନାହାନ୍ତି କାରଣ ହରିଜନ ସେବାଦ୍ୱାରା ଭଗବାନଙ୍କ ସେବା କରୁଛନ୍ତି ବୋଲି ସେମାନେ ବିଶ୍ୱାସ କରୁଛନ୍ତି ।"

ଏହି ସଭା ଶେଷରେ ଜଣେ କିଏ ଗାନ୍ଧୀଙ୍କୁ ପଚ୍ଚାରିଥିଲା, "ଭାରତରେ ସାଧାରଣ ଲୋକଙ୍କ ଭିତରେ ପାଦ୍ରୀମାନେ କି କାମ କରିବେ ବୋଲି ଆପଣ ଚାହାନ୍ତି ?" ଗାନ୍ଧୀ ଉତ୍ତର ଦେଇଥିଲେ, "ଯେତେବେଳେ ଆପଣ ଏ ପ୍ରଶ୍ନ ପଚାରିଲେଣି ମୁଁ ଠିକ ହେଲେ ଦ୍ୱିଧା ନ କରି କହିବି 'ଅରଟ' । ଆପଣମାନେ ହସି ଉଠିବା ସ୍ୱାଭାବିକ କିନ୍ତୁ ମୁଁ ଯେଉଁଳି ଭାରତର ଜନତାକୁ ଜାଣିଛି ଆପଣମାନେ ଯଦି ସେମିତି ଚହ୍ନିଥାନ୍ତେ ତେବେ ଆପଣମାନେ ଟେକଲୀର ମହତ୍ତ୍ୱ ବୁଝନ୍ତେ, ଆଉ ଏ ଟେକଲୀକୁ ଏକ ଯନ୍ତଣାର ଯନ୍ତ୍ର ବୋଲି ବିଚାରନ୍ତେ ନାହିଁ । ଯେଉଁ ଲୋକେ କ୍ଷୁଧାରେ ଅତୁର, ଯେ ଉପାସରେ ଶୋଉଛନ୍ତି, ତାଙ୍କୁ ଆପଣମାନେ ଭଗବାନଙ୍କର କଥା ଶୁଣାଇ ପାରିବେ ନାହିଁ । ତାଙ୍କର ଅନ୍ନହିଁ ତାଙ୍କର ଭଗବାନ । ଜେନେରାଲ ବୁଥ୍ (ଜଣେ ଖ୍ରୀଷ୍ଟାନ୍ ସେବକ) କଣ କରୁଥିଲେ ? ତାଙ୍କର ଅନେକଗୁଡ଼ିଏ ପରିଶ୍ରମାଳୟ ଥାଏ, ସେଠାକୁ କେହି ଭୋକିଲା ନର-ନାରୀ ଆସିଲେ ସେ ତାଙ୍କୁ ପ୍ରଥମେ ତାଟିଆଏ ସୁରୁଆ ଦଅନ୍ତି । ସେମାନେ ଖାଇ ଟିକିଏ ଠାଣ ହେଲେ, ଆଉ ବଖତକ ଖାଇବାକୁ ଦେବା ପୂର୍ବରୁ ତାଙ୍କ ଠାରୁ କିଛି କାମ କରେଇ ନଅନ୍ତି; ତାଙ୍କର ଉଆସିଲି କାରଖାନା ପାଇଁ କାଠି ଚହ୍ଲେଇ ନିଅନ୍ତି । ତା ପରେ ସେମାନଙ୍କୁ ଭଗବାନ୍‌ଙ୍କ କଥା ଶୁଣାନ୍ତି । ଆଜି ଭାରତରେ ଯଥେଷ୍ଟ ଖାଦ୍ୟଦ୍ରବ୍ୟ ନାହିଁ ବୋଲି ଲୋକେ କ'ଣ ଭୋକରେ ମରୁଛନ୍ତି ? ନାଁ, ଭାରତରେ ତାଙ୍କୁ ଯଥେଷ୍ଟ କାମ ଯୁଟୁ ନାହିଁ । ଏ କୋଟି କୋଟି ଲୋକଙ୍କ ପାଇଁ ଅରଟହିଁ ଏକମାତ୍ର ସେଇଳି କାମ ।"

( ୫୦ )

ସେପ୍ଟେମ୍ବର ମାସରେ ପାଟଣାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହୋଇଥିଲା । ଏହିଠାରେ ଗାନ୍ଧୀ କଂଗ୍ରେସର

ଗଭର୍ଣ୍ଣେଣ୍ଟକ କାମକୁ ଟ୍ରୁବାଚୁର ସ୍ୱରାଜ୍ୟ ଦଳଙ୍କ ଉପରେ ସମର୍ପି ଦେଇ-ଥିଲେ । ଏଥିରେ ଗାନ୍ଧୀଙ୍କ ଅନୁଚରମାନେ ମନଦୁଃଖ କରିଥିଲେ । କିନ୍ତୁ ଗାନ୍ଧୀଙ୍କ ଦୂରଦୃଷ୍ଟି ଉପରେ ବିଶ୍ୱାସ ରଖି ସେମାନେ ତୁନି ପଡ଼ିଥିଲେ । ଏହି ବୈଠକରେ ଚରଖା ସଙ୍ଘ ଗଢ଼ା ହୋଇଥିଲା, ଏବଂ ଖଦୀ କାମର ଭାର ତାର ଉପରେ ଦିଆଯାଇ ଥିଲା । ଗାନ୍ଧୀ ତାର ସ୍ଥାୟୀ ସଭାପତି ହୋଇଥିଲେ । ଚରଖା ସଙ୍ଘ ଗଢ଼ା ହେବା ପୂର୍ବରୁ ପ୍ରାଦେଶିକ ଖଦୀ ବୋର୍ଡ଼ମାନଙ୍କ ଦ୍ୱାରା କଂଗ୍ରେସ ଖଦୀକାମ ଚଳାଉ ଥିଲେ ।

ଏହି ବର୍ଷ ନଭେମ୍ବର ମାସରୁ ଗାନ୍ଧୀ ନିଜର ଆତ୍ମଜୀବନୀ ଲେଖିବାକୁ ଆରମ୍ଭ କରନ୍ତି । ଏ ଲେଖା ସପ୍ତାହକୁ ସପ୍ତାହ ତାଙ୍କର ନବ ଜୀବନ ଖବର କାଗଜରେ ବାହାରୁଥିଲା । ସେ ଜୀବନୀକୁ ଗୁଜୁରାଟି ଭାଷାରେ ଲେଖୁଥିଲେ । ପରେ ଅନ୍ୟାନ୍ୟ ଭାଷାରେ ତର୍ଜମା ହୋଇଥିଲା, ଏ ଆତ୍ମଜୀବନୀ ଲେଖିଲା ବେଳେ ମଧ୍ୟ ତାଙ୍କର ସେହି ଏକ ଚିନ୍ତା ଥିଲା ଯେ ନିଜ ଜୀବନରେ ସତ୍ୟର ଅନୁସନ୍ଧାନ କରି ସେ ଯାହା ଭଲ ଫଳ ପାଇଛନ୍ତି, ଯେଉଁ ନୂଆ ବାଟ ଦେଖିଛନ୍ତି, ତାହା ଅନ୍ୟମାନଙ୍କୁ ଜଣାଇ ଦେବା ଦରକାର । ତାଙ୍କର ଦୃଢ଼ ବିଶ୍ୱାସ ଯେ ଜଣେ ଯାହା କରି ପାରନ୍ତି ତାହା ଅନ୍ୟମାନେ ସମସ୍ତେ କରି ପାରିବେ । ତେଣୁ ସେ ଆତ୍ମଜୀବନୀରେ ଠାଏ ଲେଖିଛନ୍ତି "ମୋର ଏ ଆତ୍ମଜୀବନୀରେ ଏମିତି କିଛି ନାହିଁ ଯାହାକୁ ଜଣେ ବାଳକ ବି ଇଚ୍ଛା କଲେ ଶିଖି ନ ପାରିବ ।" ଏ ଆତ୍ମଜୀବନୀର ନାଁ ରହିଛି ମୋର ସତ୍ୟର ଅନୁସନ୍ଧାନ । ଏ ଲେଖାରେ ୧୯୨୦ର ଶେଷଯାଏ ତାଙ୍କ ଜୀବନର କେତେକ ଘଟଣା ସେ କହି ଯାଇଛନ୍ତି । ତେଣିକି ତାଙ୍କ ଜୀବନର କଥା କଂଗ୍ରେସ କାମ ସଙ୍ଗେ ମିଶି ରହିଛି । ତାହା ଜଣା ଶୁଣା, ସେଥିରେ ଲୁଚ୍ଛ ଛପା କିଛି ନାହିଁ । ସେଥିପାଇଁ ଆଉ

ତେଶକ ଲେଖି ନାହାନ୍ତି । ଏ ସପ୍ତାହକୁ ସପ୍ତାହ ଲେଖା ୧୯୨୮ ରେ ଯାଇ ସରିଥିଲା ।

ବର୍ଷ ଶେଷରେ କାନପୁର ଠାରେ କଂଗ୍ରେସର ବୈଠକ ହୁଏ, ଶ୍ରୀମତୀ ସରୋଜିନୀ ନାଇଡୁ ସଭାପତି ହୋଇଥିଲେ । କଂଗ୍ରେସ ବୈଠକ ଆରମ୍ଭରେ ପୁରୁଣା ସଭାପତି ନୂଆ ସଭାପତିଙ୍କୁ ସବୁ ଭାର ଦେଇ ଦିଅନ୍ତି । ଗାନ୍ଧୀ ସରୋଜିନୀ ଦେବୀଙ୍କୁ ଏ ଭାର ସମର୍ପଣ କଲାବେଳେ କହିଥିଲେ "ଯେଉଁ ବିଶ୍ୱାସରେ, ଯେଉଁ ମତ ନେଇ କଂଗ୍ରେସରେ ପଶିଛି ତାହା କମେ ଦୃଢ଼ ହୋଇଅଛି ଏବଂ ମୁଁ ଯାହା । ଯାହା କରି ଆସିଛି ସେଥିରେ ତିଳେ ହେଲେ ଭୁଲ ହୋଇ ନାହିଁ ବୋଲି ମୁଁ ଦେଖି ପାରୁଛି ।"

କାନପୁର କଂଗ୍ରେସ ପରଠାରୁ ଗାନ୍ଧୀ କଂଗ୍ରେସ ରାଜନୈତିକ କାମରେ ଆଉ ପ୍ରତ୍ୟକ୍ଷ ସମ୍ପର୍କ ରଖି ନ ଥିଲେ । ସେ ଚରଖା ସଂଘର କାମରେ ବେଶୀ ସମୟ ଦେଇଥିଲେ । ଏବଂ ୟଙ୍ଗ ଇଣ୍ଡିଆ ଓ ନବଜୀବନରେ ଲେଖା ଲେଖି କରୁଥିଲେ । ଏହି ସମୟ ଭିତରର ଦୁଇ ତିନୋଟି ଲେଖାରୁ କେତେକ ଅଂଶ ଉଦ୍ଧାର କରାଗଲା ।

"ଚରଖା ମୋର କାମଧେନୁ । ଚରଖାରେ ପ୍ରତିଖିଅ ସୂତା ଟାଣିଲା ବେଳେ ମୁଁ ଭାରତର ଗରିବଙ୍କ କଥା ଚିନ୍ତା କରେ । ଭାରତର ଗରିବ ଲୋକେ ଆଜି ଭଗବାନ୍‌ଙ୍କ ଠାରେ ବିଶ୍ୱାସ ହରେଇଛନ୍ତି; ଧନୀ ଓ ମଧ୍ୟବିତ୍ତ ଶ୍ରେଣୀଙ୍କ ଠାରେ ବିଶ୍ୱାସ ଅଧିକ ପରିମାଣରେ ହରେଇଛନ୍ତି । ଯାହାର ପେଟ ଭୋକରେ ଜଳୁଛି ଏବଂ ଯେ ପେଟକୁ ଦାନା ଗଣ୍ଡାକ ଛଡ଼ା ଆଉ କିଛି ଖୋଜୁ ନାହିଁ, ତାହାର ପେଟ ତାହା ପାଇଁ ଭଗବାନ । ଯେ ତାକୁ ଦାନା ଦେବ ସେହି ତାର ପ୍ରଭୁ । ସେହିଲୋକ ଭିତରେ ସେ ଦେବ ଗରିବ ଭଗବାନଙ୍କୁ ଦେଖିପାରିବ । ଯାହାର ହାତ ଗୋଡ଼ ଠିକ ଅଛି ସେଭଳି ଲୋକଙ୍କୁ

ଭିକ୍ଷା ଦେବାର ଅର୍ଥ ତାଙ୍କୁ ହୀନ କରିବା ଏବଂ ଭିକ୍ଷା ନେବା ଲୋକ ମଧ୍ୟ ନିଜକୁ ହୀନ କରିବା କଥା । ଗରିବ ଲୋକେ ଗୃହାନ୍ତ କୌଣସି ଗୋଟାଏ ବ୍ୟବସାୟ ଧନ୍ଦା । ଲକ୍ଷ ଲକ୍ଷ ଲୋକଙ୍କୁ ଅରଟରେ ସୂତାକଟା ଛଡ଼ା ଆଉ କି ଧନ୍ଦା ଜୁଟି ପାରିବ ? କିନ୍ତୁ ଅରଟର ମାହାତ୍ମ୍ୟରେ ମୋର ଯେ ଭଳି ବିଶ୍ୱାସ ଅଛି ସେ ଭଳି ବିଶ୍ୱାସ ମୁଁ ବକ୍ତୃତା ଦ୍ୱାରା ଗରିବ ଗୃହି ମୂଲିଆଙ୍କ ମନରେ ପୂରାଇ ପାରିବି ନାହିଁ । ମୁଁ ନିଜେ ସୂତା କାଟିବା ଦ୍ୱାରା ସେ ବିଶ୍ୱାସ କରେଇ ପାରିବି । ତେଣୁ ମୁଁ ମୋର ସୂତାକଟାକୁ ତପସ୍ୟା ବା ଯଜ୍ଞ କହୁଥାଏ, ଏବଂ ମୋର ବିଶ୍ୱାସ ଯେ ଯେଉଁଠାରେ ଗରିବଙ୍କ ପ୍ରତି ଶୁଦ୍ଧ ସକ୍ରିୟ ପ୍ରେମ ଅଛି ସେଇଠାରେ ଭଗବାନ ଅଛନ୍ତି । ସେଥିଯୋଗୁଁ ଅରଟରେ ପ୍ରତ୍ୟେକ ଖିଅ ସୂତା ଟାଣିଲା ବେଳେ ମୁଁ ଭଗବାନଙ୍କ ଦର୍ଶନ କରୁଛି ।” (ତା୨୦।୫।୨୬)

ଅହମଦାବାଦ ଗୁଜୁରାଟ ମହା ବିଦ୍ୟାଳୟର ଛାତ୍ରମାନଙ୍କୁ ଗୋଟିଏ ବକ୍ତୃତାରେ କହୁଥିଲେ “ଯେଉଁ ଛାତ୍ରମାନେ ଭାରତର ଲକ୍ଷ ଲକ୍ଷ କ୍ଷୁଧାତୁର ଦରିଦ୍ର ନରନାରୀଙ୍କ କଥା ବିଚାରୁ ନାହାନ୍ତି କିମ୍ବା ତାଙ୍କ ପ୍ରତିକାରର ଉପାୟ କରୁ ନାହାନ୍ତି ସେମାନଙ୍କ ଶିକ୍ଷାକୁ ଜାତୀୟ ଶିକ୍ଷା କହି ହେବ ନାହିଁ । ଗାଁ ସଙ୍ଗେ ସରକାରଙ୍କ ସମ୍ପର୍କ ଖଜଣା ଗଣ୍ଡାକ ଅସୁଲ ସଙ୍ଗେ ସଙ୍ଗେ ସରି ଯାଇଥାଏ କିନ୍ତୁ ଗାଁ ସଙ୍ଗେ ଆମର ସମ୍ବନ୍ଧ ଅରଟଦ୍ୱାରା ତାଙ୍କର ସେବାରେ ଆରମ୍ଭ ହୋଇଥାଏ । କିନ୍ତୁ ତାହ ସେଠି ସରେ ନାହିଁ । ଅରଟ ହେଉ ସେବାର କେନ୍ଦ୍ର ଅଟେ ତେବେ ଛୁଟିରେ କୌଣସି ଦୂର ମଫସଲ ଗାଁକୁ ଯିବତ ମୋ କଥାର ସତ୍ୟତା ବୁଝିପାରିବ । ତେବେ ଦେଖି ପାରିବ ଲୋକେ ନିରାନନ୍ଦ ଭୟଭୀତ । ତେବେ ଦେଖିବ ଘର ସବୁ ଭାଙ୍ଗି ଅଜାଡ଼ ହୋଇ ପଡ଼ୁଛି ପରିଷ୍କାର ପରିଚ୍ଛନ୍ନତା ତମ ଆଖିରେ ପଡ଼ିବ ନାହିଁ । ଗୋରୁ ଗାଈଙ୍କ ଅବସ୍ଥା ଅତି ଶୋଚନୀୟ ଦେଖିବ । ତଥାପି ଦେଖିବ ଗୃହିଆଙ୍କ

ଆଳସ୍ୟ ଘୋଟି ଯାଇଛି । ତାଙ୍କୁ ଅରଟ ଦେଖାଅ; ସେ କହିବେ, ବହୁକାଳ ପୂର୍ବେ ତାଙ୍କର ବି ଅରଟ ଥିଲା, କିନ୍ତୁ ଅରଟ ବା ଅନ୍ୟଧନ୍ଦା ସେ ଧରିବେ ନାହିଁ । ତାଙ୍କ ଭିତରେ ଆଶା ବୋଲି ଗୋଟାଏ କିଛି ନାହିଁ । ନିଜ ଇଚ୍ଛାରେ ମରୁନାହାନ୍ତି ବୋଲି ବଞ୍ଚି ରହିଛନ୍ତି । ତେବେ ଯଦି ସୂତା କାଟିବ ସେମାନେ ବି ସୂତା କାଟିବେ ।"
(ଇ।୧୭।୬।୨୬)

ଏହିବର୍ଷ ଶେଷକୁ ଆସାମର ଗୌହାଟିଠାରେ କଂଗ୍ରେସ ବସିଥିଲା । ଶ୍ରୀ ଶ୍ରୀନିବାସ ଅୟଙ୍ଗର୍ ସଭାପତି ହୋଇଥିଲେ । ଗାନ୍ଧୀ କଂଗ୍ରେସରେ ଯୋଗ ଦେଇଥିଲେ କଂଗ୍ରେସ ଆରମ୍ଭ ବେଳକୁ ପଞ୍ଜାବରେ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କର ହତ୍ୟାର ଖବର ପହଞ୍ଚିଥିଲା । ତା ଫଳରେ କଂଗ୍ରେସ ଛାଉଣିରେ ଏକ ଦୁଃଖର ଛାୟା ଘୋଟି ଯାଇଥିଲା । ଜଣେ ଧର୍ମାନ୍ଧ ମୁସଲମାନ ସ୍ୱାମୀଜୀଙ୍କୁ ରୋଗଶଯ୍ୟାରେ ହତ୍ୟା କରିଥିଲା । ଗାନ୍ଧୀ ସେ ସମ୍ବନ୍ଧରେ ଲେଖିଥିଲେ, "କୌଣସି ଭୁଲ ଅତି କଦର୍ଯ୍ୟ ନ ହେବାଯାଏ ଆଖିରେ ପଡ଼େ ନାହିଁ, ଏବଂ ତାହା ପୂର୍ଣ୍ଣମାତ୍ରାରେ ଲଜ୍ଜାଜନକ ହେଲେ ଯାଇଁ ଲୋପ ପାଇଥାଏ । ଏ ହତ୍ୟାକାଣ୍ଡରୁ ଜାତର ଶିଖିବାର ଅଛି । ଆଜି ହିନ୍ଦୁମୁସଲମାନ୍ କଳି ଭଳି ଯେଉଁ ପାପ ଆମ ଭିତରର ସାରକୁ ଖାଇ ଯାଉଛି, ଏ ଦୁର୍ଘଟଣା ସେହି ପାପ ଦ୍ରୁତ ଆମର ଦୃଷ୍ଟିକୁ ଟାଣି ଆଣୁଛି । ଆଜି ଉଭୟ ହିନ୍ଦୁ ଓ ମୁସଲମାନଙ୍କର ପରୀକ୍ଷାର ସମୟ ଆସିଛି । କେଉଁ ବାଟ ଭଲ ସେମାନେ ବାଛି ନିଅନ୍ତୁ ।...... ମୋର ଆଶା ଏବଂ ସ୍ୱାମୀଜୀଙ୍କ ଭଳି ମହାପୁରୁଷ ମଧ୍ୟ ଏହି ଆଶା କରିଥିବେ, ଯେ ତାଙ୍କର ପବିତ୍ର ରକ୍ତ ଆମର ଏ ପାପରାଶିକୁ ଧୋଇ ନେଇଯାଉ, ଆମର ହୃଦୟକୁ ନିର୍ମଳ କରିଦେଉ ଏବଂ ପୁନଃଥର ଏ ଦୁଇ ମହାଜାତିକୁ ପ୍ରେମ ବନ୍ଧନରେ ଏକ କରି ଦେଉ ।"

( ୪୧ )

୧୯୨୭ରେ ମଧ୍ୟ ଗାନ୍ଧୀ ଖଦୀ କାମରେ କଟାଇଥିଲେ । ଭାରତର ଚାରିଆଡ଼େ ବୁଲି ବୁଲି ଚରଖା ସଙ୍ଘ ପାଇଁ ଅର୍ଥ ସଂଗ୍ରହ କରୁଥିଲେ ଏବଂ ଜନସାଧାରଣଙ୍କୁ ଖଦଡ଼ର ବାଣୀ ପ୍ରଚାର କରୁଥିଲେ ।

୧୯୨୭ ଜାନୁୟାରୀ ମାସରେ ପଣ୍ଡିତ ମାଳବୀୟଙ୍କ ନିମନ୍ତ୍ରଣରେ ହିନ୍ଦୁ ବିଶ୍ୱ—ବିଦ୍ୟାଳୟର ଛାତ୍ରମାନଙ୍କୁ ଏହି ବାଣୀ ଶୁଣାଇଥିଲେ, "ଅନେକ ସ୍ଥଳରେ ମତେ କେହି କେହି ଏହିଭଳି ପରାମର୍ଶ ଦେଉଛନ୍ତି 'ଖଦଡ଼ କଥା କହିବା ଆପଣ ବନ୍ଦ କରନ୍ତୁ ନାହାନ୍ତି କାହିଁକି ? ଆପଣଙ୍କର ଯାହା କହିବାର ଥିଲା ତାହାତ କହି ସାରିଲେଣି । କେହି ତ ଆଉ ଆପଣଙ୍କ କଥା ଶୁଣୁ ନାହାନ୍ତି ।' କିନ୍ତୁ ମୋ ଆଗରେ 'ଧ୍ରୁବ' କାଳର ପ୍ରହ୍ଲାଦର ଆଦର୍ଶ ରହିଛି; ମୃତ୍ୟୁ ଠାରୁ ବଳି ଯନ୍ତ୍ରଣା ଭୋଗକରିବା ସତ୍ତ୍ୱେ ସେ ରାମନାମ ଉଚ୍ଚାରଣ ଛାଡ଼ି ନ ଥିଲା । ତେବେ ମୁଁ କାହିଁକି ମୋ ମନ୍ତ୍ର ଜପିବା ବନ୍ଦ କରି ଦେବି ? ମୁଁ ତ ଏପର୍ଯ୍ୟନ୍ତ କୌଣସି ଯନ୍ତ୍ରଣା ଭୋଗିନାହିଁ, କୌଣସି ଅତ୍ୟାଚାର ସହି ନାହିଁ ।

"ମୋର ଦେଶର ଅବସ୍ଥା ମୋ କାନରେ ସେହି ଗୋଟିଏ ମନ୍ତ୍ର ଫୁଙ୍କିଦେଇଛି । ମୁଁ ତାକୁ ଜପିବା ଛଡ଼ା ଅନ୍ୟ କଣ କରିବି ? ମାଳବୀୟଜୀ ଡମର ପାଇଁ ରାଜା ମହାରାଜାଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କା ମାଗି ଆଣିଛନ୍ତି, ଆହୁରି ଆଣୁଛନ୍ତି । ଉପରୁ ଦେଖିଲେ ଏ ପଇସା ରାଜା ମହାରାଜାଙ୍କ ଠାରୁ ଆସୁଛି ବୋଲି ଜଣା ପଡ଼ୁଛି ମାତ୍ର ଏହା ପ୍ରକୃତରେ ଆମର କୋଟି କୋଟି ଗରିବଙ୍କ ଗଣ୍ଠିରୁ ଆସୁଛି । କାରଣ ଆମ ଦେଶର ଧନୀ ଲୋକେ ଗରିବଙ୍କର ସର୍ବନାଶ କରେଇ ନିଜେ ବଢ଼ନ୍ତି—ଅଥଚ ଏଣେ ସେହି ଗରିବଙ୍କୁ ଧନ ଯାଚ

ପେଟ ପୂରା ବଢ଼ତେ ବି ଖାଇବାକୁ ମିଳେ ନାହିଁ । ୟୁରୋପର ଅବସ୍ଥା
ଏଭଳି ନୁହେଁ । ଯେଉଁମାନେ ଶିକ୍ଷା ପାଉଛନ୍ତି ତାର ଖର୍ଚ୍ଚ ସେହି ଲକ୍ଷ
ଲକ୍ଷ ଗରିବ ଲୋକେ ଦେଉଛନ୍ତି, ନିଜେ ଭୋକ ଉପାସରେ ରହି
ଦେଉଛନ୍ତି, ଅଥଚ ସେମାନେ ଏଭଳି ଶିକ୍ଷା ପାଇବାର ସ୍ୱପ୍ନେହେଲେ
ସୁଦ୍ଧା ସୁଯୋଗ ପାଇବେ ନାହିଁ । ଯେଉଁ ଶିକ୍ଷା ଗରିବଲୋକେ ପାଇ
ପାରୁ ନାହାନ୍ତି ସେ ଶିକ୍ଷା ପାଇବାକୁ ତୁମମାନଙ୍କର ମନା କରିଦେବା
ଉଚିତ, କିନ୍ତୁ ମୁଁ ତୁମକୁ ଆଜି ତାହା କରିବାକୁ ଅନୁରୋଧ କରୁନାହିଁ ।
ମୁଁ ତ ଏତିକି କହୁଛି, ତାଙ୍କ ଠାରୁ ଯାହା ଅଣୁଛ ସେଥିପାଇଁ ଟିକିଏ
ଯଜ୍ଞ କର । ଯଜ୍ଞ ନ କରି ଯେ ଖାଏ ସେ ଚୋର ଏକଥା ଭଗବଦ୍
ଗୀତା କହୁଛନ୍ତି । — ଆମର ଏ ଯୁଗରେ ତୁମପାଇଁ ଅରଟହିଁ
ଯଜ୍ଞ । ଅଜି ତମ ଅଣ୍ଟାରେ ଯାହା ପଇସା ଅଛି, ମତେ ଝାଡ଼ି ଝୁଡ଼ି
ଦେଇଦିଅ । ମୁଁ ପଣ୍ଡିତ ମାଲବୀୟଙ୍କ ଠାରୁ ଏ ଭିକ୍ଷା ବୃତ୍ତି ଶିଖିଛି,
କିନ୍ତୁ ସେ ରାଜା ରାଜୁଡ଼ାଙ୍କଠାରୁ ଧନ ଆଣିବାରେ ସିଦ୍ଧ ହସ୍ତ ହୋଇ-
ଛନ୍ତି ମାତ୍ର ମୁଁ ଚେଲାଙ୍କ ଅଣ୍ଟାରୁ ଅଧିକ ଗରିବଙ୍କ ପାଇଁ ନିର୍ଲଜ୍ଜ
ଭାବରେ ଅଧଲା ପଇସା ନେବାରେ ଦକ୍ଷ ହୋଇଛି ।"

ଫେବୃଆରୀ ମାସରେ ସେ ବିହାର ଗସ୍ତରେ ଯାଇଥିଲେ ।
ସେଠାରେ ସେ ଦେଶବନ୍ଧୁ ସ୍ମୃତି ପାଣ୍ଠି ପାଇଁ ଚାନ୍ଦା ସଂଗ୍ରହ କରିଥିଲେ ।
ଏପାଖେ ଚରଖା କାମରେ ଲାଗିଥିଲେ । ସେଠାରେ ବିହାର ବିଦ୍ୟା-
ପୀଠର ଛାତ୍ରମାନଙ୍କୁ ଗୋଟିଏ ବକ୍ତୃତାରେ ଆମ ଦେଶର ଶିକ୍ଷା ଓ
ବିଲାତର ଶିକ୍ଷା ଭିତରେ ପ୍ରଭେଦ ବୁଝାଇଥିଲେ, "ବିଲାତର ଶିକ୍ଷା
ତାଙ୍କ ସେଠାଲୋକଙ୍କର ବିଶେଷ ପ୍ରତିଭା, ବିଶେଷ ପ୍ରବୃତ୍ତି ଅନୁସାରେ
ଦିଆ ହୋଇଥାଏ । ଏକା ଜିନିଷ ଭିନ୍ନ ଦେଶରେ ଭିନ୍ନ ପ୍ରକାରେ
ଶିକ୍ଷା ଦିଆଯାଇ ଥାଏ । × × × । ପ୍ରତ୍ୟେକ ଦେଶର ସଂସ୍କୃତି
ତଥା ପ୍ରତ୍ୟେକ ଦେଶର ପ୍ରତିଭା ଅନୁସାରେ ଭିନ୍ନ ଭିନ୍ନ ପ୍ରଣାଳୀରେ

ଦଅ ହୋଇଥାଏ । କିନ୍ତୁ ଆମେ ଗୋଲାମଙ୍କ ଭଳି ସେହି ବିଳାତି ଆଦର୍ଶକୁ ଆଖି ବୁଜି ଅନୁସରଣ କରୁଛୁଁ । ଆମେ ପଶ୍ଚିମ ଦେଶକୁ ଉପର ଠିକ୍ ଠିକ୍ ନକଲ କରିନେବା ଏହାହିଁ ବର୍ତ୍ତମାନ ଶିକ୍ଷାର ଲକ୍ଷ୍ୟ । ପୁଣି ଆମ ଶିକ୍ଷା ଇଂରାଜୀ ଭାଷା ଜରିଆରେ ଦିଆ ହେଉଥିବାରୁ ଆମର ମୌଳିକତା କୁଆଡ଼େ ଗଲାଣି । ପକ୍ଷ ନ ଥିବା ଚଢ଼େଇ ଭଳି ଆମ ଅବସ୍ଥା ହେଲାଣି । ଆମେ ସାଧାରଣତଃ କିରାଣୀ ବା ଖବର କାଗଜର ସମ୍ପାଦକ ହେବାକୁ ଆଶା ବାନ୍ଧୁଛୁ । ମୋଜଫରପୁରଠାରେ ଜଣେ ଛାତ୍ର ମତେ ପଚାରିଲା ଜାତୀୟ ବିଦ୍ୟାଳୟରେ ପାଠ ପଢ଼ି ମୁଁ ଜଣେ ଲାଟ୍ ସାହେବ ହୋଇପାରିବି କି ? ମୁଁ ତାକୁ କହିଥିଲି, 'ନାଁ, ତେମେ କେବଳ ଗାର ଲାଟ ହୋଇପାରିବ ଲର୍ଡ଼ କିମ୍ବା ହୋଇପାରିବ ନାହିଁ । କେବଳ ବିଳାତ ସରକାରଙ୍କର ମନ୍ତ୍ରୀ ଲର୍ଡ଼ ବରକନ୍‌ହେଡ଼ ତାହା କରି ପାରିବେ ।'······ମୁଁ ଥରେ ଏହାଲାବାଦ୍‌ଠାରେ ଏକ ଅର୍ଥନୀତି ପାଠାଗାର ଦେଖିବାକୁ ଯାଇଥିଲି । ଅଧ୍ୟାପକ ଜିଉନସ୍ ସାହେବ ମତେ ସବୁ ବୁଲେଇ ଦେଖେଇଥିଲେ ଏବଂ ମୋର ମନେ ପଡ଼ୁଛି ସେଥିରେ ତିରିଶ ଲକ୍ଷ ଟଙ୍କା ଖରଚ ହୋଇଥିଲା ବୋଲି ମୋତେ କହିଥିଲେ । ମୁଁ ତାହା ଶୁଣି ଥରି ଉଠିଥିଲି । କୋଟି କୋଟି ଲୋକଙ୍କୁ ଉପାସ ଭୋକରେ ନ ରଖିଲେ ଏ ଭଳି ରାଜପ୍ରାସାଦ ଭଳି କୋଠା କୁଆଡ଼ୁ ଠିଆ କରିହେବ ? ନୂଆ ଦିଲ୍ଲୀ ସହରକୁ ଦେଖ । ସେଠା କୋଠା ବାଡ଼ି ସେହି ଏକ କଥା କହୁଛନ୍ତି । ଆଜି ରେଲ୍‌ରେ ପ୍ରଥମ, ଦ୍ୱିତୀୟ ଶ୍ରେଣୀ ଡବାରେ ଯେ ସବୁ ଉନ୍ନତି ହୋଇଛି ତାକୁ ବି ଦେଖ । ସବୁଆଡ଼େ ଏକା ମନୋଭାବ—ଗରିବଙ୍କୁ ଅବହେଳା କରି, ଅଳପ କେତେଜଣ କ୍ଷମତାପନ୍ନଙ୍କ କଥା ବିଚାର କରାଯାଉଅଛି । ଯାହାକୁ ଯଦି ସତ୍ୟଜ୍ଞାନ ନ କହିବ ତେବେ କାହାକୁ କହିବ ? ମତେ ସତ କହିବାକୁ ପଡ଼ିବତ ମୁଁ ସେୟା କହିବ । ସେ

ଏକଥା କହୁଛନ୍ତି ତାଙ୍କୁ ଦୋଷ ଦେଇ ଲାଭ କ'ଣ । ସେମାନେ କ'ଣ ଅନ୍ଧ ହୋଇଛନ୍ତି କି ? ହାତୀ ବିଷୟରେ କଥା କିଏ କହିବ ? ତାହାର ଅଧିକାର ଜଣେ ସାହେବ କହୁଥିଲେ ଲଙ୍ଗଳ ମୂଳ ଯେଉଁ ବେଙ୍ଗ ଦେହରେ ବାଜିଥିବ ସେ ବୁଝିଥିବ ମୂଳ କେମିତି ଲାଗେ ।”

ଏହି ଗସ୍ତ ପରେ ଗାନ୍ଧୀଙ୍କ ଦେହ ଠିକ୍ ଅସୁସ୍ଥ ଥିବାରୁ ଲମ୍ବାକାଳ ବିଶ୍ରାମ ନେଇ ସେପ୍ଟେମ୍ବର ମାସରେ ପୁଣି ଗସ୍ତରେ ବାହାରିଥିଲେ । ମାନ୍ଦ୍ରାଜ ହୋଇ ସେ ନଭେମ୍ବର ମାସକୁ ଓଡ଼ିଶା ଆସିଥିଲେ ଏବଂ ଖଦୀ କାମ ପାଇଁ ପାଣ୍ଠି ସଂଗ୍ରହ କରିଥିଲେ

ନଭେମ୍ବର ମାସରେ ଲୁଗା ଲୁଟ ସମ୍ବନ୍ଧରେ ଏକ ଲେଖାରେ ଲେଖିଛନ୍ତି, “ଆମେ ଖଦୀ କାମରେ ଯେତିକି ଜନତା କରୁଥିବା ଆମେ ସେତିକି ଦେଖି ପାରୁଥିବା ଯେ ଆମର ନୀତି ଅଜକାଲିକା ବଣିକ ବେପାର ନୀତିଠାରୁ ଏକଦମ୍ ଭିନ୍ନ । ଅଜକାଲି ବଣିକ ବେପାରରେ ଯେ ଯେତେ ପାରିବ ଶସ୍ତାରେ କିଣି ମହଙ୍ଗାରେ ବିକିବା ନୀତି ଚଳୁଛି । ତାଙ୍କର ଧ୍ୟାନ ହେଉଛି କିଣିବାବାଲା ସାବଧାନ ରହୁ କହିବ । କିନ୍ତୁ ଖଦୀ ଅର୍ଥନୀତିରେ ଧ୍ୟାନ ହେଉଛି ସମସ୍ତଙ୍କ ପାଇଁ ସମାନ ନ୍ୟାୟ । ସେଥିଯୋଗୁଁ ସଇବା ପାଇଁ ଯେ ପ୍ରତିଯୋଗିତା, ଯେ ଝଗଡ଼ା ଓ ହେଉ ଲଡ଼ି ମଣିଷର ଆତ୍ମାର ସର୍ବନାଶ ହେଉଛି ସେ ଉପାୟ ଖଦୀରେ ଚଳିବ ନାହିଁ । ଖଦୀର ଅର୍ଥନୀତି ସବୁଠାରୁ ଗରିବ, ସବୁଠାରୁ ଅସହାୟ ଲୋକଙ୍କର କଥାକୁ ବିଚାର ଠିକ୍ କରାଯାଇଛି । ଏବଂ କର୍ମୀମାନେ ଯେତିକି ଲୋକଙ୍କ ଭିତରେ ପଶିବେ, ଯେତିକି ବେଶୀ ଗରିବଙ୍କର ବିଶ୍ୱାସର ପାତ୍ର ହେବେ, ସେତିକି ଖଦୀ କାମ ସଫଳ ହେବ । ଏବଂ ଲୋକଙ୍କର ବିଶ୍ୱାସ ଭାଜନ ହେବାର ଏକମାତ୍ର ବାଟ ତାଙ୍କର ନିଃସ୍ୱାର୍ଥ ସେବା କରିବା ।”

( ୪୨ )

ବର୍ଷ ଶେଷକୁ ଗାନ୍ଧୀ ଲଙ୍କାଦ୍ୱୀପ ଗସ୍ତରେ ଯାଇଥିଲେ । ସେଠାରେ ଖଦୀକାମ ପାଇଁ ଲୋକଙ୍କୁ ଅର୍ଥ ସାହାଯ୍ୟ ମାଗିଥିଲେ, ତାଙ୍କୁ ଖଦୀ ତିଆରି କରିବାପାଇଁ କହୁଥିଲେ ଏବଂ ଖଦୀ ତିଆରି ନ କଲେ ଭାରତର ଖଦୀ କିଣିବାକୁ କହୁଥିଲେ । ବହୁତ ବଡ଼ ବଡ଼ ସଭା ସଭାରେ ଗାନ୍ଧୀ ବକ୍ତୃତା ଦେଇଥିଲେ । ଜାଗାଏ କହୁଥିଲେ, "ମହାବୁଦ୍ଧ ଗୌତମ ଯେଉଁ ଧର୍ମ ଜଗତକୁ ଦେଇଗଲେ, ତମକୁ ସେହି ଧର୍ମରେ ଶିକ୍ଷା ଦିଆଯାଉଛି । ତାଙ୍କର ଉପଦେଶର ଅସଲ କେନ୍ଦ୍ର କଥାଟିକୁ ତମ ଜୀବନରେ ଯେବେ ଉତାରି ନ ପାରିଲେ ତମର ଆଉ ସବୁ ଶିକ୍ଷା ବୃଥା ହେବ । ଗୌତମଙ୍କ ବାଟ ସତ୍ୟର ବାଟ ଥିଲା, ତାଙ୍କର କଥା ସତ୍ୟ, ଚିନ୍ତା ସତ୍ୟ ଓ କର୍ମ ସତ୍ୟଥିଲା । ତାଙ୍କର ପ୍ରେମ ଅସୀମ ଥିଲା, ମନୁଷ୍ୟ ଜାତି ପ୍ରତି ଯେତିକି, ନୀଚ ପଶୁଜାତି ପ୍ରତି ସେତିକି । ତେମେମାନେ ଯଦି ସେହି ଦୟା, ପ୍ରେମ, କ୍ଷମା, ସମବେଦନାର ଧର୍ମ ପାଳିବାକୁ ବସିଛ ତେବେ ତମର ଅନ୍ତତଃ ଗୌତମଙ୍କର ଦେଶବାସୀଙ୍କପାଇଁ କିଛି କରିବା ଉଚିତ । ତେମେ ଜଣେ ଯେ ଭାରତବାସୀ ଥିଲେ, ତାଙ୍କର ବାର୍ତ୍ତା ସେ ପହିଲେ ଭାରତକୁ ଶୁଣାଇଥିଲେ । ଦୁଃଖରକଥା ହୋଇପାରେ ମାତ୍ର ଦୁର୍ଭାଗ୍ୟକୁ ଏହା ସତ୍ୟ ଯେ ତାଙ୍କର ଦେଶର ଲୋକେ ଆଜି ଦୁନିଆରେ ସବୁଠାରୁ ଦରିଦ୍ର । କୋଟି କୋଟି ଲୋକ ଉପାୟ ଭୋକରେ ସଡ଼ି ମରୁଛନ୍ତି । ସେମାନେ ଯଦି ଅରଟ ଧରନ୍ତି ଏବଂ ତେମେମାନେ ତଥା ଏଠାର ଖାଉଣୀଯୃମାନେ ଯଦି ତାଙ୍କର ଖଦଡ଼ କିଣିବ, ତେବେ ସେମାନେ ମରିବେ ନାହିଁ ।"

ଅନ୍ୟ ଏକସଭା ସମ୍ମିଳନୀରେ କହିଥିଲେ, "ଅହିଂସା ନୀତିର ଏକ ପ୍ରତିପାଦ୍ୟ ଭାବରେ ସବୁଠାରୁ ନୀଚ, ସବୁଠାରୁ ନିମ୍ନସ୍ତରର

ଲୋକେ ଯାହା ପାଇ ପାରିବେ ନାହିଁ ଆମେ ସେ ସବୁ ପାଇବାକୁ ଇଚ୍ଛା କରିବା ନାହିଁ । ଏହା ଯଦି ଠିକ୍ ହୋଇଥାଏ ଏବଂ ତେମେ ଯଦି ଏ ନୀତିକୁ ଗ୍ରହଣ କରୁଥାଅ, ତେବେ ଆମେ ଆମର ସେହି ପୁରୁଣା ସରଳ ଜୀବନକୁ କୌଣସି ରକମ ଛାଡ଼ିବା ନାହିଁ, ଦୁନିଆର ଅମୂଲ୍ୟଧନ ଆମକୁ ମିଳିଲେବି ଆମେ ତାକୁ ଛାଡ଼ିବା ନାହିଁ । ଏବେ ନା ତେମେ ବୁଝିପାରିବ ଅଜକାଲି ଏ ନେଶ ସୁଅ ପଶ୍ଚିମ ଦେଶରୁ ଆମ ଉପରକୁ ମାଡ଼ି ଆସୁଛି, ଏପେ ଚକମକର ମୋହ ଭାସିଆସୁଛି ତାହା ବିରୁଦ୍ଧରେ ମୁଁ କାହିଁକି ଦୃଢ଼ଭାବରେ ଠିଆ ହୋଇଅଛି ।

"ଏ ସବୁ ଯୁକ୍ତିକୁ ଯଦି ଧୀରସ୍ଥିର ଭାବରେ ବୁଝିବ, ତେବେ ଅର୍ଥନୀତି ଆମର କାହିଁ ତମେ ବୁଝିପାରିବ । ଏହି ଅର୍ଥରେ ଭଗବାନଙ୍କର ଧ୍ୟାନ କାମକରୁଥିବାର ମୁଁ ଦେଖିପାରୁଛି, ସବୁଠାରୁ ନିମ୍ନତମ ମାନବ ଶ୍ରେଣୀର ଅଭାବ ପୂରଣ କରିବାର ବାଟ ମୁଁ ଏହି ଅର୍ଥରେ ଦେଖିପାରୁଛି । ତେଣୁ ବେଳ ନାହିଁ ଅବେଳ ନାହିଁ ମୁଁ ସବୁବେଳେ ସେହି ଅର୍ଥ କଥା ଚିନ୍ତା କରୁଛି, ସେହି ଅର୍ଥରେ କାମ କରୁଛି, ସେ ଅର୍ଥ ପାଇଁ ପ୍ରାର୍ଥନା କରୁଛି ଓ ସେହି ଅର୍ଥ କଥା କହୁଛି । ଭାରତବର୍ଷ କଥା ଛାଡ଼ିଦଅ, ଅନ୍ୟ କୌଣସି ଉପାୟରେ ତମେ ଯଦି ଦୁନିଆର କ୍ଷୁଧାତୁର ଲୋକଙ୍କ ପାଖକୁ ଯାଇ ପାରିବ ଏବଂ ନିଜକୁ ମେହେନ୍ତରର ସଙ୍ଗେ ଏକ ସମାନସ୍ତରରେ ରଖି ପାରିବ ତେବେ ମୁଁ ଅର୍ଥକୁ ଛାଡ଼ି ସେହି ଉପାୟକୁ ତୁରନ୍ତ ଗ୍ରହଣ କରିବି ।"

ଏହି ବର୍ଷ ଶେଷକୁ (୧୯୨୭) ମାନ୍ଦ୍ରାଜଠାରେ କଂଗ୍ରେସର ବୈଠକ ହୁଏ । ଡାକ୍ତର ଅନସାରୀ ସଭାପତି ହୋଇ-ଥିଲେ । ଗାନ୍ଧୀ କଂଗ୍ରେସବେଳେ ମାନ୍ଦ୍ରାଜରେ ଉପସ୍ଥିତ ଥିଲେ । ସେ କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ ସୁଦ୍ଧା ସେ ସଭାରେ ଯୋଗ ଦେଉ

ନ ଥିଲେ । ତେବେ ସେଥିରେ ଯାହାସବୁ ହେଉଥିଲା ସବୁ ତାଙ୍କୁ ଜଣାଇ କରାଯାଉଥିଲା । ଏଥର କଂଗ୍ରେସର ପ୍ରଧାନ ପ୍ରସ୍ତାବରେ ସାଇମନ୍ କମିସନ୍‌ର ବର୍ଜନ କରିବା ସ୍ଥିର ହୋଇଥିଲା । ବିଲାତ ସରକାର ଭାରତବାସୀଙ୍କୁ ଆଶ୍ୱାସନା ଦେବା ପାଇଁ ବିଲାତରୁ ସାଇମନ୍ ପ୍ରମୁଖ ସାତଜଣଙ୍କୁ ଏକ କମିଟି ଗଢ଼ି ଭାରତକୁ ପଠାଉଥିଲେ, ସେମାନେ ବୁଲି ଦେଖିବେ ଭାରତବାସୀ ସ୍ୱାୟତ୍ତଶାସନ ପାଇବାକୁ କେତେଦୂର ଯୋଗ୍ୟ ହେଲେଣି । ଅନ୍ୟ ଏକ ପ୍ରସ୍ତାବରେ ପୂର୍ଣ୍ଣ ସ୍ୱାଧୀନତା କଂଗ୍ରେସର ଲକ୍ଷ୍ୟ ବୋଲି ଦାବୀ କରାଯାଇଥିଲା ।

୧୯୨୮ ଆରମ୍ଭରେ ସାଇମନ୍ କମିସନ୍‌ଙ୍କ ପହଞ୍ଚିବାରେ ଦେଶରେ ଖୁବ୍ ଚହଳ ପଡ଼ିଯାଇଥିଲା । ଲୋକେ ସାଇମନ୍ କମିସନଙ୍କୁ 'ସାତ ଭାଇଆ ସାଇମନ୍' ଆଖ୍ୟା ଦେଇଥିଲେ । ବଡ଼ ବଡ଼ ସହର-ମାନଙ୍କରେ ସାଇମନ୍‌ଙ୍କ ଦଳ ପହଞ୍ଚିବା ସଙ୍ଗେ ସଙ୍ଗେ ଖୁବ୍ ଜୋର୍ ହରତାଳ, କଳାପତାକା ଦେଖାଇବା ଏବଂ ତା ଫଳରେ ପୁଲିସର ଜୁଲୁମ ଏପରିକି ସ୍ଥାନେ ସ୍ଥାନେ ଗୁଳି ଚଳାଇବା ପର୍ଯ୍ୟନ୍ତ କଥା ଯାଇଥିଲା । ଏହି ଧୂମ୍‌ଧାମ୍ ଭିତରେ ଲାହୋରଠାରେ ଲାଲା ଲଜପତ ରାୟଙ୍କ ଉପରେ ମାଡ଼ ବସିଥିଲା ଏବଂ ସେହି ମାଡ଼ ପରେ ତାଙ୍କ ଦେହ ଅସୁସ୍ଥ ହେଲା ଏବଂ ଶେଷରେ ତାଙ୍କର ମୃତ୍ୟୁ ହେଲା । ଲକ୍ଷ୍ନୌଠାରେ ପଣ୍ଡିତ ଜବାହରଲାଲଙ୍କ ଉପରେ ମଧ୍ୟ ମାଡ଼ ବସିଥିଲା ।

ଏ ବର୍ଷ ଗାନ୍ଧୀ ପ୍ରତ୍ୟକ୍ଷ ରାଜନୀତିରେ କୌଣସି ସମ୍ପର୍କ ନ ରଖି ପୂର୍ବବତ୍ ଖଦୀ ଓ ଗଠନମୂଳକ କାମରେ ଲାଗି ରହିଥିଲେ । ତେବେ ଗୁଜୁରାଟର ବାର୍ଦ୍ଦୋଲୀ ତାଲୁକାରେ ଏକ ଖଜଣା ବନ୍ଦ ଆନ୍ଦୋଳନ ତାଙ୍କର ପ୍ରେରଣାରେ ଆରମ୍ଭ ହୋଇ ଖୁବ୍ ସଫଳ ହୋଇଥିଲା । ଏହି ବାର୍ଦ୍ଦୋଲୀ ସତ୍ୟାଗ୍ରହର କାହାଣୀ ସ୍ୱତନ୍ତ୍ର ଭାବରେ ପରେ ଦିଆଗଲା ।

୧୯୨୮ ମାର୍ଚ୍ଚରେ କଂଗ୍ରେସ ନିର୍ଦ୍ଦେଶ ମତେ ଗୋଟିଏ ସର୍ବଦଳ ସମ୍ମିଳନୀ ବସି ପଣ୍ଡିତ ମୋତିଲାଲ ପ୍ରମୁଖ କେତେଜଣଙ୍କୁ ନେଇ ଏକ କମିଟି ଗଢ଼ା ହୋଇଥିଲା ଏବଂ ଭାରତର ସ୍ୱରାଜ୍ୟର ଏକ ଖସଡ଼ା ତିଆରି କରିବା ପାଇଁ ସେମାନଙ୍କୁ ଭାର ଦିଆଯାଇଥିଲା । ଏବଂ ଗାନ୍ଧୀଙ୍କ ପରାମର୍ଶ ଅନୁସାରେ ୧୯୨୮ରେ କଲିକତା କଂଗ୍ରେସର ସଭାପତି ପାଇଁ ସେହି ମୋତିଲାଲଙ୍କୁ ବଛା ଯାଇଥିଲା ।

୧୯୨୮ ଏପ୍ରିଲ ମାସରେ ଏକ ଲେଖାରେ ଲେଖିଛନ୍ତି, "ବିଦେଶୀ ବର୍ଜନରେ ସଫଳତା ପାଇଁ ଦେଶର ସବୁ ଅଂଶର, ସବୁ ଶ୍ରେଣୀର ଲୋକଙ୍କର ସ୍ୱେଚ୍ଛା ସହଯୋଗ ଦରକାର, ଏଥିକି ମୁଁ ଜାଣିଛି ବୋଲି ମୁଁ ବିଦେଶୀ ବର୍ଜନକୁ ଏତେ ଗୁରୁତ୍ୱ ଦେଉଛି । ଗାଁ ଗଣ୍ଡାର ବିଶାଳ ଜନତାର ଅନ୍ତରର ସ୍ୱେଚ୍ଛା ସହଯୋଗ ନ ମିଳିଲେ ଏ ଆନ୍ଦୋଳନ ସଫଳ ହୋଇପାରିବ ନାହିଁ । ମୁଁ ଜାଣେ ସାଧାରଣ ଲୋକେ ଠିକ୍ ଅଛନ୍ତି ଏବଂ ତେଣୁ ଏ ଆନ୍ଦୋଳନର ସଫଳତାରେ ମୋର ବିଶ୍ୱାସ ଅଟଳ ଅଛି । କେବଳ ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀମାନେ ବିଶ୍ୱାସ ଅଭାବରୁ ବାଟ ବନ୍ଦ କରୁଛନ୍ତି । ସେମାନେ ଯଦି ଡର ଛାଡ଼ି, ଅବିଶ୍ୱାସକୁ ଦୂର କରି, ବାହାରି ପଡ଼ି ଏ ଆନ୍ଦୋଳନକୁ ଚଳାନ୍ତି ତେବେ ସାଧାରଣ ଲୋକେ ତାଙ୍କ ପଛେ ପଛେ ଯିବେ । ଏ ବର୍ଜନ ହେଉଛି ଏକମାତ୍ର ଉପାୟ ଯେଉଁଥିରେ ସାଧାରଣ ଲୋକେ ବେଶୀ କିଛି ତ୍ୟାଗ ନ କରି ଆନ୍ଦୋଳନରେ ସକ୍ରିୟ ଭାବରେ ଯୋଗ ଦେଇ ପାରିବେ ।"

"ଏହାର କିଛିଦିନ ପରେ ଆମେ ଭାରତକୁ କିପରି ହରେଇଲୁ ?" ନାଁ ଦେଇ ଗାନ୍ଧୀ ଏକ ପ୍ରବନ୍ଧରେ ଲେଖିଥିଲେ "ଆମର ଧନୀ ବ୍ୟବସାୟୀମାନଙ୍କୁ ଦେଶ ପାଇଁ ନିଜର ସର୍ବନାଶ କରିବାକୁ ପଡ଼ିବ ନାହିଁ । ସେମାନେ ଆଜି ଯେତେ ବିଲାତି ଲୁଗା ଓ ସୂତା ଆଣୁଛନ୍ତି

ସେତେବେଳ ଲୁଗ ଓ ସୂତା ଆମ ଦେଶରେ ଲୋଡ଼ା । କିନ୍ତୁ ତାଙ୍କୁ
ଏତେକ ସୂତା ଓ ଲୁଗା, ତାଙ୍କର ବ୍ୟବସାୟ ବୁଦ୍ଧି ଖଟାଇ ଆମର
ସାତଲକ୍ଷ ଗାଁରେ ତିଆରି କରାଇବାକୁ ହେବ । ଏହା କଲେ
ତାଙ୍କର ଉପକାର ହେବ; ହିଁ, ଏତେକ କରିବା ଦ୍ୱାରା ତାଙ୍କୁ
କେତୋଟି ବିଷୟ ଛାଡ଼ିବାକୁ ହେବ । ଯଥା, ବ୍ୟବସାୟରେ ଯେଉଁ
କୁଅ ଖୋଳୁଛନ୍ତି, 'ସଟା' କରୁଛନ୍ତି କିମ୍ବା ତାଙ୍କର ଗୃହ ଯାହାର ଅବସ୍ଥା
ସଙ୍ଗେ ଖାପ୍ ଖାଉ ନ ଥିବା ବଡ଼ ବଡ଼ ରାଜ ପ୍ରାସାଦରେ ରହୁଛନ୍ତି ଏ
ସବୁ ତାଙ୍କୁ ଛାଡ଼ିବାକୁ ହେବ । ଉପରନ୍ତୁ, ଯାହାଙ୍କ ପାଇଁ ଯାହାଙ୍କ
ସଙ୍ଗେ ସେମାନେ ବେପାର କରୁଛନ୍ତି ସେମାନଙ୍କ ଅବସ୍ଥା ସଙ୍ଗେ
ସମ୍ବନ୍ଧ ରଖୁଥିବା ଅସୃତରେ ସେମାନଙ୍କୁ ଚଳିବାକୁ ହେବ । ଅର୍ଥାତ୍,
ଆଜି ସେମାନେ ଗାଁ ଗଣ୍ଡାକୁ ଶୋଷୁଛନ୍ତି, ତାହା ବନ୍ଦ କରିବାକୁ
ହେବ ଏବଂ ଯେଉଁ ମାନଙ୍କ ଉପରେ ନିଜର ସମ୍ପଦ ନିର୍ଭର କରୁଛି
ସେମାନଙ୍କୁ କିଛି ଫେରାଇ ଦେବାକୁ ହେବ । ସେହି 'ପେଟ ଓ ହାତ
ଗୋଡ଼'କାହାଣୀ ସବୁଠାରେ ଖଟିବ । ଯେଉଁ କୋଟି କୋଟି ଲୋକ
ଶ୍ରମ କରି ମରୁଛନ୍ତି ସେମାନେ ତ ପେଟ, ବ୍ୟବସାୟୀ ଦେଶୀ ତଥା
ଅନ୍ୟମାନେ ହାତଗୋଡ଼ । ପେଟ ଭୋକରେ ରହିଲେ ହାତଗୋଡ଼
ସବୁ ସୁଖିଯିବେ । ଯାହାଙ୍କର ଆଖି ଅଛି ସେମାନେ ଦେଖି ପାରନ୍ତେ
ଯେ ବହୁକାଳଯାଏ ଏ ପେଟକୁ ଅତି ନିର୍ଲଜ ଭାବରେ ଉପାସ ରଖା
ଯାଇଛି । ଯେମିତି ଦିନ ପରେ ରାତି ଆସେ, ସେମିତି ଏଣିକି ହାତ
ଗୋଡ଼ ଶୁଖିବାକୁ ଲାଗିବେ । ଅତଏବ ବିଳମ୍ବ ନ କରି ଆମେ
ପ୍ରାୟଶ୍ଚିତ୍ତ ଦରକାର ।"(ଇ। ୨୫।୧୦।୨୮ )

୧୯୨୮ କଲିକତା କଂଗ୍ରେସକୁ ଯିବାବେଳେ ବାଟରେ
ସମ୍ବଲପୁରରେ ଦିନେ ରହିଥିଲେ । ସେଠାରେ ଗୋଟିଏ ସଭାରେ
କଲୁଟା ଦେଉଁ ଦେଉଁ କହିଥିଲେ, "ଯେମିତି ହନୁମାନଙ୍କ ହୃଦୟ

ଶଇ ଗ୍ରମ ନାମ ଲେଖାଥିବାର ଦେଖାଯାଇଥିଲା, ସେହିଭ ମୋର ହୃଦୟ ଶରଲେ 'ଦରିଦ୍ର ନାରାୟଣ' ଢଲଖାଥିବାର ଦେଖାଯିର ।"

( ୪୩ )

(ସ୍ୱର୍ଗୀୟ ମହାଦେବ ଦେଶାଇ ବାର୍ଦ୍ଦୋଲୀ ସତ୍ୟାଗ୍ରହର ଏକ ଇତିହାସ ଗୁଜୁରାଟୀରେ ଲେଖିଛନ୍ତି । ନିମ୍ନରେ ସେହି ବାର୍ଦ୍ଦୋଲୀ ସତ୍ୟାଗ୍ରହର ଯେ ସଂକ୍ଷିପ୍ତ ବିବରଣ ଦିଆଗଲା ତାହା ତାଙ୍କର ସେହି ବହିର ଅଧାରରେ ଲେଖା ଯାଇଅଛି ।)

ବାର୍ଦ୍ଦୋଲୀ ଗୁଜୁରାଟର ଏକ ତାଲୁକା । ସେଥିରେ ୧୩୭ ଶଏ ସଇନ୍ତିରିଶଟି ଗାଁ, ଯେଉଁଥିରେ ପଞ୍ଚାଅଶୀ ହଜାର ଲୋକ ବାସ କରନ୍ତି । ଏହା ବଡ଼ୋଦା ଗଡ଼ଜାତକୁ ଲାଗିଛି । ୧୯୨୨ରେ ଏହିଠାରେ ସ୍ୱରାଜ୍ୟ ସତ୍ୟାଗ୍ରହ କରିବାର ସ୍ଥିର ହୋଇଥିଲା । ତାକୁ ବାଛିବାର ଗୋଟିଏ କାରଣ ଥିଲା ଯେ ସେହି ଅଞ୍ଚଳରୁ ବହୁତ ଲୋକେ ଦକ୍ଷିଣ ଆଫ୍ରିକାରେ ଥିବାରୁ ସେଠା ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ସେ ଅଞ୍ଚଳରେ ଆଉ କେତୋଟି ବିଶେଷତ୍ୱ ଅଛି । କୃଷୀ ସଂଖ୍ୟା ପ୍ରାୟ ଶତକଡ଼ା ନବେ । ତାଙ୍କ ଭିତରେ ଜାତି ବନ୍ଧନ ଭାରି ଢିଲା, ଏ ଯୁଗରେ ବି ପୁରୁଣା କଥାକୁ ଟୁବ୍ ଜାବି ଚଳନ୍ତି । ସମାଜ ଦ୍ରୋହୀ-ମାନଙ୍କୁ ପୁରୁଷ ପୁରୁଷ ଧରି ଜାତି ବାସନ୍ଦ କରି ରଖିଦିଅନ୍ତି । ଆଉ ଏକ ବିଶେଷତ୍ୱ ସ୍ତ୍ରୀ ଜାତି ଭାରି ପରିଶ୍ରମୀ । ସକାଳୁ ସଞ୍ଜଯାଏ ଘରେ ବାହାରେ, ବିଲ ବାଡ଼ିରେ ପୁରୁଷଙ୍କ ସଙ୍ଗେ କାମ କରନ୍ତି । ତାଙ୍କ ଭିତରୁ ଏକ ପ୍ରକାର ସାହସ ଓ ସ୍ୱାଧୀନତା ଫୁଟି ଉଠୁଥିବାର ଦେଖାଯାଏ । ଏ କୃଷୀମାନେ ଧର୍ମ ଭୀରୁ, ସେଥିପାଇଁ ସେମାନେ କଳାଙ୍କ ଢାଣ ବୋଲି ଜଣାଶୁଣା, ପ୍ରତିଜ୍ଞା କଲେ ତାହା ଠିକ୍ ଠିକ୍ ପାଳନ୍ତି । ଯାଙ୍କ ଭିତରେ ରାଣୀପରଜ ବୋଲି ଅଛୁଆଁ ଜାତି

ଅଛନ୍ତି । ସେଠାକାର ସବୁ ଜମି ଏହି ଅଦନ୍ ବାସୀଙ୍କର ଥିଲା । ବାଟମ ସଭ୍ୟଲୋକେ ପଇସା ଲୋଭ ଦେଖେଇ ମଦ ନିଶା ଦୋକାନ ଖୋଲି ଏ ସରଳ ଲୋକଙ୍କୁ ସର୍ବସ୍ୱାନ୍ତ କରିଛନ୍ତି । ଏ ଜାଲୁକାର ଲୋକେ ଶାନ୍ତିପ୍ରିୟ, ଚୋରି ଡକାୟତି ସେଠି ବହୁତ କମ୍, ଦେଓ୍ୱାନୀ ମୋକଦ୍ଦମା ନାହିଁ କହିଲେ ଚଳେ ।

ଗୁଜୁରାଟରେ ଜମିଦାରୀ ପ୍ରଥା ନାହିଁ । ରୟତୱାରୀ ପ୍ରଜାମାନେ ଖଜଣା ସରକାରଙ୍କୁ ଦିଅନ୍ତି । ତିରିଶ ବର୍ଷରେ ଥରେ ବନ୍ଦୋବସ୍ତ ହୋଇଥାଏ । ଜମି ଜମା ଆଇନ ମଧ୍ୟ ବିଚିତ୍ର । ଚାଷୀକୁ ଜମିର ମାଲିକ କୁହାଯାଏ ସେ ସମ୍ବନ୍ଧରେ ଅନେକ ଘାଣ୍ଟି ଚକଟ ଲାଗିଲେ ସୁଦ୍ଧା ସର୍ବଗ୍ରାସୀ ନୀତି ଧରି ସରକାର ନିଜକୁ ମାଲିକ ମଣନ୍ତି । ବନ୍ଦୋବସ୍ତରେ ଜମାବୃଦ୍ଧି ସମ୍ବନ୍ଧରେ ରାଜସ୍ୱ ବିଭାଗ କର୍ମଚାରୀଙ୍କ ଛଡ଼ା ଅନ୍ୟ କାହାର କୌଣସି କ୍ଷମତା ନାହିଁ । ଲାଟସଭା ହାତକୁ କ୍ଷମତା ଦେବା ପାଇଁ ଭାରତ ସରକାରଙ୍କ ସୂଚନା ଆସିଥିଲେ ସୁଦ୍ଧା ସ୍ଥାନୀୟ ସରକାର ଗଡ଼ିତ ପଡ଼ିତ କରି ନିଜ ହାତରୁ କ୍ଷମତାଟି ଛାଡ଼ୁ ନ ଥା'ନ୍ତି ।

ଏହିପରି ଅବସ୍ଥାରେ ୧୯୨୭।୨୮ ରେ ସାନ ବନ୍ଦୋବସ୍ତରେ ଜମା ବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସରକାର ପ୍ରଥମେ ବାଇଶି ଟଙ୍କା ବୃଦ୍ଧି ସ୍ଥିର କରି ଶେଷରେ କୋଡ଼ିଏରେ ଶେଷ ନିଷ୍ପତ୍ତି କରିଥିଲେ ।

ଲୋକଙ୍କ ପକ୍ଷରୁ ଆପତ୍ତି ଉଠିଥିଲା । ଲାଟସଭା ମେମ୍ବରମାନେ ବାହାରେ ଓ ସଭାରେ ବୃଥା ଆନ୍ଦୋଳନ କରିଥିଲେ । ସେମାନେ ଥକି ଯାଇ ନିରାଶ ହୋଇ ବସିବାରୁ ଲୋକେ ଯାଇ ସର୍ଦ୍ଦାର ବଲ୍ଲଭ ଭାଇଙ୍କୁ ଧରିଥିଲେ । ଅନେକଥର ଦୌଡ଼ା ଦୌଡ଼ି ପରେ ବଲ୍ଲଭଭାଇ ଉପରେ ଏ ଆନ୍ଦୋଳନକୁ ହାତକୁ ନେଇଥିଲେ ଏବଂ ଗାନ୍ଧୀଙ୍କର

ଆଶୀର୍ବାଦ ଉପରେ ମିଳିଥିଲା, ତାହାର ବର୍ଣ୍ଣନା ମହାଦେବ ଭାଇଙ୍କ ଭାଷାରେ ଦିଆଗଲା ।

"ଗାନ୍ଧୀଙ୍କର ଦିନ ତିନିଟା ବେଳେ ବିଦ୍ୟାପୀଠକୁ ଯିବାର ଥାଏ । ସେ ପ୍ରତିନିଧିମାନଙ୍କୁ ବାଟରେ ଦେଖା କରିବାକୁ ସମୟ ଦେଇଥା'ନ୍ତି ।

କଲ୍ୟାଣଜୀ ଭାଇ କଥା ଆରମ୍ଭ କରି କହିଲେ, 'ଲୋକେ ନରମ ଗରମ ଉଭୟେ ଅଛନ୍ତି ।' ବୃଦ୍ଧି ଜମା ନ ଦେବାକୁ ସମସ୍ତେ ରାଜି ଥିଲାଭଳି ଜଣାପଡ଼ୁଛି···ମୀଜଣା ବାଇଶି ଟଙ୍କା ବଢ଼ିଛି । ସେ ବାଇଶି ଟଙ୍କାକୁ ନ ଦେଇ ସାବିକ ଜମାକୁ ଦାଖଲ କରିଦେବୁ ଏଥିରେ ସମସ୍ତେ ଏକମତ ।'

ଗାନ୍ଧୀ କହିଲେ, 'ଏହାବଡ଼ ଭୟାନକ କଥା । ତୁମର ପଇସାରେ ସରକାର ତୁମ ସଙ୍ଗେ ଲଢ଼ିବ ଓ ତୁମଠାରୁ ପଇସା ଅସୁଲ କରି ନେବ । ଲଢ଼େଇ ଆରମ୍ଭ କରିବାର ଏପରି ସର୍ତ୍ତକର ଲଢ଼ ଯେ ସାବିକ ଜମା ଦାଖଲ କରିବାକୁ ରାଜିଅଛୁ ମାତ୍ର ବୃଦ୍ଧି ଜମା ରଦ୍ଦ ନ ହେବାଯାଏ ପାହୁଲାଟିଏ ଦାଖଲ କରିବୁ ନାହିଁ । ଏଭଳି କରିବାକୁ ଲୋକେ ପ୍ରସ୍ତୁତ ଅଛନ୍ତି କି ?

କଲ୍ୟାଣଜୀ—'ସହରତଳି ଗାଁ ରେ ଜୋର୍ ନାହିଁ, ବଣିଆ ଲୋକେ ଠିକାଏ ଅଟାଅଛ ହେଉଛନ୍ତି, ତାଙ୍କର ଡର ତାଙ୍କର ଅଧିକାଂଶ ଜମି ଖାସ୍ ହୋଇଯିବ ଓ ନିଲାମରେ ସାବିକ ମାଲିକ ବଣିପରଜଙ୍କ ହାତକୁ ଚାଲିଯିବ । ଅନ୍ୟମାନଙ୍କ ଭିତରେ ଅଧିକାଂଶ ପୂରା ରାଜସ୍ୱ ନ ଦେବାକୁ ପ୍ରସ୍ତୁତ ଅଛନ୍ତି ।'

ଗାନ୍ଧୀଜୀ—'ଅଚ୍ଛା, ଲଢ଼ିବାକୁ ପ୍ରସ୍ତୁତ ଏହା ମାନିନେଲି । କିନ୍ତୁ ଏ ଜମା ବୃଦ୍ଧିର ପ୍ରଶ୍ନରେ ସତ୍ୟ ଅଛି ତ ? ସରକାର ନ ମାନୁ କିନ୍ତୁ ଦେଶ ସରକାରର ଅନ୍ୟାୟତା ସହଜରେ ବୁଝିପାରିବ ତ ?'

କଲ୍ୟାଣଜୀ—'ହଁ, ନରହର ଭାଇ ଏକ ଲେଖାରେ ଏ ଅନ୍ୟାୟକୁ ଭଲରକମ ବୁଝାଇ ଦେଇଛନ୍ତି ।'

ଗାନ୍ଧୀଜୀ—ନରହର ଲେଖା ପଢ଼ିଛି ବୋଲି ମନେ ପଡ଼ୁଛି, କିନ୍ତୁ ଜମି ବୃଦ୍ଧି ବନ୍ଦୋବସ୍ତରେ ସେଥିରେ ଯେଉଁ ଯୁକ୍ତି ଥିଲା ତାହା ମୋର ମନେ ନାହିଁ । ସେ ଯାହା ହେଉ, ଏତିକ ମନେରଖିବା ଉଚିତ ଯେ ବାହାରେ ଲୋକମତ ଆମପକ୍ଷରେ ରହିବା ଆବଶ୍ୟକ; ତେଣୁ ଅନ୍ୟାୟଟା ଅଖିକୁ ସଫା ଦେଖା ଯାଉଥିବା ଦରକାର । ଆଉ ଗୋଟିଏ କଥା, ଲଢ଼ିବାକୁ ତିଆର ଅଛନ୍ତି ସତ, କିନ୍ତୁ ସତ୍ୟାଗ୍ରହର ଅସଲ ରହସ୍ୟ ବୁଝିଅଛନ୍ତିତ ? ଏତିକ ଯଦି ନ ବୁଝିଥିବେ ଏବଂ ବଲ୍ଲଭ ଭାଇ ବଳରେ ଠିଆ ହୋଇଥିବେ, ତେବେ ବଲ୍ଲଭ ଭାଇ ଓ ଆମ ସମସ୍ତଙ୍କୁ ସରକାର ଧରିନେଲେ ଲୋକେ ଟାଣ ଧରି ରହିବେ ତ ?'

କଲ୍ୟାଣଜୀ—'ଏତେ ଗମ୍ଭୀରକୁ ଅନୁସନ୍ଧାନ କରି ଦେଖି ନାହିଁ ।'

ଗାନ୍ଧୀଜୀ—'ହଉ, ଏତିକ ଜାଣିବାର ରହିଲା, କିନ୍ତୁ ବଲ୍ଲଭ ଭାଇ କ'ଣ କହୁଛନ୍ତି ?' ଏହିପରି ଆଲୋଚନା ହେଉଛି ବଲ୍ଲଭ ଭାଇ ସାସ୍ତା ଉପରେ ଆସି ବେଠିଲେ ।

ବଲ୍ଲଭ ଭାଇ କହିଲେ, ଏମାନଙ୍କର ଓଜର ଆପତ୍ତି ଯାଞ୍ଚ କରି ଦେଖିଛି ଏବଂ ଲଢ଼େଇର ଯୋଗ୍ୟ ବୋଲି ଜଣା ପଡ଼ୁଛି । ବଲ୍ଲଭ ଭାଇ ନିଷ୍ପତ୍ତି କରି ସାରିଛନ୍ତି ଏହାର ସୂଚନା ପାଇବା ସାଙ୍ଗେ ସାଙ୍ଗେ ଗାନ୍ଧୀ କହି ପକାଇଥିଲେ, 'ତେବେତ ମୁଁ ଏତିକ ଆଶା କରୁଛି ବାରଡ଼ୋଲୀ ଗୁଜରାଟର ଜୟ ହେବ ।'

( ୫୪ )

( ୨ୟ )

ବଲ୍ଲଭ ଭାଇ ଫେବୃୟାରୀ ମାସରେ ବାର୍ଦ୍ଦୋଲୀ ଗଲେ । ଚାଷୀମାନଙ୍କ ସଙ୍ଗେ ଜଣ ଜଣକଆ ଓ ସଭା ସମିତି କରି ଲୋକମାନଙ୍କ ମନକଥା ଯାଞ୍ଚ କରି ଦେଖିଥିଲେ । ବାରତାରିଖ ଫେବୃୟାରୀରେ ବାର୍ଦ୍ଦୋଲୀଠାରେ ବଡ଼ ସଭା ହୋଇଥିଲା । ତା ପୂର୍ବରୁ ବଲ୍ଲଭଭାଇ ଲାଟସାହେବଙ୍କୁ ଚିଠି ଲେଖିଲେ ସୁଦ୍ଧା କୌଣସି ଜବାବ ସମୟରେ ଆସି ନ ଥିଲା । ସେହି ସଭାରେ ସର୍ଦ୍ଦାର ବଲ୍ଲଭଭାଇ କହିଥିଲେ, "ଦେଖ, ଏହା ଖାଲି ଲକ୍ଷେ ବା ଦେଢ଼ଲକ୍ଷ ଟଙ୍କା ବଢ଼ିଯିବାର ପ୍ରଶ୍ନ ନୁହଁ । କିମ୍ବା ତିରିଶି ବର୍ଷରେ ସାଢ଼େ ତିରିଶ ଲକ୍ଷ ଟଙ୍କାର ପ୍ରଶ୍ନ ନୁହଁ । ଏଥିରେ ସତ୍ୟ, ମିଛର ପ୍ରଶ୍ନ ଆତ୍ମସମ୍ମାନର ପ୍ରଶ୍ନ ଅଛି । ଏ ସରକାରଙ୍କ ଘରେ ସବୁଦିନେ ଚାଷୀଙ୍କ କଥା ଶୁଣିବାକୁ କେହି ନାହିଁ, ଏହି ପ୍ରଥା ବିରୁଦ୍ଧରେ ଏହି ଲଢ଼େଇ କରିବାକୁ ପଡ଼ୁଛି । ରାଜ୍ୟର ସବୁ ଭାର ଚାଷୀ ଉପରେ । ରାଜ୍ୟର ବ୍ୟବସ୍ଥା ଚାଷୀ ଉପରେ ଚାଲୁଛି । ତଥାପି ତାହା କଥା ଶୁଣିବାକୁ କେହି ନାହିଁ । ତାକୁ ନ୍ୟାୟ ଦେବାକୁ କେହି ନାହିଁ । ... ଏହି ଅବସ୍ଥା ବିରୁଦ୍ଧରେ ଠିଆ ହେବା ତମର ଧର୍ମ । ଏମିତି ଠିଆ ହବ ଯେ ଭଗବାନଙ୍କ ପାଖରେ ଜବାବ ଦେବାକୁ ପଡ଼ିଲେ ତମ ଉପରେ ଯେମିତି କୌଣସି ଦୋଷ ନ ପଡ଼େ । ମନକୁ କାବୁରେ ରଖି, ସତ୍ୟ ଉପରେ ଅଟଳ ରହି, ସଂଯମ ପାଳି ସରକାର ସଙ୍ଗେ ଯୁଝିବାକୁ ହେବ । ସରକାରୀ କର୍ମଚାରୀ ଆସିବେ, ତମକୁ ଦାହାଗଞ୍ଜି କରିବେ, ତମକୁ ଚିଡ଼ାଇବାକୁ କେତେ କଥା କହିବେ, ତଥାପି ଅସଲ ମୂଳ କଥାକୁ ତମେ ଛାଡ଼ିବ ନାହିଁ । ଅହିଂସାର ପ୍ରତିଜ୍ଞାରୁ ଟଳିବ ନାହିଁ । ଶାନ୍ତିରେ, ସଂଯତ ଭାବରେ ଦୃଢ଼ ରହିବ ଯେ ଆମେ ଆପଣା ହାତରେ

ସରକାରଙ୍କୁ ଯାହୁଲଟିଏ ଦେବୁ ନାହିଁ । କୋରଣୀ କର, ଜମି ଖାସ୍ କର, ଫସଲ ନିଅ ଯାହା କର କୋର ଜବରଦସ୍ତିରେ କର, ସ୍ୱେଚ୍ଛାରେ ଆମ ହାତରେ ତମକୁ କିଛି ମିଳିବ ନାହିଁ । ଏଯ୍ହା ହେଉଛି ତମ ଲଢେଇର ମୂଳ କଥା ।”

ସଭାରେ ସବୁ ବିଷୟ ଚର୍ଚ୍ଚା ହେବା ପରେ ଏହି ପ୍ରସ୍ତାବ ସର୍ବସମ୍ମତି କ୍ରମେ ମଞ୍ଜୁର ହୋଇଥିଲା, “ବାର୍ଦ୍ଦୋଲୀ ତାଲୁକାରେ ଖାତାଦାରମାନଙ୍କର ଏ ସଭା ସ୍ଥିର କରୁଛି ଯେ ରାଜସ୍ୱରେ ସରକାର ଶତକଡ଼ା ଅଧିକା ନେବାକୁ ଜଣାଇ ଅଛନ୍ତି, ତାହା ଅନ୍ୟାୟ ଅଟଥା, ଓ ଯବରଦସ୍ତି କରାଯାଉଛି । ଅତଏବ ଯେ ପର୍ଯ୍ୟନ୍ତ ସରକାର ପୁରୁଣା ରାଜସ୍ୱକୁ ପୂରା ରାଜସ୍ୱ ବୋଲି ଗ୍ରହଣ ନ କରୁଛନ୍ତି କିମ୍ବା ନିରପେକ୍ଷ ପଞ୍ଚାୟତ ମାରଫତରେ ଏ ଜମା ବୃଦ୍ଧିକୁ ପୁଣି ଯାଞ୍ଚ କରିବାକୁ ରାଜି ନ ହେଉଛନ୍ତି, ସେ ପର୍ଯ୍ୟନ୍ତ ଆମେ ସରକାରଙ୍କୁ ରାଜସ୍ୱ ଆଦୌ ଦେବୁ ନାହିଁ । ସେଥିରେ ସରକାର କୋରଣୀ, ଖାସ୍, ଇତ୍ୟାଦ ଯାହା ପାରନ୍ତି କରନ୍ତୁ, ସେଥିରୁ ଯେ ସବୁ କଷ୍ଟ ସହିବାକୁ ପଡ଼ିବ ତାହା ଶାନ୍ତିରେ ସହିବାକୁ ହେବ । ବୃଦ୍ଧି ରାଜସ୍ୱ ଛଡ଼ା ପୁରୁଣା ରାଜସ୍ୱକୁ ସରକାର ପୂରା ରାଜସ୍ୱ ବୋଲି ନେବାକୁ ରାଜି ହେଲେ ତାହା ସଙ୍ଗେ ସଙ୍ଗେ ବିନା ଓଜର ଅପତ୍ତିରେ ସଙ୍ଗେ ସଙ୍ଗେ ଦେଇଦେବାକୁ ହେବ ।”

( ୪୪ )

ସର୍ଦ୍ଦାର ବଲ୍ଲଭ ଭାଇ ଢାଳବଳମ୍ବ ନ କରି ସତ୍ୟାଗ୍ରହର ଆୟୋଜନ କରି ଦେଇଥିଲେ । ବଲ୍ଲଭ ଭାଇ ମୂଳରୁ ଲୋକଶିକ୍ଷା ଉପରେ ଖୁବ୍ ଜୋର ଦେଇଥିଲେ । ସତ୍ୟାଗ୍ରହ ସଂଖ୍ୟା ଉପରେ ନିର୍ଭର କରେ ନାହିଁ, ଅଳ୍ପ କେତେଜଣ ସଚ୍ଚା ସତ୍ୟାଗ୍ରହୀ ମରିବାକୁ ତାହାର ପଡ଼ିଲେ ସତ୍ୟାଗ୍ରହର ବିଜୟ ନିଶ୍ଚିତ । ବଲ୍ଲଭ ଭାଇ ଏହା

ଭଲକରି ବୁଝିଥିଲେ ସୁଦ୍ଧା ସେ ଏହି ସୁଯୋଗରେ ଏ ମୂର୍ଦ୍ଧାର କାଡକୁ ଜାଅବାକୁ ଇଚ୍ଛା କରିଥିଲେ । ତେଣୁ ତାଲୁକାଟିକୁ ଗୃହଭାଗ କରି ପ୍ରତ୍ୟେକ ବିଭାଗରେ ଆଶ୍ରମ ଗଢ଼ି ସେଠାରେ ମୁଖ୍ୟ ବିଶ୍ଟ କର୍ମୀମାନଙ୍କୁ ରଖିଥିଲେ । ପ୍ରତ୍ୟେକ ଆଶ୍ରମ ଅଧୀନରେ ଭିନ୍ନ ଭିନ୍ନ ଗ୍ରାମର ଅନ୍ୟ କର୍ମୀମାନେ ମଧ୍ୟ ହେଉଥିଲେ । ସାପ୍ତାହିକ ପତ୍ରିକା ଛପା ହୋଇ ବଣ୍ଟା ହେଉଥିଲା ଏବଂ ଅନ୍ୟାନ୍ୟ ଗଠନମୂଳକ କାମ ମଧ୍ୟ କରାଯାଉଥିଲା ।

ଏହିଭଳି ବ୍ୟୂହ ରଚନା ହେଉଥିବା ବେଳେ ସରକାରଙ୍କଠାରୁ ଖାଣ୍ଡେ ଜବାବ ଆସିଲା । ସେଥିରେ କାମ୍ଭୁଡ଼ କରିବାର କୌଣସି ସୂଚନା ତ ଦୂରର କଥା, ଓଲଟା ବାହାରର ଲୋକେ ମତେଇ ଗୋଳମାଳ କରୁଛନ୍ତି ବୋଲି ବଲ୍ଲଭ ଭାଇଙ୍କ ଉପରେ ଆକ୍ଷେପ କରାଯାଇଥିଲା ।

ଏହି ସମ୍ପର୍କରେ ୟଂ ଇଣ୍ଡିଆ ଖବର କାଗଜରେ ଗାନ୍ଧୀ ଗୋଟିଏ ପ୍ରବନ୍ଧ ଲେଖିଥିଲେ; ସେଥିରୁ ସ୍ପଷ୍ଟ ସବୁ ବିଷୟ ବୁଝାପଡ଼ୁଛି, "...ବଲ୍ଲଭ ଭାଇଙ୍କ ପଦର ସାରାଂଶ ଏହା । ସରକାର ଓ ଲୋକଙ୍କ ଭିତରେ ଏକ ସାଧାରଣ ପଞ୍ଚାୟତ ହେଉ । ଇଂରେଜୀ ଭାଷାରେ କହିଲେ, ସରକାରଙ୍କୁ ନେଇ କାଠଗଡ଼ାରେ ଠିଆକରିଦେବା ଭଳି କଥାଟା ହୋଇ ଯାଉଛି । ସରକାର ଟଙ୍କା ବିଭାଗକୁ ଅଦାଲତର ଇଲାକା ବାହାରେ ରଖିଛନ୍ତି । ଏହାର କାରଣ ସାଧାରଣ ଲୋକଙ୍କ ବୁଦ୍ଧିରେ ଦଶୁନାହିଁ । ସେଥିପାଇଁ ତ ସରକାର ପଞ୍ଚାୟତରେ ପଶୁ ନାହାନ୍ତି ।

"ମାତ୍ର ଯେଉଁଠି ରାଜସ୍ୱ ବିଷୟ ସାଧାରଣ ଅଦାଲତ ବାହାର ସେଠି ଲୋକଙ୍କ ତରଫରୁ ବଲ୍ଲଭ ଭାଇ ପଞ୍ଚାୟତ ନ ମାଗି ଆଉ କ'ଣ କରନ୍ତେ ? ଆଉ କ'ଣ ସରକାରଙ୍କୁ ଦରଖାସ୍ତ ଦେଇ ଚୁପ୍

ଝୋଇ ବସି ରହୁବାକୁ କହୁଥା'ନ୍ତେ ? ତେବେ ବି ସେ କାମ କରୁ ସାରୁଛନ୍ତି ।

“.........ଏ ସରକାର ବଲ୍ଲଭଭାଇଙ୍କୁ ପରଦେଶୀ ବୋଲି କହୁଛନ୍ତି, ବାହାରର ପରଦେଶୀ ଲୋକ ବୋଲି କହୁଛନ୍ତି । ସେ ଓ ତାଙ୍କର ପରଦେଶୀ ସାଥୀମାନେ ବାର୍ଦୋଲୀ ନ ଯାଇଥିଲେ ପ୍ରଜାମାନେ ଟଙ୍କା ଦେଇ ଦଅନ୍ତେଣି । ସରକାରୀ ଏଠିର ମର୍ମ ଏହା । ଚୋର ଓଲଟା କୋଟୁଆଲକୁ ଦଣ୍ଡୁଛି । ବାର୍ଦୋଲୀ ଯେତେଦିନଯାଏ ଭାରତରେ ଅଛି, ସେତେଦିନ ବଲ୍ଲଭଭାଇ କମ୍ବା କାଶ୍ମୀରଠାରୁ କୁମାରିକାଯାଏ ବା କରାଚୀଠାରୁ ଦିବ୍ରୁଗଡ଼ ଯାଏ ଯେ କୌଣସି ଭାରତବାସୀଙ୍କୁ ଭାରତର ବାହାର ଲୋକ ବୋଲି କେମିତି କୁହାଯିବ ?—ସେ କଥା ବଲ୍ଲଭଭାଇ ବୁଝି ପାରୁନାହାନ୍ତି ବା ଅମେ କେହି ବୁଝି ପାରୁ ନାହୁଁ । ପରଦେଶୀ, ପର, ବାହାରର ଲୋକ ତ ସରକାରଙ୍କର ଇଂରେଜୀ ଚାକରମାନେ; ବରଂ ଅଧିକ ସ୍ପଷ୍ଟ କରି କହିବା ତ, କଳା ହୋଇନ୍ତୁ, ଗୋରା ହୋଇନ୍ତୁ ସରକାରଙ୍କର ସବୁ ଚାକରଯାକ ପର, ପରଦେଶୀ ଓ ବାହାରର ଲୋକ । ସରକାରଙ୍କ ଲୁଣ ଖାଉଛନ୍ତି ତ ସରକାରଙ୍କ ପକ୍ଷ ନେଉଛନ୍ତି । ଦ୍ରୋଣ, ଭୀଷ୍ମ ପ୍ରଭୃତି ଯୁଧିଷ୍ଠିରଙ୍କୁ ଜବାବ ଦେଇଥିଲେ, 'ଯାହାଙ୍କ ଲୁଣ ଖାଇଛୁ, ଆମେ ତାଙ୍କର ବୋଲି ଜାଣ' ।' ଏ ବିଦେଶୀ ସରକାର ବଲ୍ଲଭଭାଇ ପରି ଲୋକଙ୍କୁ ବାର୍ଦୋଲୀ ବାହାରର ବୋଲି ପରଦେଶୀ କହିବ ଏ କି ଭଳି ମିଥ୍ୟା ! ଦିନ ଦ୍ୱିପ୍ରହରଟାରେ ଅନ୍ଧାର ଦେଖୁଛନ୍ତି । ଯେଉଁଠି ଅବସ୍ଥା ଏ ସୀମାଯାଏ ଯାଉଛି, ସେଠୁ ନ୍ୟାୟ ଆଶା କ'ଣ କରିବା ?

“ଏ ସରକାରଙ୍କୁ ନ୍ୟାୟ କିଏ ଶିଖାଇବ ? କେବଳ ସତ୍ୟାଗ୍ରହୀ । ବୁଦ୍ଧିବାଦ୍ ପାଖରେ ସରକାର ହାରେ ନାହିଁ,

ବଳବାନ୍‌ର ବଳତ ତାର ବୁଦ୍ଧି । ଉରବାଷ୍ଣ ମନରେ ନ୍ୟାୟ ଯୋଗି ଦଅନ୍ତି । କିନ୍ତୁ ସେ ଉରବାଷ୍ଣ ସତ୍ୟାଗ୍ରହୀର ଦୋଧାଷ୍ଣ ଉରବାଷ୍ଣ ଆଗରେ ବେକାର ହୋଇଯିବ । ଯଦି ବାର୍ଦ୍ଦୋଲି ସତ୍ୟାଗ୍ରହୀଙ୍କର ସତ୍ୟ ପ୍ରତି ଅଦ୍ଧ ଥିବ, ତାହାହେଲେ ହୁଏତ ପଞ୍ଚାୟତ ନିଯୁକ୍ତ ହେବ ଅଥବା ସରକାର ବଲ୍ଲଭଭାଇଙ୍କ ଯୁକ୍ତିକୁ ମାନିନେବେ ଏବଂ ବଲ୍ଲଭଭାଇ ପରଦେଶୀ ନ ହୋଇ ସ୍ୱଦେଶୀ ହେବେ ।"

( ୪୭ )

ସତ୍ୟାଗ୍ରହ ଯୁଦ୍ଧରେ ପ୍ରଥମ ଆକ୍ରମଣ ସରକାରଙ୍କ ଆଡ଼ୁ ହୋଇଥିଲା । ଫେବ୍ରୁୟାରୀ ପନ୍ଦର ତାରିଖରେ ଚଉଦଟି ଗାଁର ପନ୍ଦର ଜଣ ଗୃହୀଙ୍କ ଉପରେ ବୃଦ୍ଧି ଜମା ଦେବା ପାଇଁ ନୋଟିସ ଜାରି ହେଲା । ସରକାରୀ ତଲାଟି (ସରବରାକାର)ମାନେ ଲୋକଙ୍କୁ ଫସୁଲେଇ ଆଦାୟର ଯୋଗାଡ଼ କରୁଥାନ୍ତି । ଲୋକେ କିନ୍ତୁ ଟାଣ ଥାନ୍ତି । କହୁଥାନ୍ତି ତାଲୁକା ତମାମ୍ ପଚ୍ଛେ ଜବାବ୍ ଶୁଣନ୍ତୁ, ଆମ ଗାଁ ପକେଇଲା ଛେପ ଚୋକିବ ନାହିଁ । ତଲାଟି ପ୍ରଭୃତି ଜଣେ ଅଧେ ହରିଜନ ଗଣିପରଙ୍କ ପ୍ରଜାଙ୍କୁ ମାଡ଼ ମାରି ଟଙ୍କା ଅସୁଲ କରିଥାନ୍ତି । ଗୋଟିଏ ଗାଁର ପ୍ରଜାମାନେ ଆପଣା ଭିତରେ କଥା ହେଉଥାନ୍ତି, "ଜମି ଖାସ୍ ହେବ ତ ହେଉ, ମୁଁ କ'ଣ କରିବି, ଏ ଦେହତ ଦିନେ ଖାସ୍ ବାଯ୍ୟାପ୍ତି ହୋଇଯିବ ! ଏ ଲଢେଇତ ଆମ ନିଜ ସ୍ୱାର୍ଥ ପାଇଁ ଚାଲିଛି । ଏଥିରେ ବଲ୍ଲଭଭାଇର ସ୍ୱାର୍ଥ କ'ଣ ? ଗାନ୍ଧୀ ବୁଢ଼ା ତ ଏଡ଼ ଅସୀମ ଲଢେଇ ଲଢ଼ିବାକୁ ବସିଥିଲା । ସେ ତ ସ୍ୱରାଜ ପାଇଁ ଲଢ଼ିବାକୁ କହୁଥିଲା, ଏଥର ବାଜି ତ ସହଜ । ବଲ୍ଲଭଭାଇ ମୁଣ୍ଡ ତଳକୁ କରି ନାହିଁ ।"

ଜଣେ ହାକିମ ଜଣେ ପ୍ରଜାକୁ କହିଲେ "ମୋ ଖାତିର୍‌ରେ ତ କିଛି ଦିଅ, ବେଶୀ ନ ହେଉଛୁ ତ ଟଙ୍କାଟିଏ ଦିଅ ।"

ବୁଢ଼ା ପ୍ରଜା କହିଲା, ନା ସାହେବ, ତମ ପ୍ରତି ତ ବହୁତ ସମ୍ମାନ ଅଛି, କିନ୍ତୁ ଆମେ କରିବା କ'ଣ, ଗାଁରେ ପୁଣି ରହିବୁ ତ ?

ହାକିମ—ତମକୁ ଜେଲ୍‌ରେ ପୂରେଇ ଦେବତ କ'ଣ ହେବ ?

ବୁଢ଼ା—ତାହିଁ ପାଇଁ, ମୁଁ କି ଦୋଷ କରିଛି । ମୁଁ ତ ରାଜଦ୍ରୋହ କରି ନାହିଁ ।

ହାକିମ ଭଦ୍ରଭାବରେ ବୁଢ଼ାଠାରୁ କ୍ଷମା ମାଗି ଆପଣା ବାଟ ଦେଖିଥିଲେ ।

ଜଣେ ଡର୍‌ମର କେତେ ଟଙ୍କା ଦେଇଦେଲା । ତାକୁ ଲୋକେ ଗାଁ ବାସନ୍ଦ କରିବାକୁ ସ୍ଥିର କରିଛନ୍ତି ଶୁଣି ବଲ୍ଲଭଭାଇ ସେତାସେତ ଯାଇଁ ଲୋକଙ୍କୁ ବୁଝାଇଥିଲେ, "ତମେ ସବୁ ରାଗି ଯାଇଛ କିନ୍ତୁ ରାଗରେ କିଛି କରିବାର ନୁହେଁ, ସବୁବେଳେ ଠେଲିଠାଲି ଯାହାକୁ ଠେକି ରଖିବ ବୋଲି ବସିଛ ତାକୁ ଶେଷଯାଏ କେମିତି ଠେକି ରଖିବ । ଆମେ ସରକାର ସଙ୍ଗେ ଲଢ଼ିବାକୁ ବସିଛୁ । ଆମେ ଦୁର୍ବଳ ଲୋକଙ୍କ ସଙ୍ଗେ ଲଢ଼ିବାକୁ ବାହାରି ନାହୁଁ । ଏମାନଙ୍କ ସଙ୍ଗେ ଲଢ଼ି ଲାଭ କ'ଣ ?......ମୁଁ ଶୁଣୁଛି ଆଉ ଜଣେ ଅଧେ ଦୁର୍ବଳଆ ଅଛନ୍ତି, ତାଙ୍କୁ କହିଦିଅ ସେ ସିଧା ଟଙ୍କା ଦାଖଲ କରିଦିଅନ୍ତୁ ।...... ଏକଥାକୁ ଆଉ ଘଣ୍ଟା ଘାଣ୍ଟି କରି ଲାଭ ନାହିଁ । ମଇଳା ଘାଣ୍ଟିଲେ ଗନ୍ଧ ବାହାରେ । ହୁସିଅର ପଣିଷ ମଇଳା ଉପରେ ଧୂଳି ଘୋଡ଼ାଇ ଦେଇ ଆଗକୁ ଚାଲିଯାଏ । ଏଥିରେ ଫଳ ଭଲ ହୋଇଥାଏ ।"......... ଏହା ଫଳରେ ଜଣେ ଅନୁତାପ କରି ଆଠ ଶହ ଟଙ୍କା ପ୍ରାୟଶ୍ଚିତ୍ତ ସ୍ୱରୂପ ସତ୍ୟାଗ୍ରହ ପାଣ୍ଠିକୁ ଦାନ କରିଥିଲା ।

ଏହି ସମୟରେ ଗାନ୍ଧୀ ସତ୍ୟାଗ୍ରହରେ ବାସନ୍ଦର ନିୟମ ସମ୍ବନ୍ଧରେ ଏକ ଲେଖା ଲେଖିଥିଲେ । "ଯେଉଁମାନେ ସରକାରୀ

ଯନ୍ତ୍ରଣା ଦେଇ ଦେବାକୁ ବାହାରୁଛନ୍ତି, ତାଙ୍କ ବିରୁଦ୍ଧରେ ସତ୍ୟାଗ୍ରହୀମାନେ ବାସନ୍ଦ ଅସ୍ତ୍ର ପ୍ରୟୋଗ କରୁଥିବାର ଖବର ପାଉଛୁ । ବାସନ୍ଦ ଅସ୍ତ୍ର ବଡ଼ ତୀବ୍ର । ତାହାକୁ ସୀମା ଭିତରେ ରଖି ସତ୍ୟାଗ୍ରହୀ ବ୍ୟବହାର କରି ପାରେ । ବାସନ୍ଦ ହିଂସକ ହୋଇପାରେ, ଅହିଂସକ ବି ହୋଇପାରେ । ସତ୍ୟାଗ୍ରହୀ ଅହିଂସକ ବାସନ୍ଦକୁ ପ୍ରୟୋଗ କରିବେ । ତେଣୁ ମୁଁ ଏଠାରେ ଦୁଇ ରକମ ବାସନ୍ଦର କେତୋଟି ଦୃଷ୍ଟାନ୍ତ ଦେଉଛି । ତାର ସେବା ନେବି ନାହିଁ ଏହା ଅହିଂସକ ବାସନ୍ଦ । ତାର ସେବା କରିବି ନାହିଁ ଏହା ହିଂସକ ବାସନ୍ଦ ହୋଇପାରେ । ବାସନ୍ଦ ଲୋକ ଘରକୁ ଖାଇବାକୁ ଯିବି ନାହିଁ, ତାର ଭୋଜି ଭିତରେ ଯିବି ନାହିଁ, ତାର ସାହାଯ୍ୟ ନେବି ନାହିଁ, ତା ସଙ୍ଗେ ବେପାର ବଣିଜ କରିବି ନାହିଁ, ଏହା ହେଲା ଅହିଂସକ ବାସନ୍ଦ ।

"ବାସନ୍ଦ ଲୋକ ବେମାର ପଡ଼ିଲେ ତାର ଶୁଶ୍ରୂଷା କରିବି ନାହିଁ, ତାହା ଘରକୁ ଡାକ୍ତର ଯିବାକୁ ମନା କରିବି, ସେ ମରିଗଲେ ତାର ଅନ୍ତ୍ୟେଷ୍ଟିକ୍ରିୟାରେ ସାହାଯ୍ୟ କରିବି ନାହିଁ, ତାକୁ କୂଅ ମନ୍ଦିର ପ୍ରଭୃତି ବ୍ୟବହାର କରିବାକୁ ଦେବି ନାହିଁ ଏହା ହିଂସକ ବାସନ୍ଦ । ଟିକଏ ଗମ୍ଭୀରକୁ ବିଚାର କରି ଦେଖିଲେ ଜଣାଯିବ ଯେ ଅହିଂସକ ବାସନ୍ଦ ବହୁତ ଦିନ ଟିକି ରହେ । ତାକୁ ଭାଙ୍ଗିବାପାଇଁ ବାହାର ଶକ୍ତି କିଛି କରି ପାରେ ନାହିଁ । ହିଂସକ ବାସନ୍ଦ ବେଶୀ ଦିନ ଟିକେ ନାହିଁ । ତାକୁ ଭାଙ୍ଗିବା ପାଇଁ ବାହାର ଶକ୍ତିର ବ୍ୟବହାର ହୋଇପାରେ । ହିଂସକ ବାସନ୍ଦ ଶେଷରେ ସତ୍ୟାଗ୍ରହ ଯୁଦ୍ଧର କ୍ଷତି କରିଥାଏ ।"

( ୪୭ )

କ୍ରମେ ଜମି ଖାସ୍ ହେବା ପାଇଁ, ବାଜ୍ୟାପ୍ତି କରିବା ପାଇଁ ନୋଟିସ ଖଣ୍ଡେ ଖଣ୍ଡେ ଆସିବାକୁ ଲାଗିଲା । ଏହି ସମ୍ବନ୍ଧରେ ସରକାରୀ ଜୁଲୁମକୁ ନାଦୀରସାହୀ ଜୁଲୁମ ବୋଲି ବର୍ଣ୍ଣନା କରି ଗାନ୍ଧୀ ଏକ ଲେଖା ଲେଖିଥିଲେ, "ଆଠ ଜଣ ବଣିକଜାତିର ସତ୍ୟାଗ୍ରହୀଙ୍କ ଉପରେ ନୋଟିସ ହୋଇଛି ଯେ ବାର ତାରିଖ ଏପ୍ରିଲ ଭିତରେ ଜମି ଖଜଣା ନ ଦେଲେ ତାଙ୍କର ସବୁ ଜମି ଖାସ୍ ହୋଇଯିବ । ଜଣକ ଉପରେ ନୋଟିସରେ ଶହେଷାଠିଏ ଟଙ୍କାର ଖଜଣା ଅଛି ବୋଲି ଲେଖାଅଛି । ସରକାର ଏ ଶହେଷାଠିଏ ଟଙ୍କା ପାଇଁ ଚୋରଣ ଆଣିଥିଲେ କେହି ଦୋଷ ଦେଇ ନ ଥାନ୍ତେ କିନ୍ତୁ ଶହେଷାଠିଏ ଟଙ୍କା ପାଇଁ ହଜାର ହଜାର ଟଙ୍କାର ଜମି ବାଜ୍ୟାପ୍ତ ଏହାହିଁ "ନାଦୀରସାହୀ" । ଗୃପୁଡ଼ା ବଦଳରେ ଗୃପୁଡ଼ାଏ ନ ମାରି, ଗୃପୁଡ଼ା ବଦଳରେ ଫାସି ଲଟକାଇ ଦେବା ଏହାହିଁ ରାଜନୀତି । ଟଙ୍କାଏ ନେବା ଯାଗାରେ ହଜାରେ ଟଙ୍କା ନେବା ବାଲାକୁ ଆମେ ଅତ୍ୟାଚାରୀ କହୁଁ । ତାକୁ ଦଣ୍ଡ ମୁଣ୍ଡ ରାବଣ କହୁବା·········ବଲ୍ଲଭଭାଇ ଥରେ ନୁହେଁ, ଅନେକଥର ସାବଧାନ କରି ଦେଇଛନ୍ତି ଯେ ସରକାର ଜମି ବାଜ୍ୟାପ୍ତ କରିବା, ଜେଲ୍‌ଦେବା ଇତ୍ୟାଦି ଅନେକ ଆଇନ କ୍ଷମତା ରଖିଛନ୍ତି ଏବଂ ଏ ସବୁ କ୍ଷମତା ପ୍ରୟୋଗ କରିବାରେ ସରକାର ଟିକେହେଁ ପଛେଇବେ ନାହିଁ । ଏହା ଅନେକଥର ପ୍ରମାଣିତ ହୋଇଗଲାଣି । ତେଣୁ ଏ ବାଜ୍ୟାପ୍ତି ନୋଟିସରେ କାହାରି ଡରିବାର କିଛି ନାହିଁ । ସେ ପ୍ରଜାମାନେ ବିଶ୍ୱାସ କରନ୍ତୁ ଯେ ବାଜ୍ୟାପ୍ତ ଜମିକୁ ସରକାର ଅନ୍ୟାୟ ଭାବରେ ଦଖଲ କରି ପାରିବେ ନାହିଁ କମ୍ବା ଜମି ନୀଲାମ ଧରିବାକୁ କେହି ଦେଶଦ୍ରୋହୀ ବାହାରିଲେ ସେ ବି ରଖିପାରିବେ ନାହିଁ ।

ଏଭଳି ଲୁଣ୍ଠିତ ଜମି କଣ୍ଟାପାଗ୍ର ଭଳି ପୂର୍ତ୍ତି ନ ବାହାରିବାଯାଏ ରହିପାରିବ ନାହିଁ ।

"ତମର ପ୍ରତିଜ୍ଞା ବା ତମ ଇଜ୍ଜତ ଠାରୁ ଜମି ବଡ଼ ନୁହଁ । ଦେଶରେ ଜମି ନ ଥିବା ଲୋକ ଅସଂଖ୍ୟ ଅଛନ୍ତି । ଜମିବାଲାଙ୍କ ଜମିରେ ଗଲା ବଢ଼ିରେ ବାଲି ଚଢ଼ିଗଲା ବା ଜମି ଧସିଗଲା । ଗୁଜୁରାଟବାସୀମାନେ ଦୈବୀ ବିପଦବେଳେ ଯେମିତି ଧୈର୍ଯ୍ୟ ଓ ବୀରତ୍ୱ ଦେଖାଇଥିଲେ ସେମିତି ବାର୍ଦୋଲୀ ପ୍ରଜାମାନେ ରାଜଦଣ୍ଡ-ରୂପୀ ବନ୍ୟାକୁ ସହିଯିବେ ଏବଂ ଅପଣାର ପ୍ରତିଜ୍ଞା ବଜାୟ ରଖିବେ ।"

ଏହି ସମୟରୁ ବଲ୍ଲଭଭାଇଙ୍କ ନାମ ଗୃଷ୍ଟୀ ସର୍ଦ୍ଦାର ହୋଇଥିଲା ଏବଂ ଅଜିକାଲି ସର୍ଦ୍ଦାର ବଲ୍ଲଭଭାଇ ବୋଲି ସମସ୍ତେ ଡାକୁଛନ୍ତି । ଏ ନାଁ ତାଙ୍କୁ କେମିତି ମିଳିଲା ସେ ସମ୍ବନ୍ଧରେ ମହାଦେବଭାଇ ତାଙ୍କ ବହିରେ ଲେଖିଛନ୍ତି, "ଗାନ୍ଧୀ ଯେଉଁ ଦିନଠାରୁ ଭାରତରେ ଗୋଡ଼ ଦେଲେଣି ସେହି ଦିନଠାରୁ ଅସଲ ହିନ୍ଦୁସ୍ଥାନ କେଉଁଠି ଅଛି, ସେ ବିଷୟ ଶିକ୍ଷିତ ଲୋକଙ୍କ ମୁଣ୍ଡରେ ପୂରେଇବାକୁ ସେ ଭଲେ ହେଲେ ତ୍ରୁଟି କରି ନାହାନ୍ତି ଏବଂ ଅସଲ ଭାରତବର୍ଷର ଉଦ୍ଧାର ପାଇଁ ଗୋଟିଏ ଦୁଇଟି ମନ୍ତ୍ର ମଧ୍ୟ ଲୋକଙ୍କ ଆଗରେ ରଖିଦେଇଛନ୍ତି । ଗୁଜୁରାଟରେ ଏ ମନ୍ତ୍ରକୁ କାମରେ ଲଗାଇବା ପାଇଁ ସ୍ୱର୍ଗୀୟ ମଗନଲାଲ ଓ ବଲ୍ଲଭଭାଇ ଯାହା କରିଛନ୍ତି ତାହା ଆଉ କେହି କରି ନାହାନ୍ତି ।

'ଦେଶର କେନ୍ଦ୍ର ଗୃଷ୍ଟୀ' ଏ ମହାସତ୍ୟ ୧୯୧୭।୧୮ରେ ଗାନ୍ଧିଜୀ ବଲ୍ଲଭଭାଇଙ୍କଠାରେ ଜାଗ୍ରତ କରେଇଛନ୍ତି ବୋଲି କୁହାଯାଇ ପାରେ । କାରଣ ତାଙ୍କ ଭିତରେ ଭିତରେ ଏହା ଲୁଚିକରି ଥିଲା । ମାତ୍ର ଏ ସତ୍ୟ ପ୍ରକଟ ହେବା ସଙ୍ଗେ ସଙ୍ଗେ ବଲ୍ଲଭଭାଇଙ୍କ ଭିତରୁ

ଯେମିତ ଉଚ୍ଛଳ ଉଠୁଥିଲା ସେମିତ ଅନ୍ୟ କାହାର ଭାଗ୍ୟରେ ଘଟି ନାହିଁ । ଗୃହୀର ସ୍ଥାନ କେଉଁଠି, ଗୃହୀର ଅବସ୍ଥା କ'ଣ ଏବ ଗୃହୀକୁ ଠିଆ କରିବାକୁ ସାଧନ କ'ଣ ଅଛି, ସେତକ ସେ ବୁଝିଥିଲେ । ଯାହାଙ୍କର ସର୍ବସ୍ୱ ଗୃହୀ, ତାଙ୍କର ଶିଷ୍ୟ ଏ ତକୋଟି ବିଷୟ ଭଲକର ବୁଝିଗଲେ; ଔପରନ୍ତୁ ଗୁରୁଙ୍କଠାରୁ ଅଧିକ ଭଲ-ଭାବରେ ସେ ସେହି ରହସ୍ୟକୁ ଖୋଲିକରି ଲୋକଙ୍କ ଆଗରେ ବତାଇ ଦେଇଥିଲେ । ସେହି ଦିନରୁ ଗୃହୀଙ୍କ ବ୍ୟତୀତ ଅନ୍ୟ କୌଣସି ଶ୍ରେଣୀର ହିତ ପାଇଁ ତାଙ୍କ ହୃଦୟରେ ଅଧିକ ଶ୍ରଦ୍ଧା ସ୍ଥାନ ପାଇ ନାହିଁ । ଗୃହୀଙ୍କ ସେବା ତାଙ୍କୁ ପ୍ରଥମେ ଖେଡ଼ା ସତ୍ୟାଗ୍ରହରେ ମିଳିଥିଲା । ପରେ ବୋରସାଦରେ ତାହାର ପୁନଃ ପ୍ରୟୋଗ ହୋଇ-ଥିଲା, କିନ୍ତୁ ବାର୍ଦ୍ଦୋଲୀରେ ଯେ ସୁଯୋଗ ସେ ପାଇଥିଲେ ତାହା ଅପୂର୍ବ ଥିଲା ।......

"ସେ ପ୍ରାୟ କହୁଥାନ୍ତି ପୃଥିବୀ ଉପରେ ଛାତି ଟେକି ଚାଲିବାର ଅଧିକାର କାହାର ଅଛି ତାହା ମାଟିରୁ ଧନ ଧାନ୍ୟ ଉତ୍ପନ୍ନ କରୁଥିବା ସେହି ଗୃହୀର ଅଛି ।......ଗୃହୀ ଭଲ ଦ୍ୱିଜ ମଣିଷ, ଯାହାର କୌଣସି ଖରାପ ଅଭ୍ୟାସ ନାହିଁ, ଯେ କୌଣସି ଦୋଷ କରେ ନାହିଁ, ଯେ ବହୁପରିଶ୍ରମୀ, ପରସେବା କରି ପେଟ ପୋଷେ, ଯେ ଈଶ୍ୱରଙ୍କୁ ଡରେ, ତାହାର ଈଶ୍ୱର ଛଡ଼ା ଆଉ କାହାକୁ ଡରିବାର ଅଛି ?"

ସେହି ସମ୍ବନ୍ଧରେ ଆଉ ଗୋଟିଏ ବକ୍ତୃତା ଏଠାରେ ଉଦ୍ଧାର କରିଗଲା,—"ସମସ୍ତ ଜଗତ ଗୃହୀ ଉପରେ ନିର୍ବାହ ହେଉଛି । ଦୁନିଆ ଚଳୁଛି ଏକ୍ ଗୃହୀ ଏକ୍ ମୂଲିଆ ଉପରେ, ତଥାପି ସବୁଠାରୁ ବେଶୀ ଜୁଲୁମ ଯଦି କେହି ସହୁଥାନ୍ତି ତେବେ ଏହି ଦୁଇଜଣ ସହୁଛନ୍ତି; କାରଣ, ସେ ଦୁହେଁ ସବୁ ଦୁଃଖ ସବୁ

ଜୁଲୁମ ଚୁପ୍‌ଚାପ୍ କରି ସହୁଯାନ୍ତି । ମୁଁ ନିଜେ କୃଷୀ, ମୁଁ କୃଷୀଙ୍କ ହୃଦୟରେ ପଶି ପାରେ, ତେଣୁ ତାର ଦୁଃଖର କାରଣ କ'ଣ ମୁଁ ତାହା ବୁଝିପାରୁଛି । ଦୁଃଖର କାରଣ, ସେ ନିଜେ ହତାଶ ହୋଇ ଯାଉଛି, ଏତେ ବଡ଼ ଶକ୍ତି ଆଗରେ ସେ କ'ଣ କରିପାରିବ, ଏୟା ମାନି ନେଉଛି । ସରକାର ନାଁ ରେ ଗୋଟାଏ ପିଆଦା ଆସି ତାକୁ ଧମକେଇ ଯାଉଛି, ଗାଳିଦେଇ ଯାଉଛି, ବେଠି କରେଇ ନେଉଛି । ସରକାର ଇଚ୍ଛା ଅନୁସାରେ ଯେତେ ପାରେ ତାର ଉପରେ କର ଲଦି ଦେଇଯାଉଛି । ବର୍ଷସାକ ଖଟି ଖଟି ଗଛ ଉଠାଇବ, ତା ଉପରେ କର, ଜମି ଖୋଳି ହିଡ଼ ଦେଇ କିଆରି ତିଆରି କରିବ ସେଥିପାଇଁ କର, ଉପରୁ ବର୍ଷାପାଣି କିଆରିରେ ପଡ଼ିବ ସେଥିପାଇଁ କର, କୂଅ ଖୋଳି କୃଷୀ ପାଣି କାଢ଼ିବ ତ ସେଥିପାଇଁ କର । ବେପାରୀ ଘରେ ଦୋକାନ କରି ବସିବ । ତାର ବର୍ଷକୁ ଦୁଇ ହଜାର ଯାଏ ଆୟ ଉପରେ ଟିକସ ନାହିଁ କିନ୍ତୁ କୃଷୀର ଗୁଣ୍ଠେ ଜମି ନ ଥାଉ ପଛକେ ସେଥିରେ ବଳଦ ରଖିବ, ମଇଁଷି ରଖିବ, ଗୋରୁ ଗାଈଙ୍କ ସଙ୍ଗେ ଗୋରୁ ଗାଈ ହେବ । ଗୋବର ଖାତ କରିବ, ବର୍ଷାରେ ଅଣ୍ଟୁଏ ପାଣିରେ କଙ୍କଡ଼ାବିଛା ସଣସଣରେ ଧାନଗଛ ରୋଇବ, ତେବେ ଯାଇ ସେଥିରୁ ଖାଇବା ଧାନଗଣ୍ଡାକ ପାଇବ । କରଜ କରି ମଞ୍ଜି ଆଣିବ, ସେଥିରେ କିଛି କପା ଫଳିବ ତ ପିଲାଛୁଆଙ୍କୁ ସାଙ୍ଗରେ ନେଇ ତାକୁ ତୋଳିବ, ଗାଡ଼ିରେ ବୋଝେଇ କରି ନେଇ ତାକୁ ବିକିବ, ଏତେକରି ତାକୁ ଯାହା ପାଞ୍ଚ ପଇସା ମିଳିବ ସେଥିରେ ପୁଣି ସରକାରଙ୍କ ଖଜଣା ! !......

ଯେଉଁଠିକି ଯିବୁ ଜମି ମିଳିବ, କିନ୍ତୁ କୃଷୀର ପ୍ରତିଜ୍ଞା ତୁଟିଲେ ଜମିରେ ବର୍ଷା ହେବ କି ? କୃଷୀ ଜବାବ ନ ରଖିଲେ ପୃଥିବୀ ରସାତଳକୁ ଯିବ ।

( ୪୮ )

ସରକାରୀ ଜୁଲୁମର ମାତ୍ରା ବଢ଼ିବାକୁ ଲାଗିଲା । ସମ୍ପତ୍ତି କ୍ରୋକରେ ସାହାଯ୍ୟ କରିବା ପାଇଁ ବମ୍ବେରୁ ପଠାଣ ଦିଆଗ୍ରା ସରକାର ଆଣାଇଥିଲେ । ଏମାନଙ୍କର କାମ ଥିଲା କ୍ରୋକ ହୋଇଥିବା ପଶୁଙ୍କୁ ଧରିବା, ବାନ୍ଧିବା, ଥାନାକୁ ନେବା ଇତ୍ୟାଦି । କାରଣ, ଅନ୍ୟ ମୂଲିଆ ମିଳୁ ନ ଥିଲେ । ଏଣେ ଲୋକେ ବି ତାଙ୍କ ସଙ୍ଗଠନ କରୁଥାନ୍ତି । କାଗାଏ ଜାଗାଏ ପୁଲିସ ଓ ସରକାରୀ କର୍ମଚାରୀମାନଙ୍କୁ ଖାଇବାକୁ ମିଳିଲା ନାହିଁ । କାଳେ କେଉଁଠି ଲୋକେ ସୀମା ଲଙ୍ଘନ କରିଯିବେ ତେଣୁ ସର୍ଦ୍ଦାର କଡ଼ା ଆଇନ କଲେ । ତାଙ୍କ ଛଡ଼ା ଆଉ କାହାକୁ ବକ୍ତୃତା ଦେବା ମନା ହେଲା । ଏହି ସମ୍ପର୍କରେ ସର୍ଦ୍ଦାର ଗୋଟିଏ ବକ୍ତୃତାରେ କହିଥିଲେ "ଆମର ଲଢ଼େଇ ବନ୍ଧୁବାନ୍ଧବଙ୍କ ସଙ୍ଗେ, ଏ ଗରିବ ଗୁଜୁରଙ୍କ ସଙ୍ଗେ ନୁହେଁ । ସବୁ ଦୁଃଖକୁ ଧୀର ସ୍ଥିରଭାବରେ ସହିଯିବାରେ ଆମର ପ୍ରକୃତ ବଳ । ସରକାରର ଦୁର୍ବଳତା ଅଛି, ତେଣୁ ସେ ପୁଲିସ ସାହାଯ୍ୟ ନେଉଛନ୍ତି ଏବଂ ଅବକାରୀ ବିଭାଗର ସାହାଯ୍ୟ ନେଇ ଆମକୁ ଦବଉଛନ୍ତି । ଏପରି ଅବସ୍ଥାରେ ପୁଲିସର ଖାଦ୍ୟପେୟ ଆଦି ମିଳିବାରେ ବାଧା ଦେବା ଉଚିତ ନୁହେଁ । କ୍ରୋକରେ ମରୁଥିବା ସୈନ୍ୟ ସଙ୍ଗେ ଲଢ଼ିବା ଧର୍ମଯୁଦ୍ଧ ନୁହେଁ । ଅତଏବ ମୋର ଅନୁରୋଧ ଏ ଭଳି କିଛି ନିୟମ କରିଥାଅ ତ ତାକୁ ଉଠାଇ ନିଅ ।

"ଆଉ ଗୋଟିଏ କଥା । ଯେତେ ଦିନ ଚୋରଣୀ କାମ ଚାଲିଛି, ସେତେ ଦିନ ଲୋକେ ଦଳ ବାନ୍ଧି ଜମା ହୁଅନ୍ତୁ ନାହିଁ । ସରକାରର ଇଚ୍ଛା ଦଙ୍ଗା ଫିସାଦ କରେଇ ଦବା; ଲୋକେ ଏକାଠି ଜମା ହେଲେ କାମ ହାସଲ କରିବାରେ ସରକାରକୁ ସୁଯୋଗ ମିଳିଯିବ । ଗୋଳମାଳ ଆରମ୍ଭ ହୋଇଗଲେ ଆମେ ସରିଯିବୁ । ଏ ସରକାର ପାଖରେ ବହୁତ ଅପୂର୍ବ ଅସ୍ତ୍ର ଅଛି । ବିଷସରୀ ଯୁଦ୍ଧରେ ସରକାର

ଏକ ମିନିଟ୍‌ରେ ସମସ୍ତ ବାର୍ଦ୍ଦୋଲୀ ତାଲୁକାଟାକୁ ଚୂନା କରି ପାରିବ । ତମ୍ଭକୁ ସେ ବାଟରେ ନେବାକୁ ସରକାର ଚେଷ୍ଟା କରିବ, ଲୋକଙ୍କୁ ଭୁଲେଇବ, ଲୋକେ ମୂର୍ଖ ଭଳି ଜମା ହେଲେ ସରକାର ତାଙ୍କୁ ଚିଡ଼େଇବ । ଫଳରେ କେଉଁ ଠୋକା ଯଦି ଲାଗିଯାଏ ତେବେ ସରକାର ଆମ ଉପରେ ଚଢ଼ି ବସିବ । ସେ ତାଲି ଭାଙ୍ଗନ୍ତୁ, କବାଟ ତାଡ଼ନ୍ତୁ, ତାଙ୍କୁ ଭାଙ୍ଗିବାକୁ ଦିଅ ତାଡ଼ିବାକୁ ଦିଅ । ସହଜରେ କେହିଯିବେ ଏ ଭଳି ଦାମିକା ଚିଜ ଘରେ ରଖି ନାହିଁ । ସେମାନେ କାମ କରୁଥିଲେ ତାଙ୍କ ପାଖରେ କେହି ଠିଆ ହୋଇ ରହିବ ନାହିଁ ।”

କ୍ରମେ ଗୋରୁ, ଗାଈ ଚୋରଗି ବ୍ୟାପାର ବଡ଼ ବିଚିତ୍ର ଆକାର ଧାରଣ କଲା । କାହାର ଗୋରୁ, କିଏ ଖଜଣା ଦେବାର କଥା, କାହାର ମୂଳରୁ ଜମି ଅଛି କି ନାହିଁ, ଏ ସବୁକଥା ବିଗୃହୁଛି କିଏ ? ପୁଲିସ ପଠାଣ ଗୋରୁ ମଇଁଷି ପାଇଲେ ତ ନେଇ ଗଲେ । ଏଣେ ଗାଡ଼ିବାଲମାନେ ମେଳକରି ସରକାରଙ୍କ କାମରେ ଗାଡ଼ି ଦେଉ ନ ଥିଲେ । ମିଛ ମକଦ୍ଦମା ବି ଆରମ୍ଭ ହେଲା । ରବିଶଙ୍କର ଭାଇ ନାମରେ ଜଣେ କର୍ମୀଙ୍କୁ ଧରିନେଇ ମିଛରେ ପାଞ୍ଚମାସ ଜେଲ୍ ଦିଅ ହେଲା । ଏଥିରେ ଲୋକେ ବେଶି ଝାଣ୍ଟ ହେଲେ । ଗାନ୍ଧୀ ତାଙ୍କୁ ଖଣ୍ଡେ ଚିଠି ଲେଖିଥିଲେ,—

“ଭାଇ ଶ୍ରୀ ରବିଶଙ୍କର, ତମେ କପାଳିଆ; ଯାହା ପାଉଥିଲ ଖାଇ ସନ୍ତୁଷ୍ଟ ଥିଲ, ଶୀତ ଖରା ସବୁ ସହୁଥିଲ, ଛୁଣ୍ଡା କନା ପିନ୍ଧୁଥିଲ, ଏବେ ଜେଲ୍‌ଯିବା ସଦ୍‌ଭାଗ୍ୟ ତମକୁ ପହିଲେ ମିଳିଲା । ଈଶ୍ୱର ଯଦି ଅଦଳବଦଳ କରିବାକୁ ଦେବେ ଏବଂ ତମର ଦୟା ହେବ ତେବେ ମୁଁ ତମସଙ୍ଗେ ନିଶ୍ଚୟ ଅଦଳ ବଦଳ କରିବି । ତମର ଦେଶର ଜୟ ହେଉ ।”

ଏ ସବୁ ଜୁଲମ ସମ୍ବନ୍ଧରେ ସର୍ଦ୍ଦାର ଏକ ବକ୍ତୃତାରେ କହିଥିଲେ, "ଏବେ ସରକାରଙ୍କ ମୁଣ୍ଡରେ ପିତ୍ତ ଚଢ଼ିଛି । ଲୁହା ଛୁଇଁବାକୁ ଗରମ ଥାଏ; ମାତ୍ର ହାତୁଡ଼ିର ଥଣ୍ଡା ରହିବା ଦରକାର । ହାତୁଡ଼ି ଗରମ ହେଲେ ଆପଣା ହାତ ପୋଡ଼ିଯିବ । ତମେ ଥଣ୍ଡା ହୋଇ ପଡ଼ିରହ । ଲୁହା ଗରମ ହେବା ପରେ ପୁଣି ଥଣ୍ଡା ପଡ଼ିଯାଏ ନାହିଁ କି ? କୌଣସି ସରକାର ପ୍ରଜାଙ୍କ ଉପରେ ଯେତେ ଇଚ୍ଛା ସେତେ ଗରମ ହୋଇଯାଉ, ଶେଷରେ ଥଣ୍ଡା ହେବା ଛଡ଼ା ତାକୁ ଅନ୍ୟ ଉପାୟ ନାହିଁ !

ଜୁଲୁମ ସଙ୍ଗେ ସଙ୍ଗେ ଲୋକଙ୍କ ସାହସ ବଢ଼ୁଥାଏ । କେତୋଟି ଦୃଷ୍ଟାନ୍ତ ଦେଖନ୍ତୁ ।—

ଜଣେ ଗରିବ ଦରଜୀର ତିନୋଟି ମଇଁଷି ଧରି ନେଇଥିଲେ । ସେ କୃଷୀ ନୁହେଁ କିମ୍ବା ତା ନାଁରେ ଖାତା ବି ନ ଥିଲା । ପାହାନ୍ତାରୁ ଉଠି ଦେଖିଲା ମଇଁଷି ନାହାନ୍ତି । ଦୁ'ଦିନ ପରେ ଖବର ପାଇଲା ଯେ ମଇଁଷିଗୁଡ଼ିକ ଅନ୍ୟ ମଇଁଷିଙ୍କ ସାଙ୍ଗେ ଗୋଟିଏ ଥାନାରେ ଯାଇ ଅଛନ୍ତି । ସେ ସେଠା ହାକିମଙ୍କ ପାଖକୁ ଯାଇ ଆପତ୍ତି କଲା । ହାକିମ ଷଗୃଭ କରି କହିଲେ "ତମର ମଇଁଷିଙ୍କୁ ଦୁ ଦିନ ଆମେ ଘାସ କୁଣ୍ଡା ଖାଇବାକୁ ଦେଇଛୁଁ । ଏ ଖରଚ ଦେଇ ମଇଁଷିଙ୍କୁ ନେଇଯାଅ ।" ଦରଜୀ କହିଲା, "ବାଃ ! ଏ ତ ଓଲଟା ନ୍ୟାୟ, ତମେ ମତେ କ୍ଷତିପୂରଣ ଦବ ନା ଓଲଟା ମତେ ଦଣ୍ଡୁଛ ?" ହାକିମ ଶୁଣିଲେ ନାହିଁ । ଦରଜୀ କହିଲା ହଉ ହଉ ! ଧଳା ଟୋପିବାଲା ସ୍ୱେଚ୍ଛା-ସେବକଙ୍କୁ ପଚାରି ଆସେ, କ'ଣ କରିବ ଆସି ଜଣାଇବି ।"

ହାକିମ ଏତକ ଶୁଣି ଝିଙ୍କିଏ ଭାବି ମଇଁଷି ଛାଡ଼ିଦେବାକୁ ହୁକୁମ ଦେଲେ ।

ଜଣେ କୁମ୍ଭାରର ଘର ଖୋଲା ଦେଖି ହାକିମ ଏକଦମ୍ ଭିତରକୁ ପଶିଗଲେ ଏବଂ ହାଣ୍ଡି କୁଣ୍ଡାଇରୁ କେତେକ ଜିନିଷ ଉଠାଇବାକୁ ହୁକୁମ ଦେଲେ । ଘରର ଘରଣୀ ପ୍ରେମୀ ଏ ସବୁ କାରବାର ଦେଖୁଥିଲା, କିଛି ଅର୍ଥ ବୁଝି ନ ପାରି ପଚାରିଲା "ମୋ ଘରେ ଖାଇବାକୁ ନାହିଁ, ଆଜ୍ଞା କେଉଁ ବିପଦ୍ କୁଆଡୁ ଆସିଲା ।" ତଲାଟି କହିଲା—କ'ଣ ତମର ଖାତା ନାହିଁ ? ତମ ନାଁରେ ପନ୍ଦର ଟଙ୍କା ଖଜଣା ହେଉଛି ଅଣ୍ ।

ପ୍ରେମୀ—ମୋର ଖଜଣା ! ପାଞ୍ଚବର୍ଷ ହେଲା ମୋ ପାଖରେ ଜମିର ମାଟି ଢେଲାଟିଏ ବି ନାହିଁ, ତମେ ଖଜଣା କେଉଁଠୁ ଝାଡିଲ ?

ତଲାଟି—ଏ ଘର କେଶବ ଓଡ଼ାର ଘର ନା ?

ପ୍ରେମୀ—ସେ କଥା ମୁଁ କି ଜାଣେ ? ତାଠୁଁ ନିଅ ।

ହାକିମ—ଘର ବୁଆଙ୍କ ନାମ କ'ଣ ?

ପ୍ରେମୀ—ମୁଁ କହିବି ନାହିଁ । ମୋର ଖାତା ନାହିଁ, ବାହାରକୁ ଯାଅ ।

ହାକିମ ଘରର ପଛ ଦରଜା ବାଟେ ପଶିବାକୁ ଉଦ୍ୟମ କରୁଥିଲେ, ପ୍ରେମୀ ସେଠି ବି ତାଙ୍କୁ ଅଟକେଇ ଥିଲା । ମୁଁ ଘରେ ଥାଉଁ ଥାଉଁ ପଛବାଟେ ଯିବାକୁ ଦେବି ନାହିଁ । ଏଥି କହି ତାଙ୍କ ବାଟ ବନ୍ଦକରି ଠିଆ ହେଲା । ତା ତ୍ରିଅ କବାଟ ବନ୍ଦ କରିଦେଲା । ସମସ୍ତେ ନିରାଶ ହୋଇ ଫେରିଗଲେ ।

( ୫୯ )

ମଇମାସ ଶେଷକୁ ବାର୍ଦୋଲୀ କଥା ଭାରତର ଗୃହସ୍ଥଙ୍କ ବାଜି ଯାଇଥିଲା । ବମ୍ବେଇ ସ୍ୱଜନୈତିକ ମଣ୍ଡଳରେ ଚହଳ ପଡି ଯାଇଥିଲା । ଗୁଜୁରାଟର ଲଃସଭା ମେମ୍ବରମାନେ ଗୋଟି ଗୋଟିକରି

ଇସ୍ତଫା ଦେବା ଆରମ୍ଭ କରିଥିଲେ । ଅଜସ୍ର ପଇସା ବାହାରୁ ଜମା ହୋଇ ପଡ଼ିଥିଲା । ବାହାରୁ ସ୍ୱେଚ୍ଛାସେବକମାନେ ଆସିବାକୁ ବ୍ୟସ୍ତ କରୁଥିଲେ ।

ସୁରଟଠାରେ ଏକ ପ୍ରଜା ସମ୍ମିଳନୀ ବସିଥିଲା । ସିନ୍ଧ୍‌ର ଲାଟସଭା ମେମ୍ବର ଜୟରାମ ଦାସଜୀ ସଭାପତି ହୋଇଥିଲେ । ସେତେବେଳେ ବଡ଼ଲାଟ ସଭାର ସଭାପତି ଥାଆନ୍ତି ସ୍ୱର୍ଗୀୟ ଭିଠଲ ଭାଇ ପଟେଲ୍ । ସେ ବଡ଼ଲାଟଙ୍କୁ ଚିଠି ଲେଖିଥିଲେ ଏବଂ ବାର୍ଦୋଲିକୁ ଅର୍ଥ ସାହାଯ୍ୟ ପଠାଇଥିଲେ । ନିଜେ ବି ସତ୍ୟାଗ୍ରହରେ ଯୋଗ ଦେବାକୁ ବାହାରି ଥିଲେ । ଜୁନ୍ ୧୨ ତାରିଖରେ ବାର୍ଦୋଲି ଦିବସ ପାଳିବାକୁ କଂଗ୍ରେସ ନିର୍ଦ୍ଦେଶ ଦେଇଥିଲା । ତା ପୂର୍ବରୁ ଡେପ୍ରୋର ଜଣ ପଟେଲ୍ ଓ ଏଗାରଜଣ ତଲାଟି ଇସ୍ତଫା ଦେଇଥିଲେ । କୋଡ଼ିଏ କୋଡ଼ିଏ ବର୍ଷର ପେନ୍‌ସନ୍ ଚାକିରି ଛାଡ଼ିଦେଇ ସେମାନେ ଯଥାର୍ଥ ଦେଶପ୍ରୀତି ଦେଖାଇଥିଲେ । ସେମାନଙ୍କ ଇସ୍ତଫାରେ ଗାନ୍ଧୀ ଲେଖିଥିଲେ, "ଏମାନଙ୍କୁ ମୋର ସାଦରେ ଧନ୍ୟବାଦ୍ । ଯୁଦ୍ଧଙ୍କର ତ୍ୟାଗ ସାରା ଭାରତରେ ପ୍ରଶଂସା ପାଉଛି, ଏହିଭଳି ତ୍ୟାଗ ଆମକୁ ସ୍ୱରାଜ ଆଣିଦେବ ।"

ସରକାର ବାହାରୁ ଲୋକ ଆଣାଇ ଜମି ନିଲାମ ଧରାଉଥିଲେ । ଗାନ୍ଧୀ ଓ ସର୍ଦ୍ଦାର ତାଙ୍କ ଲେଖା ଓ ବକ୍ତୃତାରେ ଏ ଭଳି ବାହାର ଲୋକଙ୍କୁ ସାବଧାନ କରି ଦେଉଥିଲେ । ତାହା ସତ୍ତ୍ୱେ ତିନି ଯାଗାରେ ଜମି ନିଲାମ ହୋଇଯିବାରୁ ସେ ତିନି ଜମିରେ ତିନିଜଣ ନାରୀକର୍ମୀଙ୍କୁ ତମ୍ବୁ ପକେଇ ରହିବାକୁ ସର୍ଦ୍ଦାର ପଠେଇ ଦେଇଥିଲେ । ସେଥିରୁ ଜଣେ ଥିଲେ ସର୍ଦ୍ଦାରଙ୍କ ନିଜ ଝିଅ ମଣିବେନ୍ ।

ବାର୍‌ଦୋଲି ସତ୍ୟାଗ୍ରହ ଚାଲୁଥିଲାବେଳେ ସର୍ଦ୍ଦାର ସବୁବେଳେ ଲୋକଶିକ୍ଷା ପ୍ରତି ଦୃଷ୍ଟି ରଖୁଥିଲେ । ଏ ଲୋକଶିକ୍ଷାର ଏକ ନିର୍ଦ୍ଦିଷ୍ଟ

ସାଠ୍ୟକ୍ରମ ମଧ୍ୟ ଥିଲା । ତାଙ୍କର ପ୍ରଥମ କାମ ଥିଲା ଗୁଜୁରାଟର କରମା ଚରକୁଳା ଲୋକଙ୍କର ଡର ଭଙ୍ଗାଇବା । ସଙ୍ଗେ ସଙ୍ଗେ ଦୁଇପ୍ରକାର ସଂଗଠନର ଉଦ୍ୟମ କରଥିଲେ । ପ୍ରଥମ ଥିଲା ମହାଜନ ଓ ଗରିବ ଗୃଷୀଙ୍କ ଭିତରେ । ଜମି ପଟ୍ଟା ନେଲା ଲୋକ ଓ ଜମି ପଟ୍ଟା ଦେଲା ଲୋକ ଭିତରେ । ଦ୍ୱିତୀୟ ସଂଗଠନ ଥିଲା; ଜମି ଚଷୁଥିବା ସବୁ ଜାତର ଗୃଷୀଙ୍କ ଭିତରେ । ଗାନ୍ଧିଙ୍କ ଉପମା ଦେବାରେ ସରଦାରଙ୍କର ଅଦ୍ୱିତୀୟ ଶକ୍ତି ସର୍ଦ୍ଦାରଙ୍କର ସଫଳତାର ପ୍ରଧାନ କାରଣ ଥିଲା । ତାଙ୍କର କଥା ଗୃଷୀଙ୍କ ବୁଦ୍ଧିରେ ସହଜରେ ପଶି ଯାଉଥିଲା । ଥରେ ସେ କହୁଥିଲେ, "ସରକାରଟା କି ଚଳ ? କେହୁ ଦେଖିଥିଲେ କହିବ କି ? ମୁଁ ତ ଦେଖି ନାହିଁ, କାରଣ ତାହା ଭୂତପରି ରହୁଛି । ସରକାର କହିଲେ କିଏ ? ଇଏ ହାକିମ କି'ଣ ସରକାର ? ଫୌଜଦାର ନା ତଲଟି ? ମୁନ୍‌ସି ନା କାନଗୋଇ ? ସରବରାକାର ନା ବେଠିଆ ?......ସରକାର କେହି ଜଣେ ବ୍ୟକ୍ତି ନୁହେଁ, ତେଣୁ ଅମେ କାହାକୁ ସରକାର ବୋଲି ମାନିବା ? ଆପଣା ଭ୍ରମରୁ ଅମୁକଙ୍କୁ ସରକାର ବୋଲି ମାନୁଛୁ, ପରେ ତାକୁ ଡରୁଛୁ; ଏହି ଯେ ତମ ଭିତରେ ଡର ଅଛି ତାକୁ ତମ ଭିତରୁ କାଢ଼ି ପକେଇଦିଅ ।"

ଥରେ ମହାଜନଙ୍କ ପ୍ରତି କହୁଥିଲେ, "ତମେ ଗୃଷୀଙ୍କ ପ୍ରତି ଦ୍ରୋହ କରି ସରକାରଙ୍କର ବିଶ୍ୱାସୀ କାହିଁକି ହେଉଛ ? ସରକାରତ ନାନା ପ୍ରକାର କର ବସାଉଛି; କିନ୍ତୁ ଗୃଷୀ ଓଲଟା ନାନା ପ୍ରକାର ଫସଲ କରି ତମକୁ ଦେଉଛି ଏବଂ ତାହାର ଉପରେ ତମେ ଦଲାଲି ବେପାର କରି ପଇସା କମଉଛ । ତମେ ଏ ଦୁର୍ଦ୍ଧଶାଳୀ ଟ୍ୟାକ୍ସର ସର୍ବନାଶ କରୁଛ; ଗୃଷୀ ସବୁ ସହିଯିବ କିନ୍ତୁ ଗରିବ ଗୃଷୀଙ୍କ ରକ୍ଷକ ଭଗବାନ୍ ତୁମର ମଙ୍ଗଳ କରିବେ ନାହିଁ । ଯାହାଙ୍କ ମେହେନତର ଧନ ଉପରେ ତୁମେ ବଞ୍ଚି ରହୁଛ ତାଙ୍କୁ ଦଗା ଦିଅ ନାହିଁ ।"

ଅଉ ଏକ ସ୍ଥଳରେ ଗୃଷୀ ଓ ମହାଜନଙ୍କ ସମ୍ବନ୍ଧ ବର୍ଣ୍ଣନା କର କହୁଛନ୍ତି, "ଗୃଷୀ ମହାଜନ ଭିତରେ ଦୁଧ ପାଣିର ସମ୍ବନ୍ଧ ରହୁଛି । ଦୁଧ ପାଣି ମିଶିଗଲେ ଏକ ରଙ୍ଗ ହୋଇଯାନ୍ତି, ଅଲଗା କର ହୁଅନ୍ତି ନାହିଁ । ଦୁଧ ଉତୁରଲେ ପାଣି ଦୁଧକୁ ବଞ୍ଚେଇବାକୁ ହାଣ୍ଡିର ତଳେ ରହୁଯାଏ, ଦୁଧ ଉପରକୁ ଉତୁର ଉଠେ । ଦୁଧ ମଧ୍ୟ ପାଣିକୁ ବଞ୍ଚେଇବା ପାଇଁ ଉତୁର ଜଠି ନିଆଁରେ ପଶି ନିଆଁକୁ ଲିଭାଇ ଦିଏ ।"

ସତ୍ୟାଗ୍ରହର ଖ୍ୟାତି ସଙ୍ଗେ ସଙ୍ଗେ ସରକାରୀ ଦମନ ବଢୁଥାଏ । ଦାମିକା ଜମି ଏକରକମ ମୋଫତରେ ନିଲାମ ହେଉଥାଏ, ମିଛ ମୋକଦ୍ଦମା କର ଲୋକଙ୍କୁ ଜେଲ ଦିଆଯାଉଥାଏ । ସର୍ଦ୍ଦାର ଗୃରଆଡ଼େ ବୁଲି ଲୋକଙ୍କୁ ହିମତ ଦେଉଥାଆନ୍ତି ଓ ହାସ୍ୟ କୌତୁକରେ ଲୋକଙ୍କ ମନକୁ ଭୁଲେଇ ରଖିଥାନ୍ତି । ସର୍ଦ୍ଦାରଙ୍କ ଧର-ହେଲା ଖବର ଶୁଣି ଜଣେ ତାଙ୍କୁ ଖବର ସତ କି ମିଛ ପଗ୍ଚରିବାରୁ ସେ କହୁଥିଲେ, "ବୃଥା ଗୁଜବ ଶୁଣିବ ନାହିଁ ! ମତେ କାହିଁକି ଧରିବ ? ବରଂ ମଇଁଷିଙ୍କୁ ନିଲାମ କଲେ ପାଞ୍ଚଟଙ୍କା ପାଇବ, ମତେ ନିଲାମ କଲେ କ'ଣ ପାଇବ ?" ଏହି ସମୟରେ ଗୃଷୀଙ୍କର ମନୋଭାବ କିପରି ଥିଲା, ତାହା ମହାଦେବ ଭାଇଙ୍କ ସଙ୍ଗେ କେତେକ ଗୃଷୀଙ୍କର ଯେ କଥାବାର୍ତ୍ତା ହୋଇଥିଲା, ସେଥିରୁ ତାହା ବୁଝାଯିବ ।

ମହାଦେବ ଭାଇ ପଗ୍ଚରଲେ, "ସରକାରଙ୍କ ଇସ୍ତାହାର ପଢ଼ିଲ ?" ଗୃଷୀ ଜବାବ ଦେଇଥିଲା, "ହଁ, ସରକାର ଏବେ ତାଙ୍କର ଶେଷ ଉପାୟ କରବେ ।" ମହାଦେବ ଭାଇ—"କେତେଦିନ ଯାଏ ଲଢେଇ ଚଳେଇବ ?" ଗୃଷୀ—"ଯେତେଦିନ ଖୁସୀ, ଆମଗାଁରେ ପକ୍କା ବନ୍ଦୋବସ୍ତ ହୋଇଛି । ଆମ ଗାଁରେ ଗୋଟିଏ ହେଲେ ମଇଁଷି ନାହିଁ, ଚୋରଣ କ'ଣ କରବେ ? ଘରକୁ ଅଲପ ଦଲେ ଏମିତ

କହିଦେବୁ ଯେ ସେଥିରେ ଖାଲି ବାଉଁଶ କେତେ ଖଣ୍ଡି ଠିଆ ହୋଇଥିବ । ଲଢେଇ ବଗ୍ରବର ଗୃଲବ ବୋଲିତ ଅମେ ସବୁ ତମ୍ବା, ପିତ୍ତଳ ବାସନକୁ ବିଦାୟ କରି ଦେଲୁଣି; ମାଟି ହାଣ୍ଡିରେ ରାନ୍ଧୁଛୁ, ମାଟି ବାସନରେ ଖାଉଛୁଁ; ବାହାରେ ଚଟେଇ ଉପରେ ଶୋଉଛୁଁ । ଚଲଙ୍କ ସବୁ କାଢ଼ି ଦେଲୁଣି, ପଲଙ୍କକୁ ବି ଚୋରଖ କରି ନେଇଛନ୍ତି । ଏଣିକି ତ ଅମେ ଆଉ ଏକ ବିଗୃର କରୁଛୁଁ । କାହିଁକି ସେ ଘରେ ବନ୍ଦ ହୋଇ ରହିବୁ ? ଏକ ଧର୍ମଶାଳା କରିବୁ ଏବ ଘରକୁ ଜମି ଖାତା ନ ଥିବା ଏକ ପ୍ରଜାକୁ ଦଖଲ ଦେଇଦେବୁ । ସମସ୍ତେ ଧର୍ମଶାଳାରେ ରୋଷାଇ କରି ଖାଇବୁ ଏବ ଭାଗରେ ଯାହା ଖର୍ଚ୍ଚ ପଡ଼ିବ ତାହା ବାଣ୍ଟିକରି ଦେବୁ ।” ମହାଦେବଭାଇ—“ଅଚ୍ଛା, ସର୍ଦ୍ଦାର ତମକୁ ଗାଁ ଛାଡ଼ି ଯିବାକୁ କହୁଚେ ?” ଗୃଷୀ—“ସେଥିପାଇଁତ ସତରପଣ ଚୁପ୍ଛୁତ; ପିଲାପିଲି ଗାଈବୋବାଡ଼ ରାଜ୍ୟରେ ବନ୍ଧୁଙ୍କରକୁ ଯାଇଛନ୍ତି; ଗୋରୁ ମଇଁଷି ବି ଯାଇଛନ୍ତି । ଅଧିକାଂଶ ଲୋକେ କେବଳ ଶୋଇବାକୁ ଗାଁକୁ ଆସୁଛନ୍ତି ।” ମହାଦେବଭାଇ । “ଜମି ଗୃଷ କରିବ ନା ପଡ଼ିଆ ରହିବ ?” ଗୃଷୀ—“ଗୃଷ କାହିଁକି କରିବା । ଛଅପଠ ମଞ୍ଜି ବୁଣି ଦେବା ନାହିଁ କାହିଁକି ? ତାକୁ କାଟି ପକେଇଦେଲେ ସ୍ପନାଖଣ୍ଡ ହୋଇଯିବ ।” ଶେଷକୁ ଗୃଷୀ ଏପରି କହି କଥା ସାରିଦେଲା । “ଏ ଲଢେଇତ ଭଗବାନ୍ ଯୁଟେଇ ଦେଇଛନ୍ତି, ଅମ ଭିତରେ ଅନେକଙ୍କର ଗୃହା ପିଇବା ଅଭ୍ୟାସ ଅଛି । ମଇଁଷି ଗଲେ ଏବେ ଗୃହା ପାଇଁ ଦୁଧ କେଉଁଠୁ ଆସିବ । ତଥାପି କେତେଜଣ ଛେଳି ରଖିଛନ୍ତି, ଘରେ ଧଦରଙ୍କର ଗାଈ ଅଛନ୍ତି କିନ୍ତୁ ଏ ଗୃହା ଛାଡ଼ିଗଲେ ଭଲ ହେବ । ଧର, ଏ ଲଢେଇରେ ହାରିଗଲୁ, ତଥାପି କ୍ଷତି ନାହିଁ । ଏ କ’ଣ ଶେଷ ଯୁଦ୍ଧ ହେଉଛି ? ଅସନ୍ତା ଲଢେଇରେ ବେଶୀ ବନ୍ଦୋବସ୍ତ କରି ବେଶୀ ସାବଧାନ ହୋଇ ଲଢ଼ିବୁ ।”

( ୭୦ )

ଦମନ ସଙ୍ଗେ ସଙ୍ଗେ ସରକାରଙ୍କ ପ୍ରଚାର ବିଭାଗରୁ ମିଥ୍ୟା ପ୍ରଚାର ଚାଲିଥାଏ । ସ୍ୱୟଂ ଲାଟସାହେବ ଏ ପ୍ରଚାରରେ ଯୋଗ ଦେଇଥିଲେ । ଏହାର ଜବାବରେ ଗାନ୍ଧୀଜୀ ଲେଖିଥିଲେ; "ଲାଟସାହେବ କହୁଛନ୍ତି ଯେ ସରକାର ପ୍ରଜାଙ୍କ ଭିତରେ ସ୍ୱତନ୍ତ୍ର ଯାଞ୍ଚ ହୋଇ ପାରିବ ନାହିଁ । ଏହା କହିବାଦ୍ୱାରା ସାହେବ ଲୋକଙ୍କୁ ଭୁଲେଇ ଦେଉଛନ୍ତି, ଲୋକଙ୍କ ଆଖିରେ ଧୂଳି ପକେଇ ଦେଉଛନ୍ତି । ସ୍ୱତନ୍ତ୍ର ଯାଞ୍ଚ ଓ ଏକ ସରକାରୀ ଯାଞ୍ଚ ହେବ । ବିଚାର ବିଭାଗ ଶାସନ ବିଭାଗ ଠାରୁ ସ୍ୱତନ୍ତ୍ର ବିଭାଗ ହେଲେ ସୁଦ୍ଧା ତାହା ଏକ ସରକାରୀ ବିଭାଗ ଅଟେ । ଲୋକେ ଯାଞ୍ଚ କମିଟି ବାଛିବେ, ଏଭଳି ଦାବୀ କେହୁ କରୁ ନାହାନ୍ତି । ଲୋକଙ୍କ ଗୁହାରି ଏତିକି ଯେ ଯେମିତି ଅଦାଲତରେ ଯାଞ୍ଚ ହୁଏ, ସେମିତି ବାର୍ଦ୍ଦୋଲୀର ଗଣନା ବିଷୟ ତଦନ୍ତ କରାଯାଉ, ଏକ ନିରପେକ୍ଷ ବ୍ୟକ୍ତି ତଦନ୍ତ କରନ୍ତୁ । ଏଥିରେ ସରକାରଙ୍କର ରାଜ୍ୟର ଲଗାମ ଛାଡ଼ି ଦେବା କଥା ନାହିଁ । ଅବଶ୍ୟ ନାଦିରସାହୀ ସ୍ୱେଚ୍ଛାଚାରିତା ଛାଡ଼ି ଦେବା କଥା ଅଛି । ଏ ଦୃଷ୍ଟିରୁ ଏବେ ବାର୍ଦ୍ଦୋଲୀର ଯୁଦ୍ଧ ବ୍ୟାପକ ରୂପ ଧରିବ । ଆମ ସୌଭାଗ୍ୟକୁ ସରକାର ତାକୁ ବ୍ୟାପକ ରୂପ ଦେଇ ଦେଉଛନ୍ତି ।"

ଆଉ ଏକ ବିପଦ ଆସି ପହଞ୍ଚିଥିଲା । ଲୋକଙ୍କ କଷ୍ଟ ବଢୁଥିବାରୁ ବାହାରର କେତେକ ନେତା ଏ ସବୁକୁ ମିଟେଇ ମାଣ୍ଡେଇ ଦେବା ପାଇଁ ଉଦ୍ୟମ ଆରମ୍ଭ କରିଦେଇଥିଲେ । ସେଥିରେ ଲାଭଠାରୁ କ୍ଷତି ବେଶୀ ହେଉଥିଲା । ଗାନ୍ଧୀ ଏ ସମ୍ବନ୍ଧରେ ଏକ ଲେଖା ବାହାର କରିଥିଲେ, "କେତେକ ମଙ୍ଗଳାକାଙ୍କ୍ଷୀ ବନ୍ଧୁ ଏ ବିଷୟରେ ମଧ୍ୟସ୍ଥତା କରିବାକୁ ଚାହୁଁଛନ୍ତି ବୋଲି ଉଡ଼ା ଖବର ଶୁଣୁଛୁ । ଏମିତି ମଝିରେ ପଡ଼ି ମିଟେଇଦେବା ଉଦ୍ୟମରେ ତାଙ୍କର ଅଧିକାର

ଅଛୁ, ବରଂ ବେଳେ ବେଳେ ସେପରି ଉଦ୍ୟମ କରିବା ତାଙ୍କର କର୍ତ୍ତବ୍ୟ ହୋଇଯାଏ । କିନ୍ତୁ ବନ୍ଧୁମାନେ ଲଢ଼େଇର ମହତ୍ତ୍ୱ ବୁଝି ସୁଦ୍ଧି ସବୁ କରିବା ଉଚିତ । ଲଢ଼େଇ ଯଥାର୍ଥ ନୁହେଁ କିମ୍ବା ଲୋକେ ଦୁର୍ବଳ ହୋଇଗଲେଣି ଏହିପରି ଭାବି ଦୟାପରବଶ ହୋଇ ସେମାନେ ମଝିରେ ପଶି ନ ପଡ଼ନ୍ତୁ । ବାର୍ଦ୍ଦୋଲୀ ଲୋକଙ୍କର ଏ ଯୁଦ୍ଧ ଶୁଦ୍ଧ ନ୍ୟାୟର ଯୁଦ୍ଧ । ସେମାନେ କାହାରି କୃପାଭିକ୍ଷା କରୁନାହାନ୍ତି, ସେମାନେ ଶୁଦ୍ଧ ନ୍ୟାୟ ମାଗୁଛନ୍ତି । ସେମାନେ ନିଜପକ୍ଷରୁ ଯାହା କହୁଛନ୍ତି ତାକୁ ଅନ୍ୟ ପକ୍ଷ ମାନିନେଉ ଏ କଥା ସେ ଦାବି କରୁ ନାହାନ୍ତି । ସେମାନେ ତ ଗୋଟିଏ ସ୍ୱତନ୍ତ୍ର ଅଦାଲତର ପ୍ରକାଶ୍ୟ ବିଚାର ମାଗୁଛନ୍ତି ।”

ବାହାରୁ ଲୋକେ ବି ଯାଇ ବାର୍ଦ୍ଦୋଲୀ ପ୍ରଜାଙ୍କ ଦାବୀ ସମ୍ବନ୍ଧରେ ନିରପେକ୍ଷ ତଦନ୍ତ କରୁଥିଲେ । ସେମାନେ ସ୍ପଷ୍ଟ କହୁଥିଲେ ଯେ ଲୋକଙ୍କ ଦାବୀ ଏକଦମ୍ ନ୍ୟାଯ୍ୟ ଥିଲା ଏବଂ ସେ ସତ୍ୟାଗ୍ରହର ରାଜନୈତିକ ଉଦ୍ଦେଶ୍ୟ ତିଳେ ହେଲେ ନ ଥିଲା ।

ଦେଶର ସବୁ ଭାରତୀୟ ଖବରକାଗଜମାନେ ସତ୍ୟାଗ୍ରହ ସପକ୍ଷରେ ଲେଖୁଥିଲେ । ଗୋରାମାନଙ୍କ ଖବରକାଗଜମାନେ ମଧ୍ୟ ଗୋଟିକୁ ଛାଡ଼ିଦେଲେ ସମସ୍ତେ ପ୍ରଜାଙ୍କ ଦାବୀ ସମର୍ଥନ କରୁଥିଲେ । ଯେଉଁ ଗୋରା ଖବରକାଗଜ ସରକାରଙ୍କ ସପକ୍ଷରେ ଲେଖୁଥିଲେ, ତାହାର ଉଦ୍ଦେଶ୍ୟ ଥାଏ, ବିଳାତ ଲୋକଙ୍କୁ ଅଗରୁ ଡରେଇ ରଖିବା, ଯେପରିକି ସରକାରୀ ଦମନ ଯୋର୍ ଧରିଲେ ବିଳାତରୁ କୌଣସି ଆପତ୍ତି ନ ଉଠେ । ଏଥିରେ ଲାଭ ହେଲା, ଇଂରେଜ ଫିହିଙ୍କ ନିଦ ଭାଙ୍ଗିଗଲା । ସରକାରୀ ମହଲରେ ଚହଲ ପଡ଼ିଗଲା । ଲାଟଙ୍କର ମନ୍ତ୍ରୀ ସଭା ବସିଲା । ବଡ଼ମନ୍ତ୍ରୀ ସିମଲା ଦୌଡ଼ିଲେ । ତେଣେ ପୁଲିସ୍ ଫୌଜ ବାର୍ଦ୍ଦୋଲୀ ତାଲୁକାରେ ଜମା ହୋଇଗଲେ । ଶେଷରେ

ବମ୍ବେ ଲାଟ ସ୍ୱୟଂ ବଡ଼ଲାଟଙ୍କ ସଙ୍ଗେ ଦେଖା କରିବାକୁ ଆସିଥିଲେ ।

ସିମଲାରୁ ଫେରି ଲାଟ୍ ସୁରଟ ଆସିଥିଲେ । ବାର୍ଦ୍ଦୋଲୀର ପ୍ରଜା ପ୍ରତିନିଧିଙ୍କ ସହିତ ବଲ୍ଲଭଭାଇଙ୍କୁ ମଧ୍ୟ ଡକାଇଥିଲେ । ତିନି ଘଣ୍ଟା କାଳ କଥାବାର୍ତ୍ତା ହେଲା । କଥାବାର୍ତ୍ତା ବେଶ୍ ମିଠା ମିଠା ହୋଇଥିଲା । ଲାଟସାହେବ କେତେକ ସର୍ତ୍ତରେ ପୁଣି ଯାଞ୍ଚ କରିବାକୁ ରାଜି ହୋଇଥିଲେ । ସର୍ତ୍ତ ଥିଲା, ପୁରୁଣା ମାସୁଲ ଦେଇଦେବେ, ବୃଦ୍ଧିଜମାକୁ କଣେ କିଏ ଖଜଣାଖାନାରେ ଅମାନତ ରଖିବ, ଏବଂ ସତ୍ୟାଗ୍ରହ ବନ୍ଦ କରିଦିବ । ଏଥିରେ କିଏ ବା ରାଜି ହୁଅନ୍ତା ? ବଲ୍ଲଭଭାଇ ତାଙ୍କ ସର୍ତ୍ତ ଦେଇ ଆସିଲେ । ପରେ ସବୁ କଥା ସେ ସାଫ୍ ସାଫ୍ ଲେଖି ପଠାଇ ଦେଇଥିଲେ ।

ସରକାର କିନ୍ତୁ ସେହି ସବୁ ସର୍ତ୍ତ ଧରି ବସିଥିଲେ । ଲାଟ ସଭାରେ ଲାଟସାହେବ ଘୋଷଣା କଲେ ଯେ, ଚୌଦ ଦିନ ଭିତରେ ଏହା କାର୍ଯ୍ୟରେ ପରିଣତ ନ ହେଲେ ତେଣିକି ଖରାପ ହେବ । ଏ ଧମକ ପରେ ବାର୍ଦ୍ଦୋଲୀରେ ଦମନର ତାଣ୍ଡବ ଲୀଳା ଲାଗିବାର ସୂଚନା ଦେଖାଗଲା । ବିଲାତରୁ ପାର୍ଲିଆମେଣ୍ଟରେ ଲେର୍ଡ୍ ଭାରତମନ୍ତ୍ରୀ କହି ଉଠିଲେ ଯେ ଏ ସବୁ ସର୍ତ୍ତ ମାନି ଆନ୍ଦୋଳନ ଉଠାଇ ନିଆ ନ ଗଲେ, ଆଇନର ପ୍ରତିଷ୍ଠା ପାଇଁ ଏବଂ ଆନ୍ଦୋଳନକୁ ଶେଷ କରିଦେବା ପାଇଁ ବମ୍ବେ ସରକାର ଭାରତ ସରକାରଙ୍କର ପୂରା ସାହାଯ୍ୟ ପାଇବେ ।

( ୭୧ )

ଏଣେ ବଲ୍ଲଭଭାଇ ସାଧାରଣ ସଭାରେ ସରକାରଙ୍କୁ ଜବାବ ଦେଉଥାନ୍ତି, ଅଥଚ ସରକାରଙ୍କୁ ନମ୍ରଭାବରେ ଅନୁରୋଧ କରୁଥାନ୍ତି ଯେ ସେ ପ୍ରଜାଙ୍କର ଦୁଃଖକୁ ଧୀରସ୍ଥିର ଭାବରେ ବିଚାର କରନ୍ତୁ ।

ସତ୍ୟାଗ୍ରହୀ ମଧ୍ୟ ଶେଷ ଉତ୍ତେଜନା ବେଳେ ଆପଣା ମୁଣ୍ଡକୁ ଥଣ୍ଡା ରଖିବା ଉଚିତ, ଏ କଥା ମଧ୍ୟ ଚଳ୍ଲଭଭାଇ ଲୋକଙ୍କୁ ବୁଝାଉଥାନ୍ତି । ଗାନ୍ଧୀ ମଧ୍ୟ ଏକ ଲେଖାରେ ସରକାରଙ୍କୁ ବୁଝାଇ ଲେଖିଥିଲେ ।

"ସରକାରୀ ପତ୍ରିମାନଙ୍କର ଏଥିରୁ ଅର୍ଥ ହେଉଛି ଯେ ଲୋକେ ବୃଦ୍ଧି ଜମା ଦେବାକୁ ମନା କରି ଏକ ଅପରାଧ କରିଛନ୍ତି । ଏଣିକି ସେମାନେ ଆଉ ଏ ଦୋଷ କରନ୍ତୁ ନାହିଁ ଏବଂ ଯେଉଁ ଜମା ବୃଦ୍ଧି ଭୁଲ୍ ଭାବରେ ଧାର୍ଯ୍ୟ କରାଯାଇଛି ବୋଲି ସେମାନେ କହୁଅସିଛନ୍ତି, ସେଥିକୁ ମାନି ନେଇ ବୃଦ୍ଧି ଜମା ଟଙ୍କାକୁ ଅମାନତ ସ୍ୱରୂପ ଜମା ରଖିବେ । ତେବେ ଯାଇଁ ସରକାର ବ୍ୟକ୍ତିଗତ ଭାବରେ ପୁଣି ଯାଞ୍ଚ କରିବାରେ କୃପା କରିବେ । ଯେ କେହି ଲୋକ ନେତା ହେବାର ଉପଯୁକ୍ତ ହୋଇଥିଲେ, ଏଭଳି ସର୍ତ୍ତ କେବେହେଁ ଗ୍ରହଣ କରି ପାରିବ ନାହିଁ । ଲୋକେ ଅପରାଧ କରିଛନ୍ତି ଏଭଳି ଧାରଣା ପରିବର୍ତ୍ତିରେ ନେତାଙ୍କର ଏ ଦୃଢ଼ ଧାରଣା ଥିବାର କଥା ଯେ ଲୋକଙ୍କ ପକ୍ଷ ଠିକ୍ ଏବଂ ସରକାରଙ୍କ ପକ୍ଷ ପୂରା ଭୁଲ ।

"ଏଣେ ସରକାର ପାରିବେ ନାହିଁ ଏ ଭଳି କୌଣସି ସର୍ତ୍ତ ବଲ୍ଲଭଭାଇ ଦାବୀ କରୁ ନାହାନ୍ତି । ଭୁଲ କରିଛନ୍ତି ବୋଲି ସରକାରଙ୍କୁ ମନେଇ ନେବାକୁ ସେ ମଧ୍ୟ ଚାହୁଁ ନାହାନ୍ତି । ତାଙ୍କର ମାଗୁଣି ଏତିକି ଯେ ଏ ଲଢ଼େଇରେ କିଏ ସତ କିଏ ମିଛ ଏହାର ଯାଞ୍ଚ ସରକାର ନିଜେ ଏକ କମିଟି ବସେଇ ତାହାରି ଦ୍ୱାରା କରିନିଅନ୍ତୁ; ମାତ୍ର ସର୍ତ୍ତ ଏତିକି ଯେ ଏ କମିଟିରେ ଲୋକଙ୍କର ଯଥାର୍ଥ ପ୍ରତିନିଧି ରହିପାରିବେ ।......ସମ୍ମାନସୂଚକ ରଫା କରିବାକୁ ବଲ୍ଲଭଭାଇ ସବୁବେଳେ ପ୍ରସ୍ତୁତ ଏବଂ ସବୁବେଳେ ସେ ନ୍ୟାୟରେ ଚାଲୁଛନ୍ତି ବୋଲି ସେ ସବୁଠାରୁ ନ୍ୟୁନତମ ସର୍ତ୍ତ ଦେଇଛନ୍ତି । ନାହିଁ ତ, ସେ ସରକାରଙ୍କର ରାଜସ୍ୱ ନୀତିର ଭଲ ମନ୍ଦ ପ୍ରଶ୍ନ ଉଠାଇ

ମାରଥାନ୍ତେ ଏବଂ ବିନା ଦୋଷରେ ଲୋକେ ଯେ ମାସ ମାସ ଜେଲ୍ ଦୁଃଖ ସହୁ ଅଛନ୍ତି, ସେଥିପାଇଁ କ୍ଷତି ପୂରଣ ମାଗି ପାରଥାନ୍ତେ ।

"ସରକାରଙ୍କ ଆଗରେ ଦୁଇଟି ବାଟ ଅଛି । ସାରା ଦେଶର ଲୋକମତକୁ ମାନି ବଲ୍ଲଭଭାଇଙ୍କ ଦାବୀକୁ ସ୍ୱୀକାର କରିବେ, କିମ୍ବା ନିଜର ମିଛ ଡାମ ବଜାୟ ରଖିବା ପାଇଁ ଯେ.ଉର ଦମନ ଚଳ ଇବେ। ଏବେ ପୁଣ୍ଡା ବେଳ ଗଡ଼ ଯାଇ ନାହିଁ । ସତ୍ୟର ବାଟ ଧରିବାକୁ ମୁଁ ସରକାରଙ୍କୁ ବିନତି କରୁଛି ।"

ସରକାର କ୍ରମେ ପ୍ରଳୟ ମୂର୍ତ୍ତି ଧରିଥିଲେ । ସୈନ୍ୟ ଛାଉଣୀର ବ୍ୟବସ୍ଥା ଚାଲିଲା । ଚତୁର୍ଦ୍ଦିଗରେ ସୈନ୍ୟଙ୍କ ପାଇଁ ଘରଟିକୁ ଡମ୍ବୁ ଇତ୍ୟାଦ ପଠାଗଲା । ଦମନର ଡାପ ଅସହ୍ୟ ହେଲେ ଲୋକେ କ'ଣ କରିବେ ସେ ସମ୍ବନ୍ଧରେ ଗାନ୍ଧୀ ପରାମର୍ଶ ଦେଇଥିଲେ, "ଜୁଲୁମ ଅସହ୍ୟ ହେଲେ, ଯାହାକୁ ଆପଣା ଜମି ମଣୁଛନ୍ତି ତାକୁ ଛାଡ଼ ହିଜରତ (ଅନ୍ୟସ୍ଥାନକୁ ଚାଲିଯିବା) କରି ଯିବା ଲୋକଙ୍କର ଉଚିତ । ଯେଉଁ ଘରେ ବା ଲଗା ପଡ଼ାରେ ପ୍ଲେଗ ରୋଗର ମୂଷା ବା ରୋଗୀ ପଡ଼ିଥିବ, ତାକୁ ଛାଡ଼ି ଚାଲିଯିବା ବୁଦ୍ଧିର ଚିହ୍ନ । ଜୁଲୁମ ମଧ୍ୟ ଏକପ୍ରକାର ପ୍ଲେଗ୍ । ଜୁଲୁମ ଯଦି ଆମକୁ ଉଠେଇ ଦବ କିମ୍ବା ଦୁର୍ବଳ କରି ଦବ, ତେବେ ସେଭଳି ଜୁଲୁମ୍‌ର ସ୍ଥାନ ଛାଡ଼ି ଯିବା ବୁଦ୍ଧିର କାମ ।"

ଭାରତର ଗରମ ଦଳର ଲୋକେ ବାର୍ଦ୍ଦୋଲୀ ଲଢ଼େଇରେ ଖୁବ ଖୁସୀ ହେଉଥିଲେ । କାରଣ ସେମାନେ ଆଶା କରୁଥିଲେ ଏହି ଲଢ଼େଇ ବଢ଼ି ବଢ଼ି ଭାରତର ସ୍ୱରାଜ୍ୟ ଯୁଦ୍ଧର ରୂପ ନେଇନେବ । ଜଣେ ଅଧେ ନେତା ଏ ଲଢ଼େଇକୁ ମହାଭାରତୀୟ ରୂପ ଦେଇ-ଦେବାକୁ ଗାନ୍ଧୀଙ୍କୁ ପରାମର୍ଶ ଦେଇଥିଲେ । ଗାନ୍ଧୀ କିନ୍ତୁ ଉତ୍ତରରେ ଲେଖିଥିଲେ, "ଏ ନେତାଙ୍କର ସୂଚନାରେ ବଲ୍ଲଭଭାଇଙ୍କର ମତ

ମତେ ଜଣା ନାହିଁ । କିନ୍ତୁ ବାର୍ଦ୍ଦୋଲି ପାଇଁ ସହାନୁଭୂତି ଦେଖାଇ ସୀମାବଦ୍ଧ ସତ୍ୟାଗ୍ରହ କରିବାର ସମୟ ଆସି ନାହିଁ । ବାର୍ଦ୍ଦୋଲିକୁ ଆହୁରି ଅଗ୍ନିପରୀକ୍ଷା ଦେବାକୁ ପଡ଼ିବ । ଶେଷ ପରୀକ୍ଷାରୁ ଉତ୍ତୁରିଲେ ଏବଂ ସରକାର ଶେଷ ସୀମାକୁ ଗଲେ, ସତ୍ୟାଗ୍ରହକୁ ଭାରତର ଗୃହଅଙ୍ଗେ ମାଡ଼ିଯିବାରେ କିମ୍ବା ବାର୍ଦ୍ଦୋଲି ସତ୍ୟାଗ୍ରହର ସସୀମ ଉଦ୍ଦେଶ୍ୟକୁ ବ୍ୟାପକ କରିବାରେ ଆଉ କିଏ ବାଧା ଦେଇ ପାରିବ ? ସେଥିରେ ବାଧା ଦେବାରେ ଶକ୍ତି ମୋର ନାହିଁ ବା ବଲ୍ଲଭଭାଇର ନାହିଁ । ତେଣିକି ସାରା ଦେଶର କଷ୍ଟ ସହିବା ଓ ତ୍ୟାଗ କରିବା ଶକ୍ତି ଅନୁସାରେ ସତ୍ୟାଗ୍ରହର ସୀମା ବଢ଼ିବ । ଏ ମହା ପ୍ରୟୋଗର ଅବସର ଆସିବ ତ, ତାହା ସ୍ୱାଭାବିକ ଢଙ୍ଗରେ ଆସିବ । ସେତେବେଳେ ତାକୁ ଅଟକାଇବାର ଶକ୍ତି ଦୁନିଆରେ କାହାରି ନ ଥିବ । କିନ୍ତୁ ସତ୍ୟାଗ୍ରହର ନୀତି ମୁଁ ଯାହା ବୁଝିଛି, ସେଥିରେ ସରକାର ଯେତେ ପାରେ ସେତେ ଉତ୍ତେଜନା ଦିଅନ୍ତୁ ପଛେ ଆମେ ସତ୍ୟାଗ୍ରହର ମୂଳ ସୀମାରେ ଆବଦ୍ଧ ରହିବା ଉଚିତ । ସେଭଳି ଉତ୍ତେଜନା ସୀମା ଟପିବାର ଉପଯୁକ୍ତ କାରଣ ହେଲେ ମଧ୍ୟ, ଆମେ ସେହି ସୀମା ଭିତରେ ରହିବୁ । ସତକଥା ଏଯା ଯେ ଈଶ୍ୱର ସାଥୀରେ ଅଛନ୍ତି ବୋଲି ସତ୍ୟାଗ୍ରହୀ ସବୁବେଳେ ବିଶ୍ୱାସ କରେ । ଈଶ୍ୱର ତାକୁ ବାଟ କଢ଼ାଉଛନ୍ତି । ସତ୍ୟାଗ୍ରହୀ ନେତା ଆପଣା ବଳରେ ଯୁଝନ୍ତି ନାହିଁ, ପ୍ରଭୁଙ୍କ ବଳ ନେଇ ଲଢ଼ନ୍ତି । ସେ ଅନ୍ତରାତ୍ମାର ଆଦେଶ ଅନୁଯାୟୀ ଆଚରଣ କରନ୍ତି । ତେଣୁ ଅନ୍ୟକୁ ଯାହା ଶୁଦ୍ଧ ଆଚରଣ ବୋଲି ଜଣା ପଡ଼େ ତାହା ସତ୍ୟାଗ୍ରହୀକୁ ଅନେକ ସମୟରେ ଇନ୍ଦ୍ରଜାଲ ପରି ଲାଗିଥାଏ । ଭାରତବର୍ଷରେ ଆଜି ଏକ ତୁମୁଳ ଯୁଦ୍ଧ ଚାଲିଥିଲା ବେଳେ ଏଭଳି ଲେଖିବା ମୂର୍ଖାମି ପରି ବା ଆକାଶକୁସୁମ ପରି ଲାଗିବ ।”

ଏ ସବୁ ଦେଖି ଯେଉଁ ଲାଟ ସଭାର ସଭ୍ୟ ମଧ୍ୟସ୍ଥତା କରୁଥିଲେ ସେ ଗାନ୍ଧୀ ଓ ବଲ୍ଲଭଭାଇଙ୍କ ସଙ୍ଗେ ଦେଖା କରି ପ୍ରଜାଙ୍କ ତରଫରୁ ସର୍ତ୍ତ ବୁଝି ଯାଇଥିଲେ;— (୧) ଯାଞ୍ଚ ହେବାରୁ ଦେୟ ଷଣ୍ଠା ସଙ୍ଗେ ପୁରୁଣା ଜମା ଦାଖଲ କରିଦେବେ, (୨) ସତ୍ୟାଗ୍ରହ ବନ୍ଦ କରିବେ, (୩) ଯାଞ୍ଚ ନ୍ୟାୟ ପୂର୍ବକ ସ୍ୱତନ୍ତ୍ର ଭାବରେ କରାଯିବ, ଯାଞ୍ଚ ପାଇଁ ଜଣେ ବିଚାର ବିଭାଗ କର୍ମଚାରୀ ଓ ଜଣେ ରାଜସ୍ୱ ବିଭାଗ କର୍ମଚାରୀ ରହିବେ । ପ୍ରଜାମାନେ ଅନୁସନ୍ଧାନରେ ସାକ୍ଷୀ ପ୍ରମାଣ ଦେବେ, ଓକିଲ ଦେଇ ସରକାରୀ ସାକ୍ଷୀଙ୍କୁ ଜେରା କରିବେ । ସବୁ ଯୋର ଜୁଲମର ଅନୁସନ୍ଧାନ ମଧ୍ୟ ହେବ, (୪) ସବୁ ଜମି ଫେରସ୍ତ ଦିଆଯିବ, (୫) ସତ୍ୟାଗ୍ରହୀ କଏଦୀ ଖଲାସ ହେବେ, (୬) ପଟେଲ, ତଲାଟି ପୁଣି ଚାକିରୀ ପାଇବେ, (୭) ବାଲୁଡର ମଦବୁଆଲର କ୍ଷତି ପୂରଣ କରାଯିବ । ଗାନ୍ଧୀ ଏତକ ମଧ୍ୟ କହି ଦେଇଥିଲେ ଯେ ଯଦି ଜୁଲମର ଅନୁସନ୍ଧାନଟା ରଫା ହେବାରେ ବାଧା ହଏ ତେବେ ସତ୍ୟାଗ୍ରହୀ ସେ ସର୍ତ୍ତକୁ ଛାଡ଼ି ଦେବାକୁ ପ୍ରସ୍ତୁତ ଅଛନ୍ତି ଏବଂ ଏହି ସବୁ ସର୍ତ୍ତ ନେଇ ବଲ୍ଲଭଭାଇ ପୁନା ଯାଇ ପାରନ୍ତି ।

( ୭୨ )

ଏହିପରି ଅବସ୍ଥାରେ ବଲ୍ଲଭଭାଇଙ୍କ ଧରାହେବା ଖବର ମଧ୍ୟ ଉଠୁଥାଏ । ସେ ଧରାହେଲେ ଗାନ୍ଧୀ ନିଜେ ଯାଇ ସତ୍ୟାଗ୍ରହ ପରିଚାଳନା କରିବେ ବୋଲି ସ୍ଥିର କରିଥିଲେ । ତେବେ ବଲ୍ଲଭଭାଇଙ୍କ ଧରା ହେବା ଯାଏ ଅପେକ୍ଷା ନ କରି, ଆଗରୁ ଯାଇଁ ବଲ୍ଲଭଭାଇଙ୍କ ଅଧୀନରେ କାମ କରିବାକୁ ଗାନ୍ଧୀ ପସନ୍ଦ କରିଥିଲେ । ଅଗଷ୍ଟ ୨ ତାରିଖ ଦିନ ଗାନ୍ଧୀ ବାର୍ଦ୍ଦୋଲୀରେ ପହଞ୍ଚିଥିଲେ । ସେ ଖବର ପାଇ ଆଖପାଖ ଗାଁରୁ ବହୁତ ଲୋକେ କାଦୁଅ ପାଣି ଚକଟି ଦର୍ଶନ

ପାଇଁ ଖୁସି ହୋଇଥିଲେ । ଗାନ୍ଧୀ କଥାବାର୍ତ୍ତା କରୁଁ କରୁଁ ପଚାରିଲେ, 'ଅଚ୍ଛା, ତମର ପରୀକ୍ଷାର ସମୟ ତ ଏବେ ଆସିଗଲା ।' ଗୃଷ୍ଟୀ କଥାଟାକୁ ଠିକ ବୁଝିଗଲେ । ପରେ ଜବାବ୍ ଦେଲେ "ପ୍ରସ୍ତୁତ ଅଛୁଁ ।" ପରୀକ୍ଷାର ନାନା କଥା ଗାନ୍ଧୀ ତାଙ୍କ ଆଗରେ ପକେଇଲେ, ସେଥିରେ ସେ ଜବାବ ଦେଉଥିଲେ, "ଠିକ କଥା କହୁଛନ୍ତି । ଆମର କ'ଣ ବା ପରୀକ୍ଷା ହୋଇଛି ? ପନ୍ଦର କୋଡ଼ିଏ ହଜାର ମଣିଷ ହରେଇଛୁଁ, ଜମି ଯାଇଛି, କିନ୍ତୁ ଯାହାକୁ ପରୀକ୍ଷା କହନ୍ତି ତାହା ଏବେ ସୁଦ୍ଧା ହୋଇ ନାହିଁ । ବରଦରେ ଥିଲେ, ଭଲ କଥା ।" ଗାନ୍ଧୀ—"କିନ୍ତୁ ଧର, ସରକାର ବଲ୍ଲଭଭାଇଙ୍କୁ ନେଇଯିବେ, ତମେ ଦବିଯିବ ନାହିଁ ତ ?" ଗୃଷ୍ଟୀ—"କ'ଣ କହିବା ? ଆମେତ କଙ୍ଗାଳିଆ ଥିଲୁ, ବଲ୍ଲଭଭାଇ ପାଣି ଦେଇ ଉଦ୍ଧାର କରିଛନ୍ତି । ଆମେତ ଗୋଟିଏ କଥା ଏଥିରୁ ବୁଝିଛୁଁ ଯେ ମରଣ ଆସୁ ପଛକେ ପ୍ରତିଜ୍ଞା ଠିକ୍ ରଖିବୁ ।"

ଜଣେ ବନ୍ଧୁ ନେହୁର ହୋଇ କହିଲା, "ଆମ ଗାଁକୁ ଥରେ ଚାଲ;" ଗାନ୍ଧୀ ଜବାବ ଦେଇଥିଲେ 'ବଲ୍ଲଭଭାଇ ନ କହିଲେ ଯାଇ ପାରିବି ନାହିଁ ।' ଶେଷରେ ବଲ୍ଲଭଭାଇ କହିଲେ 'ଯାଇଁ ବୁଲି ଆସ' । ଦୁଇଟି ଗାଁକୁ ଗାନ୍ଧୀ ଯାଇଥିଲେ । ହଜାର ହଜାର ଲୋକ ଆସି ଜମିଥିଲେ । ସେମାନଙ୍କୁ ଜଣା ନ ଥିଲା ଯେ ସାରା ଦେଶ ତାଙ୍କର କଥା ଚର୍ଚ୍ଚା କରୁଥିଲା । ଶହ ଶହ ମାଇପେ ଆସିଥିଲେ, ଜାଗାଏ ସୂତାକଟା ପ୍ରଦର୍ଶନୀ ହୋଇଥିଲା । ସ୍ତ୍ରୀ ଲୋକମାନେ ଜଣକ ପରେ ଜଣେ ସୂତା ଭେଟି ଦେଇଥିଲେ । ବକ୍ତୃତା ଦେବା କଥା ନ ଥିଲା, କେବଳ ସେମାନଙ୍କୁ ଧନ୍ୟବାଦ ଦେବା ପାଇଁ ଦି'ପଦ କହିବାକୁ ଗାନ୍ଧୀ ବାଧ୍ୟ ହୋଇଥିଲେ । "ସର୍ଦ୍ଦାରଙ୍କ ହୁକୁମ ଯେ ତାଙ୍କ ଛଡ଼ା ଆଉ କେହି ବକ୍ତୃତା ଦେବେ ନାହିଁ, ତେଣୁ ମୁଁ କିଛି କହିବି ନାହିଁ । ସର୍ଦ୍ଦାର ଥାଆନ୍ତେ ଓ ଅନୁମତି ଦିଅନ୍ତେ ତ ମୁଁ କହନ୍ତି । ଆଜି ତମର ବୀରତ୍ୱ

ଓ ସଂଗଠନ ପାଇଁ ମୁଁ ତମକୁ ଧନ୍ୟବାଦ ଦେଉଛି । ଅରଟ ପ୍ରଦର୍ଶନୀ ଦେଖି ମୋର ଆନନ୍ଦ ହେଲା । କିନ୍ତୁ ଆଜି ଅରଟ ବିଷୟରେ ମୁଁ କିଛି କହିବି ନାହିଁ । ଆପଣ ଯାହାକୁ ସର୍ଦ୍ଦାର କହନ୍ତି ତାର ହୁକୁମକୁ ଅକ୍ଷରେ ଅକ୍ଷରେ ମାନିବା ଉଚିତ । ମୁଁ ସର୍ଦ୍ଦାରଙ୍କର ବଡ଼ଭାଇ ସତ, କିନ୍ତୁ ସାଧାରଣ ଜୀବନରେ ଯାହା ଅଧୀନରେ କାମ କରିବାକୁ ପଡ଼େ ସେ ଧୂଅ ହେଉ ପଛେ, ସାନଭାଇ ହେଉ ପଛେ ତାଙ୍କର କଥା ମାନିବା ଉଚିତ । ଏହା ନୂଆ ନିୟମ ନୁହେଁ । ଏହା ଅମର ପୁରୁଣା ଧର୍ମ । ଏହି ଧର୍ମ ପାଳିବାକୁ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ସାରଥି ହୋଇଥିଲେ ଓ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଝେଁ ପତର ଉଠେଇଥିଲେ । ତେଣୁ ଆଜି କେବଳ ତମକୁ ଧନ୍ୟବାଦ ଦେଉଛି । ସରକାର ତମକୁ ଦୁନିଆରେ ଖ୍ୟାତ କରିଦେଇଛି । ଭବିଷ୍ୟତରେ ତମକୁ ଏହାଠାରୁ ବଡ଼ ଜୟ ମିଳୁ ।"

ଏହା ପରେ ପରେ ମଧ୍ୟସ୍ଥମାନଙ୍କ ଜରିଆରେ ବଲ୍ଲଭଭାଇଙ୍କୁ ପୁନା ଡକରା ହେଲା । ପୁନାରେ ଲାଟ ଉବେଶ ଥାଏ । ସେଠି ଲାଟଙ୍କ ସେକ୍ରେଟରୀଙ୍କ ସଙ୍ଗେ କଥାବାର୍ତ୍ତା ଚାଲୁ ଚାଲୁ ହଠାତ୍ ରଫାନାମା ହୋଇଗଲା । ଗାନ୍ଧୀଙ୍କର ସବୁଯାକ ସର୍ତ୍ତ ସରକାର ଗ୍ରହଣ କରିନେଲେ । ପ୍ରତ୍ୟୁତ୍ତରପତ୍ରରେ ବଲ୍ଲଭଭାଇ ଲେଖିଥିଲେ; "ଆମର ପ୍ରତିଜ୍ଞା ରକ୍ଷା ପାଇଁ ଈଶ୍ୱରଙ୍କୁ ଧନ୍ୟବାଦ ଦେଉଛୁ । ଏବେ ଆମକୁ ପୁରୁଣା ଜମା ଅଦାୟ ଦେବାକୁ ହେବ, ବୃଦ୍ଧି ଜମା ଦେବାକୁ ପଡ଼ିବ ନାହିଁ । ପୁରୁଣା ରାଜସ୍ୱ ଦେବାକୁ ପ୍ରସ୍ତୁତ ହୋଇଯାଅ । ଅସୁଲ ଦେବାର ସମୟ ମୁକରର ହୋଇଛି ।"

ଏହି ବିଜୟ ସମ୍ବନ୍ଧରେ ମହାଦେବଭାଇ ଯାହା ଲେଖିଛନ୍ତି ତାହା ଦୁଇଟୁର ତଳେ ଦିଆଗଲା—"ଏହି ପ୍ରକାରରେ ବାର୍ଦ୍ଦୋଲୀର ସାଦାସିଧା ଗୃଷ୍ଟୀମାନଙ୍କର, ଯେଉଁମାନେ କି ନିର୍ବଳର ବଳ

ଭଗବାନଙ୍କ ଉପରେ ଭରସା ରଖି ଆପଣାର ପ୍ରତିଜ୍ଞା ପାଇଁ ଲଢୁଥିଲେ ଏବଂ ଯେଉଁମାନେ ଦୁଃଖ କଷ୍ଟ ସହିବାଟାକୁ ବଡ଼ ଅସ୍ତ୍ର ବୋଲି ମାନି ଛଅ ମାସ କାଳ ବଳବାନ୍ ସରକାର ସଙ୍ଗେ ଅଣ୍ଟାଭିଡ଼ି ଲଢୁଥିଲେ ସେହି ଗୃହୀଙ୍କର ଜୟ ହେଲା । ସତ୍ୟ ଏବଂ ଅହିଂସାର ବିଜୟ କେତେବର୍ଷ ହେଲା ଭାରତବର୍ଷ ଜାଣି ନ ଥିଲା । ସର୍ଦ୍ଦାରଙ୍କର ଟିକୋଟି ସଫଳ ଲଢେଇ ମଧ୍ୟରୁ ଏହିଟି ସବୁଠାରୁ ବଡ଼ ଲଢେଇ ଥିଲା । ସ୍ୱରାଜ୍ୟ ପଥରେ ଗୋଟିଏ ଗୋଟିଏ ଘାଟି ଦେଖାଇ ଦେବାକୁ ସର୍ଦ୍ଦାର ଯେ କେତୋଟି ସ୍ତମ୍ଭ ପୋତିଛନ୍ତି ସେଥିଭିତରୁ ଏହିଟି ଦ୍ୱିତୀୟ ସ୍ତମ୍ଭ । ନାଗପୁର ସତ୍ୟାଗ୍ରହରେ ମାତ୍ର ଗୋଟିଏ ଅଧିକାର ପାଇଁ ଲଢେଇ ଚାଲିଥିଲା ଏବଂ ତାହା ମିଳି ଯାଇଥିଲା । ବୋଅରସାଦ୍ ଲଢେଇରେ ଯେତେ ଶୀଘ୍ର ପୂର୍ଣ୍ଣ ସଫଳତା ମିଳିଗଲା ସେତେ ଶୀଘ୍ର ଆଉ କେଉଁଠାରେ ମିଳି ନ ଥିଲା; କିନ୍ତୁ ତାହା ଏକପ୍ରକାର ସ୍ଥାନୀୟ ଲଢେଇ ଥିବାରୁ ଏବଂ ଏହା ଦେଢ଼ମାସ ଭିତରେ ସରି ଯାଇଥିବାରୁ ଦେଶର ଚତୁଃଅଙ୍କେ ଲୋକେ ସେ ବିଷୟ ଜାଣିପାରି ନ ଥିଲେ; କିନ୍ତୁ ବାର୍ଦ୍ଦୋଲୀ ସଂଗ୍ରାମ ଏକ ଅପୂର୍ବ ସଂଗ୍ରାମ ଥିଲା । ·········
ଏ ସତ୍ୟାଗ୍ରହର ଜୟ ଅନେକ କାରଣରୁ ଇତିହାସରେ ଅପୂର୍ବ ଥିଲା;—

ପ୍ରଥମ କାରଣ—ଗାନ୍ଧୀ ବାର୍ଦ୍ଦୋଲୀକୁ ସତ୍ୟାଗ୍ରହର ପ୍ରଥମ କ୍ଷେତ୍ରରୂପେ ୧୯୨୨ ରେ ଯେ ବାଛିଥିଲେ ତାହା ଭୁଲ ହୋଇ ନ ଥିଲା ବୋଲି ଏବେ ସିଦ୍ଧ ହେଲା ।

୨ୟରେ—ହିନ୍ଦୁସ୍ଥାନର ଦରିଦ୍ରରୁ ଦରିଦ୍ର ଲୋକଙ୍କୁ ବିଜୟ ମିଳିଥିଲା ।

୩ୟରେ—ଏହି ଯୁଦ୍ଧରେ ସରକାର ପ୍ରଜାଙ୍କୁ ଦଳି ଦେବାପାଇଁ ପ୍ରତିଜ୍ଞାବଦ୍ଧ ହେବାର ପନ୍ଦର ଦିନ ଭିତରେ ପ୍ରଜାକୁଳ ସରକାରଙ୍କୁ ନୁଆଇଁ ଦେଇଥିଲେ ।

୪ର୍ଥରେ—ହିନ୍ଦୁମାନଙ୍କ ବିଭାଗରେ ଯେଉଁ ମାନ୍ଧାତା ଅମଳରୁ ଯେ ପ୍ରଥା ଚଳି ଆସୁଥିଲା ଏବଂ ଯେଉଁଥିରେ କେହି ହାତ ଦେଇ ପାରୁ ନ ଥିଲେ, ସେଭଳି ଅମଲତନ୍ତ୍ର ନୀତକୁ ବଦଳେଇବାକୁ ଲୋକେ ବାଧ୍ୟ କରିଥିଲେ ।

୫ମରେ—ଏକ ଗୃହବର୍ଷ ଧରି ଦେଶରେ ନିରାଶା ଘୋଟି ଥିଲା, ତାହାପରେ ଏ ବଡ଼ ବିଜୟ ମିଳିଥିଲା ।

୬ଷ୍ଠରେ—ସତ୍ୟାଗ୍ରହର ନାୟକମାନେ ପ୍ରତିଷ୍ଠାର ଭୂଇଁକୁ ଛାଡ଼, ତତ୍ତ୍ୱଅଡ଼କୁ ଧ୍ୟାନ ଦେଇଥିଲେ ।

୭ମରେ—ଲାଟସାହେବ ନିଜର ଉଳଟ କର୍ମଗୁରୁଙ୍କ କଥା ବା ତାଙ୍କ ମନ୍ତ୍ରୀଙ୍କ କଥା ଶୁଣି କାମ କରି ଥାନ୍ତି, ଏହା ସତ୍ତ୍ୱେ ଏଥର ସମାଧାନ ପାଇଁ ନିଜଦ୍ୱାରା ଯାହା ହେବା ସମ୍ଭବ ତାହାସବୁ ଲାଟ-ସାହେବ ନିଜେ କରିଥିଲେ ।

ଜେଲ୍‌ରୁ କଏଦୀ ସତ୍ୟାଗ୍ରହୀମାନେ ମୁକ୍ତପାଇ ମହାଆନନ୍ଦରେ ଫେରି ଆସିଥିଲେ । ଗୃଷ୍ଟୀମାନେ ନୂଆକରି ଜେଲ୍ ଯାଇଥିଲେ ସୁଦ୍ଧା ବଡ଼ ସାହସ ଓ ଧୈର୍ଯ୍ୟର ସହିତ ଜେଲ୍ ଜୀବନ କଟେଇଥିଲେ । ଯେତେ କଡ଼ା କାମ ଦିଆ ହେଉଥିଲା ତାହା ସବୁ ଖୁସିରେ କରି ଦେଉଥିଲେ । ବରଂ ବେଶୀ କରି ଦେଉଥିଲେ ।

ଜଣେ ନିତାନ୍ତ ଗାଉଁଲି ଗୃଷ୍ଟୀ ଛଅମାସ ଜେଲ୍ ଯାଇଥିଲା । ତାର ସ୍ତ୍ରୀ ବଡ଼ ହୁସିଆର ଲୋକ । କିନ୍ତୁ ତାର ଡର ଥିଲା ଯେ ଜେଲ୍‌ରେ ତାର ସ୍ୱାମୀ ଦବିଯିବ । ଛଅମାସ ଭୋଗିବାକୁ ପଡ଼ିଲା ନାହିଁ, ୨ାକ ମାସରେ ଖଲାସ ହୋଇ ଆସିଲାବେଳକୁ ତାର ସ୍ତ୍ରୀ ତାକୁ ଆଗେଇଟି ନେବାକୁ ଆସିଥିଲା । ଗାଁ ଲୋକେ ବି ରେଲଷ୍ଟେସନକୁ ଆସିଥିଲେ । ସେ-ଭଉଣୀଟି ଗାନ୍ଧୀଙ୍କୁ ଦଣ୍ଡବତ ହୋଇ କହିଲା—

ବିଚାରରେ ବୁଝା ଯେ ଆମକୁ ଦୁଷ୍ମନ୍ ବୋଲି ବିଚାରନ୍ତି ଏବଂ ଆପଣାକୁ ଆମର ଶତ୍ରୁ ବୋଲି ବିଚାରୁଥାନ୍ତି । ସେଭଳି ଲୋକଙ୍କର ବିନାଶ ଆମର ଇଚ୍ଛା କରିବାର ନୁହେଁ, ଆମେ ସେମାନଙ୍କର ହୃଦୟ ପରିବର୍ତ୍ତନ କରିବା ।

ସର୍ଦ୍ଦାର ଅନେକଥର ଜମିକୁ ଓଧ ସରକାରକୁ ବୁଝାଇଛନ୍ତି ଯେ ସରକାରୀ କର୍ମଚାରୀଙ୍କର ହୃଦୟ ପରିବର୍ତ୍ତନ ନ ହେବାଯାଏ ସନ୍ଧି ସମ୍ଭବ ନୁହେଁ । ଏବେ ଯେତେବେଳେ ଗୋଟାଏ ସମାଧାନ ହୋଇଛି, ସେତେବେଳେ କେତେଟି ହେଲେ ନିଶ୍ଚୟ ହୃଦୟ ପରିବର୍ତ୍ତନ ହୋଇଥିବ । ସତ୍ୟାଗ୍ରହୀ ସ୍ୱପ୍ନରେ ବୁଝା ବିଚାରିବ ନାହିଁ ଯେ ଆପଣା ବଳରେ କିଛି କରିପାରିବ । ସତ୍ୟାଗ୍ରହୀ ଅର୍ଥାତ୍ ସେନା, ସତ୍ୟାଗ୍ରହର ବଳ ଈଶ୍ୱରଙ୍କ ବଳ, ତା ମୁହଁରେ ସବୁବେଳେ "ନିର୍ବଳର ବଳ ଭଗବାନ୍" ଏହା ଲାଗି ରହିଥିବ । ସତ୍ୟାଗ୍ରହୀ ଆପଣା ବଳର ଅଭିମାନ ଛାଡ଼ିଲେ ଈଶ୍ୱରଙ୍କ ସାହାଯ୍ୟ ପାଇବ । କେଉଁଠାରେ ହେଲେ ମନ ବଦଳିଛି ସେଥିପାଇଁ ଆମେ ଈଶ୍ୱରଙ୍କୁ ଧନ୍ୟବାଦ ଦେବା । କିନ୍ତୁ କେବଳ ଧନ୍ୟବାଦରେ ଆମ ସରିବ ନାହିଁ ।

"ହୃଦୟ ପରିବର୍ତ୍ତନ ଲାଟସାହେବଙ୍କର ହୋଇଛି, ଏବେ ଆମର ମାନିନେବା ଉଚିତ । ତାଙ୍କର ମନ ବଦଳି ନ ଥିଲେ କ'ଣ ହୋଇଥାନ୍ତା ? ଯାହା ହୋଇଥାନ୍ତା ସେଥିରେ ଆମର କୌଣସି କଷ୍ଟ ହୋଇ ନ ଥା'ନ୍ତା । ଆମେ ତ ପ୍ରତିଜ୍ଞା କରିଥିଲୁ ଯେ, ଭୋଗ ପଡ଼ିବ ଆସୁ ଆମେ କୌଣସି ଚିନ୍ତା କରିବା ନାହିଁ । ........ଆମର ପ୍ରତିଜ୍ଞା ଥିଲା ଯେ ସେ ମାରିବାକୁ ଆସିଲେ ଆମେ ମାରନ୍ତୁ ନାହିଁ, ମାରନ୍ତୁ ବା ନାହିଁ, ତାଙ୍କୁ ଚିଠି ବି ଦେଖାନ୍ତୁ ନାହିଁ, ତାଙ୍କ ଗୁଳି ଆଗରେ ଛାତି ଖଣ୍ଡେ ବା ଅଙ୍ଗୁଳିଟିଏ ବି ଉଠାଇ ନ ଥା'ନ୍ତୁ । ଆମର ଏଇ ପ୍ରତିଜ୍ଞା ଥିଲା । ଲାଟସାହେବ ଇଚ୍ଛା କରିଥିଲେ ବାର୍ଦ୍ଦୋଲୀକୁ ମାଟିରେ ମିଶାଇ

ଦେଇଥାନ୍ତେ । ସେଥିରେ ବାର୍ଦ୍ଦୋଲିର ଅବଶ୍ୟ ବିଜୟ ହୋଇଥାନ୍ତା, କିନ୍ତୁ ତାହା ଏକ ଅଲଗା ରକମର ବିଜୟ ହୋଇଥାନ୍ତା । ସେ ବିଜୟ ଅର୍ଜିଇବାକୁ ତେମେ ଆଜ ନ ଥା'ନ୍ତ; ସମସ୍ତ ଭାରତବର୍ଷ ସମସ୍ତ ଜଗତ ସେ ବିଜୟ ଅର୍ଜେଇଥାନ୍ତେ । କିନ୍ତୁ ଏଡ଼େ କଠିନ ହୃଦୟ କାହାର ଥିବ, ସରକାରୀ ଶୁକରଙ୍କର ଦେହରେ ଏହା ତମେ କେବେ ଇଚ୍ଛା କର ନାହିଁ । ଏହି ବାର୍ଦ୍ଦୋଲି ତାଲୁକାର 'ଯୁଦ୍ଧସଭା' ୧୯୨୨ରେ ଯେଉଁ ଭୀଷ୍ମ ପ୍ରତିଜ୍ଞା ନେବାକୁ ଯେଉଁଠାରେ ଏକତ୍ରିତ ହୋଇଥିଲେ ସେ କଥା ଆମେ ପାସୋରି ପକେଇଛୁଁ । ଆମ ଭିତରେ କାଳେ ଟିକିଏ ଅଭିମାନ ଅହଂକାର ଲୁଚି ରହିଥିବ, ତେଣୁ ତାକୁ ବାହାର କରି ପକେଇବାକୁ ମୁଁ ଏତିକି ପ୍ରସ୍ତାବନା କଲି ।

"ମୁଁ ତ ଦୂରରେ ରହି ତମର ଜୟ କାମନା କରୁଥିଲି । ତମ ଭିତରକୁ ଆସି ମୋର କାମ କରିବାର ନ ଥିଲା, ଏ କଥା ସତ । ମୁଁ ବଲ୍ଲଭଭାଇଙ୍କ ହୁକୁମରେ ଥିଲି, ଯେଉଁକ୍ଷଣି ଇଚ୍ଛା କରିଥାନ୍ତେ ମତେ ଡାକି ପାରିଥା'ନ୍ତେ । କିନ୍ତୁ ତମର ଏ ବିଜୟର ଯଶ ମୁଁ ନେଇ ପାରିବି ନାହିଁ । ଏ ଜୟ ତମର ଓ ତମ ସର୍ଦ୍ଦାରର ଏବଂ ସେଥିରେ ତମ ଲୋକଙ୍କର ମଧ୍ୟ ଭାଗ ଅଛି । ତାଙ୍କର ଭାଗ ଅଛି ତ, ତାଙ୍କ କର୍ମଗୁରୁଙ୍କର ଓ ଲୋକ ସଭାର ସଭ୍ୟମାନଙ୍କର ଭାଗ ଅଛି । ଯେ କେହି ଶୁଦ୍ଧ ହୃଦୟରେ ରଫା ଇଚ୍ଛା କରୁଥିଲେ, ସେ ସମସ୍ତଙ୍କର ଏ ଜୟରେ ଭାଗ ଅଛି, ଏହା ଆମର ମାନିବା ଉଚିତ । ଏ ଜୟ ପାଇଁ ଆମେ ଭଗବାନଙ୍କୁ ଧନ୍ୟ ଧନ୍ୟ କରିଛୁଁ । କିନ୍ତୁ ଈଶ୍ୱର ଅଲିପ୍ତ ରହି ଏ ମାଟି ଢେଲାକୁ ନିମିତ୍ତ କରି କାମ କରେଇ ନେଉଛନ୍ତି । ଅତଏବ ଏ ଯଶକୁ ଆମେ ସମସ୍ତଙ୍କୁ ବାଣ୍ଟିଦେବା । ଶେଷରେ ଆମ ଭାଗରେ ଅଳ୍ପ ରହିଯିବ ଏବଂ ଅଳ୍ପ ରହିବା ହିଁ ଠିକ୍ ।

"ଏତିକିରେ ତୁମେ ତୁମର ପ୍ରତିଜ୍ଞାର ପ୍ରଥମ ପାଳିକ ପାଳନ କରିଛ । ବାକୀ ଅଧିକ କାମରେ କରିବାରେ ଏବେ ସୁଦ୍ଧା ବାକୀ ଅଛି । ସରକାରଠାରୁ ଯାହା ନେବାର ଥିଲା, ତାହା ତ ନିଆଗଲା । ଏଣିକି ସରକାରଙ୍କୁ ତାହା ଭାଗଟା ଦେଇ ଦିଅ । ଏବେ ଆମର ପୁରୁଣା ଜମା ଅଦାୟ ଦେଇଦେବା ଉଚିତ । ତେଣୁ ତୁମେ ସେତିକି ତୁରନ୍ତ ଦେଇ ପକାଅ ।

"ପୁଣି, ଯାହାଙ୍କର ବିରୋଧ କରୁଥିଲ, ତାଙ୍କ ସହିତ ଏବେ ମିତ୍ରତା କରିପକାଅ । ନାହିଁ ତ ନିଜର ପ୍ରତିଜ୍ଞା ଭଙ୍ଗ କଲ ବୋଲି ବୁଝାଯିବ । ......ହୃଦୟରେ କାହାକୁ ଗାଳି ଦିଅ ନାହିଁ, କାହାର ପ୍ରତି କ୍ରୋଧ ରଖ ନାହିଁ, ଏହାହିଁ ଆମର ପ୍ରତିଜ୍ଞାର ବାକୀ ପାଳିକ ।

"ଏବେ ତା ଆଗକୁ ଚାଲ, ଏ ପ୍ରତିଜ୍ଞା ଆମର ଗୋଟିଏ ନୂଆ ଓ ଛୋଟିଆ ପ୍ରକାରର ପ୍ରତିଜ୍ଞା । ତାହା ସମୁଦ୍ରରେ ଜଳବିନ୍ଦୁ ଭଳି । ୧୯୨୨ରେ ଯେଉଁ ପ୍ରତିଜ୍ଞା ଏ ତାଲୁକାରେ ନିଆ ହୋଇଥିଲା, ତାହା ଭୀଷଣ ପ୍ରତିଜ୍ଞା ଥିଲା । ସେ ଭୀଷ୍ମ ପ୍ରତିଜ୍ଞା ଏବେ ସୁଦ୍ଧା ବାକୀ ଅଛି । ସେହି ପ୍ରତିଜ୍ଞାର ପୂରଣ ପାଇଁ ତୁମେ ଏ ତାଲିମ ପାଉଛ । ଏବେ ସେ ମହାପ୍ରତିଜ୍ଞାକୁ ପୂରଣ କର, ତୁମ ପାଖରେ ଓ ଭଗବାନଙ୍କ ପାଖରେ ମୋର ଏତିକି ମାଗୁଣି ।

"ଯେ ସର୍ଦ୍ଦାରଙ୍କୁ ଆଗୁଆ କରି ତୁମେ ଏ ପ୍ରତିଜ୍ଞାକୁ ଏମିତି ସୁନ୍ଦର ଭାବରେ ପାଳିଲ, ସେହି ସର୍ଦ୍ଦାରଙ୍କ ପଛରେ ରହି ଆଉ ପ୍ରତିଜ୍ଞା ମଧ୍ୟ ପୂରଣ କର । ଏଭଳି ସ୍ୱାର୍ଥତ୍ୟାଗୀ ସର୍ଦ୍ଦାର ତୁମକୁ ଆଉ କେହି ମିଳିବେ ନାହିଁ । ସେ ମୋର ଆପଣା ମା ପେଟ ଭାଇ ପରି, ତେଣୁ ତାଙ୍କୁ ପ୍ରମାଣ ପତ୍ର ଦେବାରେ ମୋର ସଙ୍କୋଚ ନାହିଁ ।

"ଛାତିରେ ଗୁଳୀ ଖାଇବାକୁ ମୁଁ ସେମିତି କଠିନ କାମ ମନେକରେ ନାହିଁ, କିନ୍ତୁ ରୋଜ କାମ କରୁଥିବା କ୍ଷଣ କ୍ଷଣକେ ନିଜ

ସଙ୍ଗେ ଲଢ଼ୁଥିବୁ, ନିଜର ଆତ୍ମଶୁଦ୍ଧି କରୁଥିବୁ, ତା ବଡ଼ କଠିନ କାମ । ଦ'ଜଣ ଗୁଳୀ ଦ' ପ୍ରକାରରେ ଖାଇ ପାରନ୍ତି । ଦୋଷୀ ଦୋଷ କରି ଗୁଳୀ ଖାଉଛନ୍ତି, କିନ୍ତୁ ସେଥିରେ କ'ଣ ସ୍ୱରାଜ୍ୟ ମିଳିବ ? ଆତ୍ମଶୁଦ୍ଧି ପାଇଁ ଯେଉଁ ଗୁଳୀ ଖାଇବାକୁ ପଡ଼େ ସେହି ସ୍ୱରାଜ୍ୟ ଆଣି ଦେବାରେ ସମର୍ଥ ହୋଇଥାଏ । ତାହା କଷ୍ଟକର ଅଟେ । ଯାହାଙ୍କର ଖାଇବାର ନାହିଁ, ପିଇବାର ନାହିଁ, ପିନ୍ଧିବାକୁ ନାହିଁ ସେମାନଙ୍କୁ ଖୁଆଇବା, ପିଆଇବା, ସେମାନଙ୍କୁ ଉଦ୍ୟମ କରେଇବା, ସେମାନଙ୍କୁ ଲୁଗା ପିନ୍ଧେଇବା, ତାଙ୍କର ଭାଗ ତାଙ୍କୁ ଦିଆଇବା, ଏହା ବଡ଼ କଠିନ କାମ । ଉତ୍କଳବାସୀଙ୍କର କି ଭଳି ଧନହୀନ ଅବସ୍ଥା ତାହା ତମ ଭିତରୁ ଅନେକ ଭାଇ ଭଉଣୀ ଜାଣି ନାହଁ । ତାଙ୍କର ଅସ୍ଥି କଙ୍କାଳ କଥା ମୁଁ ଅନେକ ଥର ଖାସ୍ କରି ଭଉଣୀମାନଙ୍କୁ ଜାଣି ଶୁଣି କହୁଛି । ଯଦି ସେ କଥା ମୁଁ ତମକୁ କହି ବସିବି, ତେବେ ତମର ଓ ମୋର ଆଖିରୁ ଲୁହ ବହିବ । ଏହା ତମକୁ ଅତି ରଞ୍ଜିତ ପରି ଲାଗୁଥିବ । କିନ୍ତୁ ତମକୁ ସେଠାକୁ ନେଇ ଯାଇ ପାରିଲେ ତେବେ ସେ ସବୁ ଆପଣା ଆଖିରେ ଦେଖି ପାରନ୍ତ । ଏ ଅସ୍ଥି କଙ୍କାଳରେ ଟିକିଏ ରକ୍ତ ଲଗେଇ ଦେବା, ଟିକିଏ ମାଂସ ପୂରେଇ ଦେବା ବଡ଼ କଠିନ କାମ । କିନ୍ତୁ ସେହା ଆମର ପ୍ରତିଜ୍ଞା ।

"ଏ ପ୍ରତିଜ୍ଞା ପୂରଣ ନ କରିବା ଯାଏ, ତମ ମୁଣ୍ଡରେ କରଜ ରହିଛି ବୋଲି ଜାଣି ରଖ । ସେ କରଜ ଶୁଝିବାକୁ ତମକୁ ମତେ ସମସ୍ତଙ୍କୁ ଈଶ୍ୱର ସୁମତି ଓ ଶକ୍ତି ଦିଅନ୍ତୁ ।"

---

ସ ମା ପ୍ତ

Printed by U. C. Mohanty, C. P, Press, Cuttack—1949.

